


ରାଜ୍ୟପାଳ ଶ୍ରୀଯୁକ୍ତ ଯଜ୍ଞଦତ୍ତ ଶର୍ମା ନରଲାଠାରେ ଗ୍ରାମାଞ୍ଚଳ ମହିଳା
ଓ ଶିଶୁ ବିକାଶ ଯୋଜନାର ବହୁମୁଖୀ ଗୋଷ୍ଠୀ କେନ୍ଦ୍ର ଗୃହର
ଶୁଭ ଉଦ୍‌ଘାଟନ କରୁଛନ୍ତି ।



ଖଡ଼ିଆଳ ସାଧାରଣ ସଭାରେ ଯୋଗଦାନ କରିବାକୁ ମୁଖ୍ୟମନ୍ତ୍ରୀ
ଶ୍ରୀ ବିଜୁ ପଟ୍ଟନାୟକଙ୍କ ଆଗମନ ।

# ଉତ୍କଳ ପ୍ରସଙ୍ଗ

ପୌଷ ୧୯୧୨ ଶକାବ୍ଦ ୪୭ ଭାଗ ୬ଷ୍ଠ ସଂଖ୍ୟା ଜାନୁୟାରୀ ୧୯୯୧



ପ୍ରକାଶନ : ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ୱର ।

ବାର୍ଷିକ ଦେୟ : ଟ ୨୦.୦୦
ପ୍ରତି ଖଣ୍ଡ : ଟ ୨.୦୦

ମୁଦ୍ରଣ : ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

(ଫଟୋଟାଇପ୍‌ସେଟର୍ ଦ୍ୱାରା ଅକ୍ଷର ସଂଯୋଜିତ)

ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ଦରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ସେଗୁଡ଼ିକ ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠ ବୋଲି ଭାବିବା ଉଚିତ ନୁହେଁ ।

"ଉତ୍କଳ ପ୍ରସଙ୍ଗ" ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ମଧ୍ୟ ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ କ୍ଷେତ୍ରରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

# ସୂଚୀ

# ଜାତୀୟ ସଙ୍ଗୀତ

"ଜନ-ଗଣ-ମନ-ଅଧିନାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା
ପଞ୍ଜାବ-ସିନ୍ଧୁ-ଗୁଜୁରାଟ-ମରାଠା
ଦ୍ରାବିଡ଼-ଉତ୍କଳ-ବଙ୍ଗ
ବିନ୍ଧ୍ୟ-ହିମାଚଳ-ଯମୁନା-ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶୀଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ-ମଙ୍ଗଳଦାୟକ ଜୟ ହେ,
ଭାରତ-ଭାଗ୍ୟ-ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।"



# ଭାରତର ସଂଶୋଧିତ ପ୍ରସ୍ତାବନା

ଭାରତୀୟ ସମ୍ବିଧାନର ପ୍ରସ୍ତାବନା (PREAMBLE) ବା ଉପକ୍ରମଣିକା ୪୨ତମ ସମ୍ବିଧାନ ସଂଶୋଧନ ବିଲ୍ ଅନୁଯାୟୀ ୧୯୭୬ ଡିସେମ୍ବର ୧୮ ତାରିଖରୁ ସଂଶୋଧିତ ହୋଇ କାର୍ଯ୍ୟକାରୀ ହେଉଛି ।

ତାହା ହେଲାଃ

"ଆମେ ଭାରତର ଜନସାଧାରଣ ଭାରତକୁ ଗୋଟିଏ ସାର୍ବଭୌମ, ଗଣତାନ୍ତ୍ରିକ, ଧର୍ମ ନିରପେକ୍ଷ, ସମାଜବାଦୀ, ସାଧାରଣତନ୍ତ୍ର ରୂପେ ଗଠନ କରିବା ନିମିତ୍ତ ଏବଂ ଏ ଦେଶର ସମସ୍ତ ନାଗରିକଙ୍କ ପାଇଁ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ନ୍ୟାୟ, ଚିନ୍ତା ଅଭିବ୍ୟକ୍ତି, ବିଶ୍ୱାସ, ଧର୍ମ ଓ ଉପାସନାର ସ୍ୱାଧୀନତା, ସାମାଜିକ ପ୍ରତିଷ୍ଠା ଓ ସୁଯୋଗ ଦିଗରେ ସମତା ହାସଲ କରିବା ତଥା ବ୍ୟକ୍ତି ବିଶେଷର ମର୍ଯ୍ୟାଦା ଓ ଜାତିର ଏକତା ଏବଂ ଅଖଣ୍ଡତା ପାଇଁ ନିଶ୍ଚିତ ବ୍ୟବସ୍ଥା କରି ସେମାନଙ୍କ ମଧ୍ୟରେ ଭ୍ରାତୃ ଭାବର ବିକାଶ ସାଧନ ନିମନ୍ତେ ଦୃଢ଼ ସଂକଳ୍ପ ହୋଇ ଆମ୍ଭମାନଙ୍କର ଏହି ସମ୍ବିଧାନ ସଭାରେ ଅଦ୍ୟ ୧୯୪୯ ମସିହା ନଭେମ୍ବର ମାସର ଷଡ଼ବିଂଶ ଦିବସରେ ଏତଦ୍ୱାରା ଏହି ସମ୍ବିଧାନକୁ ଅଙ୍ଗୀକୃତ, ଅଧିନିୟମିତ ଓ ଆତ୍ମାର୍ପିତ କରିନ୍ତୁ ।"



# ଆମ ଜାତୀୟ ପତାକା

ଭାରତୀୟ ଜାତୀୟ ପତାକାର ଆଦ୍ୟଭାଗ କେଶରୀ, ମଧ୍ୟଭାଗ ଶ୍ୱେତ ଏବଂ ନିମ୍ନଭାଗ ସବୁଜ ରଙ୍ଗ । କେଶରୀ ରଙ୍ଗ ହେଲା ସାହସ ଓ ତ୍ୟାଗର ପ୍ରତୀକ । ସତ୍ୟ, ଶାନ୍ତି ଓ ପବିତ୍ରତା ପାଇଁ ଶ୍ୱେତ ରଙ୍ଗ ଉଦ୍ଦିଷ୍ଟ । ସବୁଜ ରଙ୍ଗ ବୀରତ୍ୱ, ବିଶ୍ୱାସ, ଶ୍ରଦ୍ଧା ଓ ଭକ୍ତିର ନିଦର୍ଶନ । ଶାନ୍ତି ଓ ପ୍ରଗତିର ପ୍ରତୀକ ରୂପେ ପତାକାର ମଧ୍ୟ ଭାଗରେ ଅଶୋକ ଚକ୍ର ବିଦ୍ୟମାନ ।

ଆକାର—ଜାତୀୟ ପତାକା ପାଞ୍ଚଗୋଟି ଆକାରରେ ମିଳିଥାଏ— (୧) ୨୧×୧୪, (୨) ୧୨×୮, (୩) ୬×୪, (୪) ୩×୨ ଓ (୫) ୯×୬ ।

ପତାକା ପ୍ରଦର୍ଶନର ନିୟମାବଳୀ :

- ସରକାରୀ କୋଠାମାନଙ୍କରେ ଜାତୀୟ ପତାକା ଉଡ଼ାଇବାକୁ ହେଲେ ଏହା ରବିବାର ଓ ଛୁଟିଦିନ ସମେତ ସବୁଦିନ ଉଡ଼ାଯିବ ଓପାଗର ଅବସ୍ଥା ଯେପରି ହୋଇଥାଉ ପଛକେ ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଉଡୁଥିବ । ଅତି ବିଶିଷ୍ଟ ଅବସରରେ ଏହା ରାତିରେ ମଧ୍ୟ ଉଡ଼ାଯାଇପାରେ ।
- ଯଦି କୌଣସି ସଭା ମଞ୍ଚରେ ପତାକା ଉଡ଼ାଯାଉଥାଏ, ତେବେ ତାହା ବକ୍ତାଙ୍କ ଡାହାଣ ପଟକୁ ରହିବ । ଯଦି ଏହା ଅନ୍ୟ ଭାବେ ପ୍ରଦର୍ଶିତ ହୋଇଥାଏ ତେବେ ପତାକାଟି ବକ୍ତାଙ୍କ ପଛପଟେ ଓ ଊର୍ଦ୍ଧ୍ୱରେ ରହିବ ।
- କୌଣସି ଶୋଭାଯାତ୍ରା ବା ପରେଡ଼ରେ ନିଆଗଲାବେଳେ ପତାକାଟି ଶୋଭାଯାତ୍ରାର ଅଗ୍ରଭାଗରେ ଡାହାଣ ପଟକୁ ରହିବ ଅର୍ଥାତ୍ ପତାକାଟି ନିଜର ଡାହାଣ ପଟକୁ ରହିବ । ଯଦି ଅନ୍ୟ କେତେକ ପତାକା ଗୋଟିଏ ଧାଡ଼ିରେ ନିଆଯାଉଥାଏ, ତେବେ ଧାଡ଼ି ସାମ୍ନାର କେନ୍ଦ୍ର ସ୍ଥାନରେ ଜାତୀୟ ପତାକାଟି ରହିବ ।
- ନଷ୍ଟ ହୋଇଯାଇଥିବା କିମ୍ବା ଅବ୍ୟବସ୍ଥିତ ବା ମୋଡ଼ି ମକଚି ହୋଇଯାଇଥିବା ପତାକା ପ୍ରଦର୍ଶନ କରାଯିବ ନାହିଁ ।
- କୌଣସି ବ୍ୟକ୍ତି ବା ବସ୍ତୁକୁ ପ୍ରଣାମ ଜଣାଇବା ଉଦ୍ଦେଶ୍ୟରେ ପତାକା ନତ କରାଯିବ ନାହିଁ ।
- କୌଣସି ପତାକା ଜାତୀୟ ପତାକା ସହିତ ଉଡ଼ାଯାଇ ପାରିବ ନାହିଁ ।
- ସଭା ସମିତିରେ ବକ୍ତାଙ୍କ ଟେବୁଲର ଆଚ୍ଛାଦନ ରୂପେ କିମ୍ବା ସଭାମଞ୍ଚ ଉପରେ ଝାଲର ଆକାରରେ ଜାତୀୟ ପତାକା ବ୍ୟବହାର କରାଯିବ ନାହିଁ ।
- ଜାତୀୟ ପତାକାକୁ ଭୂମି କିମ୍ବା ଘର ତଳ ସ୍ପର୍ଶ କରିବାକୁ କିମ୍ବା ପାଣିରେ ଘୋସାରିବାକୁ ଦିଆଯିବ ନାହିଁ ।
- ଜାତୀୟ ପତାକା ଉତ୍ତୋଳନ ବା ଅବତରଣ ଉତ୍ସବ ସମୟରେ ସେଠାରେ ଉପସ୍ଥିତ ସମସ୍ତ ଲୋକ ପତାକା ଆଡ଼କୁ ମୁହଁ କରି ସାବଧାନ ହୋଇ ଠିଆ ହେବେ । ଯେଉଁମାନେ ୟୁନିଫର୍ମ ପିନ୍ଧି ଉପସ୍ଥିତ ଥିବେ ସେମାନେ ପତାକାକୁ ଯଥାରୀତି ଅଭିବାଦନ ଜଣାଇବେ

# ଜାତୀୟତାର ପ୍ରତୀକ

କାଶ୍ମୀରରୁ କନ୍ୟାକୁମାରୀ ଯାଏଁ ଓ କାମରୂପଠାରୁ ଦ୍ୱାରକା ଯାଏଁ ଆମର ୮୦ କୋଟି ଲୋକଙ୍କୁ ଆଜି ଏକାଠି ବାନ୍ଧି ରଖିଛି ତିନୋଟି ମମତାର ଡୋରି :

## ଜାତୀୟ ପତାକା



## ଜାତୀୟ ସଙ୍ଗୀତ

ଜନ-ଗଣ-ମନ-ଅଧିନାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା
ପଞ୍ଜାବ-ସିନ୍ଧୁ-ଗୁଜୁରାଟ-ମରାଠା
ଦ୍ରାବିଡ଼-ଉତ୍କଳ-ବଙ୍ଗ
ବିନ୍ଧ୍ୟ-ହିମାଚଳ-ଯମୁନା-ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ-ମଙ୍ଗଳଦାୟକ ଜୟ ହେ,
ଭାରତ-ଭାଗ୍ୟ-ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।

## ଜାତୀୟ ସଙ୍କେତ



ଏ ତିନୋଟିର ପଛରେ ଅଛି-ଯୁଗ ଯୁଗର ଇତିହାସ, ଆମର ପ୍ରାଚ୍ୟ ପରମ୍ପରା ଓ ଆତ୍ମତ୍ୟାଗର ମହନୀୟତା । ବଂଶାନୁକ୍ରମେ ସମସ୍ତ ଜାତି ତଥା ପ୍ରତ୍ୟେକ ବ୍ୟକ୍ତି ପକ୍ଷେ ଏ ତିନୋଟି ଗୋଟିଏ ଗୋଟିଏ ପବିତ୍ର ନ୍ୟାସ ବା ଦାୟ । ସେଗୁଡ଼ିକର ସୁରକ୍ଷା ପାଇଁ ଏ ଜାତି ଯୁଗେ ଯୁଗେ ପ୍ରାଣ ପଣ କରି ଆସିଛି, କରୁଛି ଓ କରୁଥିବ । ନିଜର ବିଶ୍ୱାସରେ ଅଟଳ ରହି ଯେଉଁ ଜାତି ଯୂପ କାଠରେ ହସି ହସି 'ଶିର' ଦେଇପାରେ, ସାରା ବିଶ୍ୱକୁ ସୁହୃଦ ଦୃଷ୍ଟିରେ ଦେଖି ଯେ ବିଶ୍ୱ ମଞ୍ଚରେ ନିରପେକ୍ଷତାର ମଶାଲ ଜାଳି ଧରେ, ଯାର ଆତ୍ମଶକ୍ତି ଆଗରେ ସଙ୍ଗୀନ୍ ମୁନ ମଥା ନତ କରେ — ତା'ର ଆତ୍ମା ଅଜେୟ, ଅମର ।

ଆ ମ ର ପ ତା କା



ଚିତ୍ରଟିର ପରିଚୟ ସମସ୍ତେ ଜାଣନ୍ତି ।



# ଜନରାଜ୍ୟ ଦିବସ ଉପଲକ୍ଷେ ରାଜ୍ୟପାଳଙ୍କ ବାର୍ତ୍ତା

ଓଡ଼ିଶା ରାଜ୍ୟପାଳ ଦେଶର ୪୭ତମ ଜନରାଜ୍ୟ ଦିବସ ପାଳନ ଅବସରରେ ନିମ୍ନୋକ୍ତ ବାର୍ତ୍ତା ପ୍ରଦାନ କରିଛନ୍ତି :

"୪୭ ତମ ଜନରାଜ୍ୟ ଦିବସ ପାଳନ ଶୁଭ ଅବସରରେ ମୁଁ ଓଡ଼ିଶାବାସୀଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଉଛି ।

"ଆମେ ଭାରତବାସୀ ଏକ ସାର୍ବଭୌମ, ସମାଜବାଦୀ ତଥା ଧର୍ମ ନିରପେକ୍ଷ ଓ ଗଣତନ୍ତ୍ର ରାଷ୍ଟ୍ରର ଲକ୍ଷ୍ୟ ହାସଲ ଦିଗରେ ସଂକଳ୍ପବଦ୍ଧ । ଦେଶର ନରନାରୀ, ଜାତି, ଧର୍ମ ତଥା ଅଞ୍ଚଳ ନିର୍ବିଶେଷରେ ସମସ୍ତଙ୍କ ପାଇଁ ସାମାଜିକ ତଥା ଅର୍ଥନୈତିକ ନ୍ୟାୟ ପ୍ରତିଷ୍ଠା ସମ୍ଭବ ହୋଇ ପାରିଛି । ଆମ ପବିତ୍ର ସମ୍ବିଧାନର ଆଦ୍ୟ ପ୍ରଣେତାଗଣ ବିବିଧତା ମଧ୍ୟରେ ଭାରତବର୍ଷର ଐକ୍ୟ କଳ୍ପନା ଚକ୍ଷୁରେ ସନ୍ଦର୍ଶନ କରିଥିଲେ ଏବଂ ଭାଷା, ସଂସ୍କୃତି, ଧର୍ମ ତଥା ଜୀବନ ଯାତ୍ରା ପ୍ରଣାଳୀର ଅନୈକ୍ୟ ମଧ୍ୟରେ ଭାରତର ଆତ୍ମାକୁ ଅବଲୋକନ କରିଥିଲେ । ସ୍ୱାଧୀନତା, ନ୍ୟାୟ ଓ ସମତାର ଆଦର୍ଶ ଦ୍ୱାରା ଉଦ୍‌ବୁଦ୍ଧ ମହାତ୍ମା ଗାନ୍ଧୀ ଓ ସହସ୍ର ସହସ୍ର ସ୍ୱାଧୀନତା ସଂଗ୍ରାମୀଙ୍କ ସ୍ୱପ୍ନର ସଫଳ ରୂପାୟନ ଦିଗରେ ଆମ୍ଭେମାନେ କେତେଦୂର ଅଗ୍ରଗତି କରିଛୁ ଆଜି ସ୍ମୃତିଚାରଣ ଓ ସିଂହାବଲୋକନ ପାଇଁ ଏହା ପୁଣ୍ୟ ଅବସର । ସମ୍ବିଧାନର ଅଭିଳଷିତ ଲକ୍ଷ୍ୟ ପୂରଣ ଲାଗି ଆମ୍ଭେମାନେ ସମୂହଭାବେ ଚିନ୍ତାକରି ଯୋଜନାର ବାସ୍ତବ ରୂପାୟନ କରିବା ଆବଶ୍ୟକ । ସାମ୍ପ୍ରଦାୟିକତା, ହିଂସା ତଥା ବିଭାଜନ ଶକ୍ତିଗୁଡ଼ିକ ବିରୁଦ୍ଧରେ ସଂଗ୍ରାମ କରିବା ଲାଗି ଆଗଭର ହେବା ଉଚିତ ।

" ଆମ ରାଜ୍ୟରେ ବିପୁଳ ଖଣିଜ, ସାମୁଦ୍ରିକ ଓ ଜଙ୍ଗଲଜାତ ସମ୍ପଦ ରହିଥିବା ସତ୍ତ୍ୱେ ଦୁର୍ଭାଗ୍ୟବଶତଃ ଓଡ଼ିଶା ଆଜି ଦେଶର ଅନ୍ୟତମ ଦରିଦ୍ର ରାଜ୍ୟ । ପ୍ରାୟ ଦଶ ମାସ ତଳେ ବିପୁଳ ଜନ ସମର୍ଥନ ଲାଭ କରି ନୂତନ ସରକାର ରାଜ୍ୟର ଶାସନ ଭାର ଗ୍ରହଣ କରିଛନ୍ତି । ଏହି ସରକାର ରାଜ୍ୟକୁ ଦେଶରେ ଏକ ପ୍ରଗତିଶୀଳ ତଥା ଅଭିବର୍ଦ୍ଧିଷ୍ଣୁ ରାଜ୍ୟରେ ପରିଣତ କରିବା ଲାଗି ପ୍ରତ୍ୟେକ ଉନ୍ନୟନମୂଳକ ସଂସ୍ଥାରେ ବ୍ୟାପକ ପ୍ରଚେଷ୍ଟା ଆରମ୍ଭ କରୁଛନ୍ତି । ଏହା ଫଳରେ ରାଜ୍ୟ ଜନସାଧାରଣଙ୍କର ଅର୍ଥନୈତିକ ପ୍ରଗତି ସମ୍ଭବ ହୋଇ ପାରିବ । ରାଜ୍ୟର ପ୍ରଶାସନିକ ବ୍ୟବସ୍ଥାର ପୁନର୍ବିନ୍ୟାସ କରାଯାଇଛି ଓ ତଦ୍ୱାରା ରାଜ୍ୟର ଦରିଦ୍ରତମ ଲୋକମାନଙ୍କ ନିକଟରେ ଯୋଜନା ତଥା କାର୍ଯ୍ୟକ୍ରମଗୁଡ଼ିକର ସୁଫଳ ପହଞ୍ଚି ପାରିବ ।

“ଓଡ଼ିଶା ସରକାର ଶାସନଭାର ଗ୍ରହଣ କରିବା ପରେ ସର୍ବନିମ୍ନ ଦୈନିକ ମଜୁରୀ ହାର ୧୯ ଟଙ୍କାରୁ ୨୫ ଟଙ୍କାକୁ ବୃଦ୍ଧି କରିଛନ୍ତି । ଗରିବ ଚାଷୀ ତଥା କାରିଗରମାନଙ୍କ ପାଇଁ ଦଶ ହଜାର ଟଙ୍କା ପର୍ଯ୍ୟନ୍ତ କୃଷି ଋଣ ଛାଡ଼ର ପ୍ରତିଶ୍ରୁତି ସରକାର କାର୍ଯ୍ୟକାରୀ କରିଛନ୍ତି । ବୃଦ୍ଧ, ବିଧବା, ନିରାଶ୍ରୟ, ଅନାଥ ବାଳକ ବାଳିକା ଓ ଶାରୀରିକ ବିକଳାଙ୍ଗ ବ୍ୟକ୍ତିମାନଙ୍କ କଲ୍ୟାଣ ଲାଗି ସରକାର ଉଲ୍ଲେଖନୀୟ ପଦକ୍ଷେପମାନ ଗ୍ରହଣ କରିଛନ୍ତି । ଅସମର୍ଥ ତଥା ବିଧବାମାନଙ୍କ ମାସିକ ଭତ୍ତା ମଧ୍ୟ ୬୦ ଟଙ୍କାରୁ ୧୦୦ ଟଙ୍କାକୁ ବୃଦ୍ଧି କରାଯାଇଛି । ବିଭିନ୍ନ ପରିକଳ୍ପନା ତଥା ଆୟ ନିଯୁକ୍ତି ଯୋଜନା ଅନୁଯାୟୀ କର୍ମ ସଂସ୍ଥାନର ସୁବିଧା ସୁଯୋଗଗୁଡ଼ିକର ସମ୍ପ୍ରସାରଣ ପାଇଁ ସକ୍ରିୟ ପଦକ୍ଷେପ ଗ୍ରହଣ କରାଯାଉଛି । ଏହିଭଳି ଉନ୍ନୟନମୂଳକ ପଦକ୍ଷେପମାନ ବାସ୍ତବରେ ଗରିବ ତଥା ନିଷ୍ପେଷିତ ଜନସାଧାରଣଙ୍କର ସାମାଜିକ ତଥା ଅର୍ଥନୈତିକ ନ୍ୟାୟ ପ୍ରତିଷ୍ଠା ଦିଗରେ ବିଶେଷ ଗୁରୁତ୍ୱପୂର୍ଣ୍ଣ ।

“ବର୍ଷା, ବନ୍ୟା, ବାତ୍ୟା ଭଳି ପ୍ରାକୃତିକ ଦୁର୍ବିପାକ ଆମ ରାଜ୍ୟରେ ଲାଗି ରହିଛି । ଗତବର୍ଷ ଗଞ୍ଜାମ ଜିଲ୍ଲାରେ ବ୍ୟାପକ ବର୍ଷା ଫଳରେ ନାହିଁ ନଥିବା ବନ୍ୟା ଜନସାଧାରଣଙ୍କ ଧନଜୀବନର ପ୍ରଭୂତ କ୍ଷତି ଘଟାଇ ଥିଲା । ରାଜ୍ୟ ସରକାର ଦୁର୍ଗତମାନଙ୍କୁ ଅବିଳମ୍ବେ ବହୁ ଆବଶ୍ୟକୀୟ ସାହାଯ୍ୟ ସହଯୋଗ ଯୋଗାଇ ଥିଲେ । ଜନସାଧାରଣଙ୍କ ଦୁଃଖ ଲାଘବ କରିବା ପାଇଁ ବିଭିନ୍ନ ସ୍ୱେଚ୍ଛାସେବୀ ଦଳ ସହଯୋଗ କରୁଥିବା ଆନନ୍ଦର କଥା । ବନ୍ୟା କ୍ଷତିଗ୍ରସ୍ତ ଅଞ୍ଚଳଗୁଡ଼ିକରେ ରିଲିଫ୍ ତଥା ପୁନର୍ନିର୍ମାଣ କାର୍ଯ୍ୟ ଦ୍ରୁତ ଗତିରେ ଆଗେଇ ଚାଲିଛି । ମୋର ବିଶ୍ୱାସ ଜନସାଧାରଣ ତଥା ସରକାରଙ୍କ ସକ୍ରିୟ ସହଯୋଗକ୍ରମେ ଆମେ ଉକ୍ତ ଜଟିଳ ପରିସ୍ଥିତିର ମୁକାବିଲା କରି ପାରିବା ।

“ମାତ୍ର ଦଶମାସ ମଧ୍ୟରେ କୃଷି, ଶିଳ୍ପ, ଜଳସେଚନ, ଶିକ୍ଷା, ଗ୍ରାମ୍ୟ ଉନ୍ନୟନ ତଥା ହରିଜନ ଓ ଆଦିବାସୀ କଲ୍ୟାଣ ଭଳି ବହୁବିଧ ସମସ୍ୟାର ମୁକାବିଲା କ୍ଷେତ୍ରରେ ଓଡ଼ିଶା ସରକାର ବ୍ୟାପକ ପ୍ରଗତିଶୀଳ ମନୋଭାବ ତଥା ଦୃଢ଼ ସଂକଳ୍ପର ପ୍ରମାଣ ଦେଇଛନ୍ତି । ରାଜ୍ୟରେ କର୍ମ ନିଯୁକ୍ତି ତଥା ଆୟ ଯେପରି ବୃଦ୍ଧି ପାଇ ପାରିବ ସେଥି ନିମନ୍ତେ ବିପୁଳ ପ୍ରାକୃତିକ ତଥା ଖଣିଜ ସମ୍ପଦ ଉପଯୋଗ ଲାଗି ପଦକ୍ଷେପମାନ ଗ୍ରହଣ କରାଯାଇଛି । ସମ୍ପ୍ରତି ଗ୍ରାମ୍ୟ ତଥା ପୌରାଞ୍ଚଳଗୁଡ଼ିକରେ ବସବାସ କରୁଥିବା ଜନସାଧାରଣଙ୍କର ଜୀବନଯାପନର ମାନ ଆଖି ଦୃଶିଆ ଭାବେ ପରିବର୍ତ୍ତନ ହୋଇଛି । ରାଜ୍ୟବାସୀଙ୍କ ମନରେ ନୂତନ ଆଶା ଓ ଲକ୍ଷ୍ୟ ହାସଲ ପାଇଁ ଉଦ୍ଦୀପନା ଦେଖା ଦେଇଛି ।

“ଆସନ୍ତୁ, ଓଡ଼ିଶାକୁ ଏକ ସମୃଦ୍ଧିଶାଳୀ ରାଜ୍ୟରେ ପରିଣତ କରିବା ଓ ସମ୍ବିଧାନରେ ରହିଥିବା ମାନବିକ ମୂଲ୍ୟବୋଧକୁ ସମୁଚିତ ସମ୍ମାନ ପ୍ରଦାନ କରିବା ଲାଗି ଆମେ ସମସ୍ତେ ଏଇ ପୁଣ୍ୟ ଅବସରରେ ସଂକଳ୍ପବଦ୍ଧ ହେବା ।

ଜୟହିନ୍ଦ୍ ।”

# ଜନରାଜ୍ୟ ଦିବସ ଉପଲକ୍ଷେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ବାର୍ତ୍ତା



ପବିତ୍ର ସାଧାରଣତନ୍ତ୍ର ଦିବସ ଅବସରରେ ମୁଁ ଓଡ଼ିଶାର ମୋର ପ୍ରିୟ ଭାଇ ଭଉଣୀମାନଙ୍କୁ ଆନ୍ତରିକ ସଦିଚ୍ଛା ଜଣାଉଛି । ଏକଚାଳିଶ ବର୍ଷ ପୂର୍ବେ ଆମେ ପୃଥିବୀର ସର୍ବ ବୃହତ୍ ଗଣତାନ୍ତ୍ରିକ ରାଷ୍ଟ୍ର ଭାରତବର୍ଷର ସମ୍ବିଧାନ ଗ୍ରହଣ କରି ଆମ ଦେଶକୁ ଏକ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ର ରୂପେ ଘୋଷଣା କରିଥିଲେ । ଜାତି, ଧର୍ମ ନିର୍ବିଶେଷରେ ସମସ୍ତ ନାଗରିକଙ୍କୁ ସମାନ ଅଧିକାର ଦେବା ପାଇଁ ଆମେ ସାମ୍ବିଧାନିକ ନିଷ୍ପତ୍ତି ନେଇଥିଲେ ।

ଏକଚାଳିଶ ବର୍ଷ ପରେ ମଧ୍ୟ ଆଜି ଦେଶରେ ଦାରିଦ୍ର୍ୟ, ନିରକ୍ଷରତା ଓ ବେକାରୀ ପୂରି ରହିଛି । ଆଜି ବି ଅନଗ୍ରସର ପଲ୍ଲୀ ଅଞ୍ଚଳରେ ମୋ ଭାଇ ଭଉଣୀମାନେ ଆବଶ୍ୟକୀୟ ଚିକିତ୍ସା ସୁବିଧା ପାଇପାରୁ ନାହାନ୍ତି । ଲୋକମାନଙ୍କର ସର୍ବନିମ୍ନ ଆବଶ୍ୟକତା ପୂରଣ କରି ଉନ୍ନୟନ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ପାଇଁ ପ୍ରଶାସନିକ ଦକ୍ଷତାର ଅଭାବ ପରିଲକ୍ଷିତ ହେଉଛି । ଧନୀ ଓ ଗରିବ ମଧ୍ୟରେ ପାର୍ଥକ୍ୟ ବଢ଼ି ବଢ଼ି ଚାଲିଛି ।

ଦେଶର ବିଭିନ୍ନ ସ୍ଥାନରେ ସାମ୍ପ୍ରଦାୟିକ ଦଙ୍ଗା ଆଜି ରାଷ୍ଟ୍ରର ଧର୍ମ ନିରପେକ୍ଷତାର ମୂଳରେ କୁଠାରାଘାତ କରିଛି । ଧର୍ମକୁ ନେଇ ରାଜନୀତି କରିବା ଫଳରେ ଲୋକମାନଙ୍କର ମନରେ ଅନ୍ୟ ଧର୍ମ ପ୍ରତି ବିଦ୍ୱେଷ ସୃଷ୍ଟି ହେଉଛି ଓ ଏହା ଫଳରେ ପଞ୍ଜାବ, ଜାମ୍ମୁ–କାଶ୍ମୀର, ଅଯୋଧ୍ୟାର ରାମ ମନ୍ଦିର ପ୍ରଭୃତି ବିଭିନ୍ନ ସମସ୍ୟା ମୁଣ୍ଡ ଟେକୁଛି । ହଜାର ହଜାର ନିରପରାଧ ଲୋକ ଏହାର ଶିକାର ହେଉଛନ୍ତି ।

ଦେଶର ଅନ୍ୟ ଅଞ୍ଚଳ ପରି ଆମ ରାଜ୍ୟ ଓଡ଼ିଶାରେ ମଧ୍ୟ ବିଭିନ୍ନ ସମସ୍ୟା ବର୍ତ୍ତମାନ ସୁଦ୍ଧା ଅସମାଧିତ ହୋଇ ରହିଛି । ଏକ ଗୌରବମୟ ଉଜ୍ଜ୍ୱଳ ଐତିହାସିକ ଓ ସାଂସ୍କୃତିକ ପରମ୍ପରା, ବିପୁଳ ପ୍ରାକୃତିକ ସମ୍ପଦ ଏବଂ କର୍ମନିଷ୍ଠ ବିରାଟ ଜନଶକ୍ତି ଥାଇ ମଧ୍ୟ ଆମେ ଆଜି ଦେଶରେ ଏକ ଦରିଦ୍ରତମ ରାଜ୍ୟ ରୂପେ ପରିଗଣିତ ହେଉଛେ । ରାଜ୍ୟର ଶତକଡ଼ା ୬୫ ଭାଗ ଲୋକ ଆଜି ବି ଦାରିଦ୍ର୍ୟ ସୀମାରେଖା ତଳେ ରହିଛନ୍ତି । ଶତକଡ଼ା ୬୪ ଭାଗ ଲୋକ ଆଜି ବି ନିରକ୍ଷର । ବହୁ ପ୍ରତିଭାବାନ୍ ଯୁବକ ଯୁବତୀମାନଙ୍କ ପାଇଁ ବର୍ତ୍ତମାନ ସୁଦ୍ଧା କର୍ମ ସଂସ୍ଥାନର କୌଣସି ବ୍ୟବସ୍ଥା ହୋଇପାରି ନାହିଁ । କୃଷି ଓ ଶିଳ୍ପ ଉତ୍ପାଦନ କ୍ଷେତ୍ରରେ ଆମେ ଅନ୍ୟ ରାଜ୍ୟ ତୁଳନାରେ ବହୁ ପଛରେ ରହିଛେ ।

ଏହି ସବୁ ଜଟିଳ ସମସ୍ୟାର ସମାଧାନ ପାଇଁ ବର୍ତ୍ତମାନ ଉଦ୍ୟମ ଆରମ୍ଭ କରାଯାଇଛି । ଗରିବ ଲୋକମାନଙ୍କର ସୁବିଧା ପାଇଁ ସର୍ବନିମ୍ନ ମଜୁରି ପଚିଶି ଟଙ୍କାକୁ ବୃଦ୍ଧି କରାଯାଇଛି । କୃଷୀ ତଥା ଗ୍ରାମାଞ୍ଚଳ କାରିଗରମାନଙ୍କର ଋଣ ଛାଡ଼ କରାଯାଇଛି । ରୋଜଗାର ଅକ୍ଷମ ଲୋକମାନଙ୍କ ପାଇଁ ବାର୍ଦ୍ଧକ୍ୟ ଓ ବିଧବା ଭତ୍ତା ବୃଦ୍ଧି କରାଯାଇଛି ଏବଂ

ବିଧବାମାନେ ଏହି ଭତ୍ତା ପାଇବା ପାଇଁ ନିର୍ଦ୍ଧାରିତ ବୟସ ସୀମାକୁ ଉଠାଇ ଦିଆଯାଇଛି । କ୍ଷୁଦ୍ର ଓ ନାମମାତ୍ର ଚାଷୀ ଏବଂ କୃଷି ଶ୍ରମିକମାନଙ୍କ ପାଇଁ ମଧ୍ୟ ଭତ୍ତା ବ୍ୟବସ୍ଥା ପ୍ରଚଳନ କରାଯାଇଛି । କୃଷି ଉତ୍ପାଦନ ବୃଦ୍ଧି ପାଇଁ ଜଳସେଚନ ବ୍ୟବସ୍ଥାକୁ ସମ୍ପ୍ରସାରିତ କରାଯାଉଛି ଓ ନୂତନ ଜଳଭଣ୍ଡାର ଯୋଜନା ସାଙ୍ଗକୁ ଅସମ୍ପୂର୍ଣ୍ଣ ପ୍ରକଳ୍ପଗୁଡ଼ିକୁ ନିର୍ଦ୍ଧାରିତ ସମୟ ସୀମା ମଧ୍ୟରେ ସମ୍ପୂର୍ଣ୍ଣ କରିବା ପାଇଁ ନିଷ୍ପତ୍ତି ନିଆଯାଇଛି । ଧାନ, ମୁଗ ଇତ୍ୟାଦି କୃଷିଜାତ ଦ୍ରବ୍ୟର ଉଚିତ ମୂଲ୍ୟ ଚାଷୀକୁ ଯୋଗାଇଦେବା ନିମନ୍ତେ ଯୋଗାଣ ନିଗମ ଜରିଆରେ ଚାଷୀ ପାଖରୁ କିଣିବା ବ୍ୟବସ୍ଥା କରାଯାଇଛି । ଆଦିବାସୀ ଓ ହରିଜନମାନଙ୍କ କଲ୍ୟାଣ ନିମନ୍ତେ ଉଦ୍ୟମ ଜାରି ରହିଛି । ପ୍ରଥମ ପର୍ଯ୍ୟାୟରେ ଅନଗ୍ରସର କଳାହାଣ୍ଡି ଓ ବଲାଙ୍ଗୀର ଜିଲ୍ଲାର ଲୋକଙ୍କୁ ସାକ୍ଷର କରିବା ଏବଂ କଳକାରଖାନା ତିଆରି ପାଇଁ ନିଷ୍ପତ୍ତି ନେଇ ସେ ଦିଗରେ କାର୍ଯ୍ୟ ଆରମ୍ଭ କରାଯାଇଛି । ବେକାର ଯୁବକ ଯୁବତୀମାନଙ୍କ କର୍ମ ସଂସ୍ଥାନ ନିମନ୍ତେ ବ୍ୟାପକ ଯୋଜନା ପ୍ରସ୍ତୁତ କରି କାର୍ଯ୍ୟକାରୀ କରାଯାଉଛି । ଦ୍ୱିତୀୟ ଇସ୍ପାତ କାରଖାନା ପ୍ରତିଷ୍ଠା ପାଇଁ ପ୍ରାଥମିକ ପଦକ୍ଷେପ ନିଆଯାଇ ସାରିଛି । ଡାକ୍ତରଖାନାମାନଙ୍କରେ ରୋଗୀମାନଙ୍କୁ ଉପଯୁକ୍ତ ଖାଦ୍ୟ ଯୋଗାଇଦେବା ନିମନ୍ତେ ଖାଦ୍ୟପେୟ ବାବଦ ବ୍ୟୟ ପରିମାଣକୁ ପାଞ୍ଚ ଟଙ୍କାରୁ ସାତ ଟଙ୍କାକୁ ବୃଦ୍ଧି କରାଯାଇଛି ।

ଏହି ସବୁ ଯୋଜନା କାର୍ଯ୍ୟକାରୀ କଲାବେଳେ ପ୍ରଶାସନିକ କଳରେ ଅସ୍ଥିମଜ୍ଜାଗତ ହୋଇ ରହିଥିବା ଦୁର୍ନୀତିର ମୂଳୋତ୍ପାଟନ କରିବାକୁ ହେଲେ ଆମର ଉଦ୍ୟମ ସାଙ୍ଗକୁ ଜନସାଧାରଣ ଯଦି ନିଜର ସାମ୍ବିଧାନିକ ଅଧିକାର ଓ କର୍ତ୍ତବ୍ୟ ସମ୍ପର୍କରେ ସଚେତନ ହୁଅନ୍ତି ଏବଂ ସରକାରଙ୍କ ସହ ପୂର୍ଣ୍ଣ ସହଯୋଗ କରନ୍ତି, ତେବେ ଆମେ ନିଶ୍ଚିତ ଭାବେ ଆମ ରାଜ୍ୟକୁ ଏକ ଉନ୍ନତ ରାଜ୍ୟରେ ପରିଣତ କରିପାରିବା । ଅତଏବ୍ ଏ ଦିଗରେ ବିଶେଷ ଭାବେ ଯୁବ ସମାଜର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ସେମାନଙ୍କ ମନରେ ଆତ୍ମାଭିମାନ ସୃଷ୍ଟି ହେବା ଆବଶ୍ୟକ । ଏହି ଅର୍ଥନୈତିକ ଓ ସାମାଜିକ ବିପ୍ଳବର ସାଫଲ୍ୟ ପାଇଁ ଆମ ସମସ୍ତଙ୍କୁ କଠୋର ପରିଶ୍ରମ କରିବାକୁ ହେବ ।

ଆଜିର ଏହି ପବିତ୍ର ଦିବସରେ ମୁଁ ପୁଣି ଥରେ ରାଜ୍ୟର ଭାଇ ଭଉଣୀମାନଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ଉତ୍ସର୍ଗୀକୃତ ଉଦ୍ୟମ କରିବାକୁ ଆସନ୍ତୁ ଶପଥ ନେବା ପାଇଁ ସମସ୍ତଙ୍କୁ ନିବେଦନ କରୁଛି ।

ଶ୍ରୀ ବିଜୁ ପଟ୍ଟନାୟକ



# ଜନରାଜ୍ୟ ଦିବସ ଉପଲକ୍ଷେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀଙ୍କ ବାର୍ତ୍ତା

ଜାନୁଆରୀ ୨୬ । ସାଧାରଣତନ୍ତ୍ର ଦିବସ ଭାରତର । ୪୧ ବର୍ଷ ପରେ ନାନା ଝଡ଼ଝଞ୍ଜା, ଉତ୍ଥାନ ପତନ ମଧ୍ୟରେ ଯେଉଁ ପ୍ରାଚୀନ, ସୁସଂସ୍କୃତ ଭାରତବର୍ଷକୁ ବିଶ୍ୱବାସୀ ଅପେକ୍ଷା କରିଥିଲେ ନୂତନ ପୃଥିବୀ ଓ ନୂତନ ସମାଜର ନେତୃତ୍ୱ ନେବ ବୋଲି— ସେ ଭାରତ ଆଜି ସଙ୍କଟର ମହାସମୁଦ୍ର ମଧ୍ୟରେ ଥଳକୂଳ ପାଉନାହିଁ ।

ତାର ପ୍ରାଚୀନ ସଂସ୍କୃତିର ମୂଲ୍ୟବୋଧ ରାମାୟଣ, ମହାଭାରତର ଗୌରବାବହ ଆଦର୍ଶ, ଭ୍ରାତୃଭାବ, ମୈତ୍ରୀଭାବ, ଶାନ୍ତି, ସମୃଦ୍ଧି, ଆନନ୍ଦର ମହନୀୟତାକୁ ହରାଇ ସତେ ଯେମିତି ସାମ୍ପ୍ରଦାୟିକ ଦଙ୍ଗା, ଉଗ୍ରପନ୍ଥାର ବ୍ୟଭିଚାର, ବିଭାଜନ ହତ୍ୟା, ହିଂସାର ବିଭୀଷିକା ଭିତରକୁ ଟାଣି ହୋଇ ଯାଉଛି ।

କିଏ ରକ୍ଷା କରିବ ଭାରତବର୍ଷକୁ ? "ତମସୋ ମା ଜ୍ୟୋତିର୍ଗମୟ, ଅସତୋ ମା ସଦ୍‌ଗମୟ, ମୃତ୍ୟୋ ମାଽମୃତଂ ଗମୟ" ମନ୍ତ୍ର ଉଚ୍ଚାରଣ କରି ବିଶ୍ୱକୁ କିଏ ଉଦ୍‌ବୋଧନ ଦେବ ?

ହେ ଭାରତବାସୀ ! ଭାରତ ମାତାର ଯୋଗ୍ୟ ସନ୍ତାନ, ଅନୈକ୍ୟ ମଧ୍ୟରେ ଐକ୍ୟର ସନ୍ଧାନ କରି ପୂର୍ବସ୍ମୃତି, ସଂସ୍କୃତି ଓ ଗୌରବକୁ ମନେ ପକାଇ ପୁଣି ଥରେ ଆଜି ଜାନୁଆରୀ ୨୬, ୧୯୯୧ରେ ଶପଥ କର ଦେଶ, ଜାତି, ମାନବକୁ ରକ୍ଷା କରିବାକୁ ଆପ୍ରାଣ ସାଧନା କରିବ । ଏତିକି ହୃଦୟଙ୍ଗମ କରି ପାରିଲେ ଓ ତଦନୁଯାୟୀ କାର୍ଯ୍ୟ କଲେ ସାଧାରଣତନ୍ତ୍ର ଦିବସ ପାଳନର ସାର୍ଥକତା ଓ ଯଥାର୍ଥତା ପ୍ରତିଷ୍ଠିତ ହେବ ।

ଶରତ କୁମାର କର

## ସମ୍ପାଦକୀୟ

## ।। ସାଧାରଣତନ୍ତ୍ର ଦିବସର ସଂକଳ୍ପ ।।

ଏକଷଠିଶି ବର୍ଷ ପୂର୍ବେ ଆଜିର ଦିବସରେ ସ୍ୱାଧୀନ ଭାରତର ସମ୍ବିଧାନ ପ୍ରବର୍ତ୍ତନ କରାଯାଇଥିଲା । ଲକ୍ଷ୍ୟ ଥିଲା, ଆମ ଦେଶକୁ ଏକ ସମୃଦ୍ଧିଶାଳୀ ରାଷ୍ଟ୍ର ରୂପେ ଗଢ଼ି ତୋଳିବା । ଏ କ୍ଷେତ୍ରରେ କେତେ ପରିମାଣରେ ପ୍ରଗତି ସମ୍ଭବ ହୋଇପାରିଛି, ତାହା ଆଜିର ଦିବସରେ ସମୀକ୍ଷା କରିବା ନିତାନ୍ତ ଆବଶ୍ୟକ । ଗଣତାନ୍ତ୍ରିକ ରାଷ୍ଟ୍ରର ନାଗରିକ ହିସାବରେ ଏ ଦାୟିତ୍ୱ, ଏ ଅଧିକାର ସମସ୍ତଙ୍କର ରହିଛି ।

ପ୍ରଗତିର ପ୍ରକୃତ ମୂଲ୍ୟାଙ୍କନ କରିବାକୁ ହେଲେ ଆମେ କ'ଣ ପାଇଛୁ ଏବଂ କ'ଣ ହରାଇଛୁ ସେଥିର ସମୀକ୍ଷା କରିବାକୁ ହେବ । ଏହି ସମୀକ୍ଷା କଲାବେଳେ ମୁଖ୍ୟତଃ ଶିକ୍ଷା, ଶିଳ୍ପ ଓ କୃଷି ବିଷୟ ପ୍ରତି ଦୃଷ୍ଟି ଦେବାକୁ ହେବ ।

ଶିକ୍ଷାର ସର୍ବନିମ୍ନ ଆବଶ୍ୟକତା ହେଉଛି ନିରକ୍ଷରତା ଦୂରୀକରଣ, ଯାହାକି ଏ ପର୍ଯ୍ୟନ୍ତ ଅସମ୍ପୂର୍ଣ୍ଣ । ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ପାଇଁ ଆମକୁ ଆହୁରି ଅନେକ ପଥ ଅତିକ୍ରମ କରିବାକୁ ପଡ଼ିବ, ଏହା ସ୍ୱୀକାର୍ଯ୍ୟ ।

ଶିଳ୍ପ କଥା ଚିନ୍ତା କଲେ ଦେଖାଯିବ ଯେ "ହଜାରେ ଦିନରେ ହଜାରେ ଶିଳ୍ପ" କିମ୍ବା "ଶିଳ୍ପ ବନ୍ୟା"ର ସ୍ଲୋଗାନ୍ ଅତି ଶ୍ରୁତିମଧୁର ହେଉଥିଲା । କିନ୍ତୁ ସେହି ତଥାକଥିତ ଶିଳ୍ପ ବନ୍ୟା ପରିଶେଷରେ ବଣ୍ଟୁକୁଟା ପ୍ରହସନରେ ପରିଣତ ହୋଇଛି । କେତେକ କେବଳ କାଗଜ କଲମରେ ରହିଛି ତ ଆଉ କେତେକ ରୁଗ୍ଣ ଅବସ୍ଥାରେ ପଡ଼ିରହିଛି । ପ୍ରାୟ ପ୍ରତ୍ୟେକ କ୍ଷେତ୍ରରେ ଆମକୁ ଅନ୍ୟ ଉପରେ ନିର୍ଭର କରିବାକୁ ପଡୁଛି । ମୋଟାମୋଟି ଭାବେ କହିବାକୁ ଗଲେ ଶିଳ୍ପ ବନ୍ୟାର ସୁଅରେ କୁଟୀର ଶିଳ୍ପଗୁଡ଼ିକ ଲୋପ ପାଇ ବେକାରୀ ବୃଦ୍ଧି ପାଇଲା ସିନା ବାସ୍ତବରେ ଶିଳ୍ପର ବିକାଶ ହୋଇପାରିଲା ନାହିଁ ।

କୃଷିପ୍ରଧାନ ଦେଶର ବିକାଶ ନିମନ୍ତେ କୃଷିର ଉନ୍ନତି ପାଇଁ ଜଳସେଚନ ବ୍ୟବସ୍ଥା ପ୍ରତି ଅଧିକ ଗୁରୁତ୍ୱ ଆବଶ୍ୟକ । ସବୁ ଜମିକୁ ଜଳ ଯୋଗାଇବା ବ୍ୟବସ୍ଥା ଆମର ଲକ୍ଷ୍ୟ ଥିବା ସ୍ଥଳେ ମାତ୍ର ଅଠର ଭାଗ ଜମି ଜଳସେଚିତ ହୋଇପାରିଛି । ମରୁଡ଼ି ଓ ବନ୍ୟା ଦାଉରେ ଲୋକମାନେ ଏବେ ମଧ୍ୟ ସଢୁଛନ୍ତି ଏବଂ ଦେଶରେ ବାରମ୍ବାର ଖାଦ୍ୟ ସଙ୍କଟ ଦେଖାଦେଉଛି । ସବୁ କ୍ଷେତକୁ ପାଣି ଯୋଗାଇବା ସାଙ୍ଗକୁ ବନ୍ୟା ଜଳକୁ ନିୟନ୍ତ୍ରଣ କରିପାରିଲେ ହିଁ ଆମେ ଆମର ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରିବା ।

ମୁନି ଋଷିମାନେ କହିଯାଇଛନ୍ତି ଯେ, ଋଣଂ କୃତ୍ୱା ଘୃତଂ ପିବେତ୍ । ଅର୍ଥାତ୍ ସତ୍ କାର୍ଯ୍ୟରେ ବିନିଯୋଗ ପାଇଁ ଋଣ କରିବା ଅପରାଧ ନୁହେଁ । କିନ୍ତୁ ଏସିଆଡ୍ ଗେମ୍ସ ଏବଂ ଅନ୍ୟାନ୍ୟ ଆମୋଦ ପ୍ରମୋଦ ପାଇଁ ଆମ ଦେଶ ଋଣଗ୍ରସ୍ତ ହୋଇପଡ଼ିଛି । ମୁଣ୍ଡ ଉପରେ ଋଣଭାର ବୋହି ଦେଶର ପ୍ରଗତି ଚିନ୍ତା କରିବା ନିଶ୍ଚିତ ଭାବେ ଏକ ଜଟିଳ ସମସ୍ୟା ।

ଏଭଳି ଜଟିଳ ବିଭିନ୍ନ ସମସ୍ୟା ସାଙ୍ଗକୁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା ହେଉଛି ଜାତୀୟ ସଂହତି । ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସମସ୍ତେ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ଦେଶର ଐକ୍ୟ ଓ ସଂହତି ପ୍ରତି ଗୁରୁତ୍ୱ ଆରୋପ କରିବା ଫଳରେ ହିଁ ଦେଶ ସ୍ୱାଧୀନ ହୋଇପାରିଥିଲା । ସେହି ଚିନ୍ତା, ସେହି ଚେତନା ଆଜି ଅନେକ ପରିମାଣରେ ହ୍ରାସ

ପାଇଛି । "ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ" ଏହି ଭାବନା ଆଜି କ୍ୱଚିତ୍ ପରିଲକ୍ଷିତ ହେଉଛି । ସଂକୀର୍ଣ୍ଣ ସାମ୍ପ୍ରଦାୟିକ ଚିନ୍ତାଧାରା ଓ ଜାତିଆଣ ମନୋଭାବ ଯୋଗୁଁ ଦେଶର ଜାତୀୟ ସଂହତି ଆଜି ବିପନ୍ନ ହୋଇପଡ଼ିଛି । ସେଥିପାଇଁ ଆମ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଜନସାଧାରଣଙ୍କୁ ଆହ୍ୱାନ ଦେଇ କହିଛନ୍ତି ଯେ, ଜାତିକୁ ଭିତ୍ତି ନକରି ଶ୍ରେଣୀକୁ ଭିତ୍ତି କରି ପ୍ରଗତିର ପଥକୁ ସୁଦୃଢ଼ କରିପାରିବା । ଏହି ନିଷ୍ପତ୍ତି ନେଇ ଉଚ୍ଚମନା ବିଜୁବାବୁ ଦୁର୍ବଳ ଶ୍ରେଣୀର ଲୋକମାନଙ୍କୁ ଉପରକୁ ଉଠାଇବା ପାଇଁ ବିଭିନ୍ନ ପଦକ୍ଷେପ ନେଇଛନ୍ତି ।

ଦି'ବେଳା ଦି'ମୁଠା ଖାଇବାକୁ ନପାଇ ଭୋକ ଉପାସରେ ପଡ଼ି ମରୁଥିବା ଦିନ ମଜୁରିଆମାନଙ୍କ ଦୁଃଖକୁ ଲାଘବ କରିବା ପାଇଁ ସର୍ବନିମ୍ନ ଦୈନିକ ମଜୁରୀ ପଚିଶି ଟଙ୍କା ଘୋଷଣା କରି ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ସମଗ୍ର ଦେଶରେ ଏକ ଇତିହାସ ସୃଷ୍ଟି କରିଛନ୍ତି । ଓଡ଼ିଶା ରାଜ୍ୟ ଋଣ ଭାରରେ ବୁଡ଼ି ରହିଥିଲେ ସୁଦ୍ଧା କୃଷୀ ଓ ଗ୍ରାମୀଣ କାରିଗରମାନଙ୍କୁ ଋଣମୁକ୍ତ କରି ସେମାନଙ୍କ ମୁହଁରେ ହସ ଫୁଟାଇ ପାରିଛନ୍ତି । ଏହା ମଧ୍ୟ ବିଜୁବାବୁଙ୍କ ଅନ୍ୟ ଏକ ଦୁଃସାହସିକ ପଦକ୍ଷେପ । ଗ୍ରାମାଞ୍ଚଳର ବିକାଶ ନିମନ୍ତେ ଗ୍ରାମ ଉନ୍ନୟନ ବିଭାଗ ସୃଷ୍ଟି କରିବା ସାଙ୍ଗକୁ ପଞ୍ଚାୟତ ସମିତି ଜରିଆରେ ହେଉଥିବା ଉନ୍ନୟନମୂଳକ କାର୍ଯ୍ୟଗୁଡ଼ିକର ଗୁଣାତ୍ମକ ବୃଦ୍ଧି କରିବା ପାଇଁ ପ୍ରତ୍ୟେକ ପଞ୍ଚାୟତ ସମିତି ଅଧୀନରେ ଜଣେ ଲେଖାଏଁ ଦକ୍ଷ ସହକାରୀ ଇଞ୍ଜିନିଅରଙ୍କୁ ନିଯୁକ୍ତି ଦେବା ବ୍ୟବସ୍ଥା କରିଛନ୍ତି । ପ୍ରଶାସନିକ ସୁବିଧା ପାଇଁ ନୂତନ ଭାବେ ଦଶଗୋଟି ଜିଲ୍ଲା ସୃଷ୍ଟି କରିବା ନିଷ୍ପତ୍ତି ଘୋଷଣା କରି ବିଜୁବାବୁ ଏକ ଐତିହାସିକ ରାୟ ଦେଇଛନ୍ତି । ବିଜୁବାବୁଙ୍କ କଡ଼ା ନିର୍ଦ୍ଦେଶ ଫଳରେ ରୁଗ୍ଣ ଶିଳ୍ପଗୁଡ଼ିକ ବର୍ତ୍ତମାନ କାର୍ଯ୍ୟକ୍ଷମ ହେବାରେ ଲାଗିଛି । ଜଳସେଚନ ବ୍ୟବସ୍ଥାକୁ ତ୍ୱରାନ୍ୱିତ କରିବା ପାଇଁ ଭାଙ୍ଗି ପଡ଼ିଥିବା ଓ ଅସମ୍ପୂର୍ଣ୍ଣ ଥିବା ଜଳସେଚନ ଯୋଜନାଗୁଡ଼ିକୁ ଯଥାଶୀଘ୍ର ସମ୍ପୂର୍ଣ୍ଣ କରିବା ନିମନ୍ତେ ବ୍ୟବସ୍ଥା କରାଯାଇଛି ।

ବିଗତ ପଚିଶି ବର୍ଷ ଧରି ଯାହା ସମ୍ଭବ ହୋଇପାରି ନଥିଲା, ବିଜୁବାବୁ ମାତ୍ର ଦଶମାସ ଭିତରେ ଅସମ୍ଭବକୁ ସମ୍ଭବ କରି ପାରିଛନ୍ତି । ଶାସନ କଳରେ ମୂଳରୁ ଚୂଳ ପର୍ଯ୍ୟନ୍ତ ରହି ଆସିଥିବା ଦୁର୍ନୀତିକୁ ହଟାଇବା ପାଇଁ ବିଜୁବାବୁ ଭୀଷ୍ମ ପ୍ରତିଜ୍ଞା କରି ଶାସନ କଳରେ ଥିବା ଦସ୍ୟୁ ରତ୍ନାକରମାନଙ୍କ ଚରିତ୍ର ସଂଶୋଧନ କରି ବାଲ୍ମୀକିରେ ପରିଣତ କରି ପାରିଛନ୍ତି । ଏହା କିଛି କମ୍ ଗୌରବର କଥା ନୁହେଁ । ଏହି ସବୁ ବିଭିନ୍ନ ସାଫଲ୍ୟ ସତ୍ତ୍ୱେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ନେତା ବିଜୁବାବୁଙ୍କ ପାଖରୁ ଜନସାଧାରଣ ଆହୁରି ଅଧିକ କିଛି ପାଇବା ପାଇଁ ଆଶା ଭରସା କରିଛନ୍ତି । ଉଚ୍ଚମନା ବିଜୁବାବୁ ମଧ୍ୟ ସେ ଅଭିଳାଷ ରଖିଛନ୍ତି । ତେବେ ସେହି ସ୍ୱପ୍ନକୁ ସାକାର କରି ସେତୁବନ୍ଧ ନିର୍ମାଣ କରିବାକୁ ହେଲେ ସବୁ ସ୍ତରରେ ସମସ୍ତେ ଗୁଣ୍ଡୁଚି ମୂଷା ଭଳି ନିଷ୍ଠା ଓ ଆନ୍ତରିକତାର ସହ କାର୍ଯ୍ୟ କରିବା ପାଇଁ ଶପଥ ନେବାକୁ ହେବ ।

ଶ୍ରୀଗୁଣ୍ଡିଚା ଯାତ୍ରାରେ ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସଭିଏଁ ସ୍ୱତଃସ୍ଫୂର୍ତ୍ତ ଭାବେ ରଥ ଦଉଡ଼ିକୁ ଟାଣିନେଲା ପରି ଏ କ୍ଷେତ୍ରରେ ମଧ୍ୟ ସମସ୍ତେ ସବୁ ଭେଦଭାବ ଭୁଲି ପ୍ରଗତିର ରଥ ଚକକୁ ଟାଣି ନେବାକୁ ହେବ । ଧର୍ମ ନାମରେ ଜାତୀୟ ସଂହତି ପ୍ରତି ଯେଉଁ ବିପଦ ଦେଖାଦେଇଛି, ତାକୁ ଦୃଢ଼ତାର ସହ ମୁକାବିଲା କରି ଜାତୀୟ ସଂହତି ଅକ୍ଷୁଣ୍ଣ ରଖିବାକୁ ହେବ । ପବିତ୍ର ସାଧାରଣତନ୍ତ୍ର ଦିବସରେ ଅତୀତ ଗୌରବକୁ ଫେରାଇ ଆଣିବା ପାଇଁ ଏହି ସଂକଳ୍ପ ହିଁ ଆମର କାମ୍ୟ ।

# ଅଷ୍ଟମ ପଞ୍ଚ ବାର୍ଷିକ ଯୋଜନା



ଶ୍ରୀ ଯାଦବ ମାଝୀ

ଗତ ଜୁନ ମାସରେ ଅନୁଷ୍ଠିତ ହୋଇଥିବା ଜାତୀୟ ଉନ୍ନୟନ ପରିଷଦରେ ଅଷ୍ଟମ ପଞ୍ଚ ବାର୍ଷିକ ଯୋଜନାର ଉଦ୍ଦେଶ୍ୟ ଓ ଲକ୍ଷ୍ୟ ଅନୁମୋଦିତ ହୋଇଅଛି । ଏହି ଯୋଜନାର କେତେକ ମୂଳ ଲକ୍ଷ୍ୟ ହେଉଛି :

(କ) ଜନସାଧାରଣଙ୍କ ସର୍ବନିମ୍ନ ଆବଶ୍ୟକତା ପୂରଣ ଓ ଗୁଣାତ୍ମକ ବିକାଶ ।

(ଖ) କୃଷି ଉତ୍ପାଦନର ଅଭିବୃଦ୍ଧି ।

(ଗ) ଯୋଜନାର ଗଣତାନ୍ତ୍ରିକ ବିକେନ୍ଦ୍ରୀକରଣ ।

(ଘ) ଗ୍ରାମାଞ୍ଚଳର ବିକାଶ ପାଇଁ ଯୋଜନା ବ୍ୟୟ ବରାଦରୁ ଅନ୍ତତଃ ଶତକଡା ୫୦ ଭାଗ ବିନିଯୋଗ ।

(ଙ) ଅଧିକ କର୍ମ ଯୋଗାଣ ।

(ଚ) ଏକ ବଳିଷ୍ଠ ଆତ୍ମନିର୍ଭରଶୀଳ ଅର୍ଥନୀତି ହାସଲ କରିବା ।

ଉପରୋକ୍ତ ଜାତୀୟ ଲକ୍ଷ୍ୟକୁ ଦୃଷ୍ଟିରେ ରଖି ଓଡ଼ିଶା ରାଜ୍ୟର ଅଷ୍ଟମ ଯୋଜନା ସମ୍ବନ୍ଧରେ ଏକ ସଂକ୍ଷିପ୍ତ ଟିପ୍ପଣୀ ମୁଁ ଏଠାରେ ଉପସ୍ଥାପିତ କରୁଛି ।

ଓଡ଼ିଶା ଏକ କୃଷି ପ୍ରଧାନ ରାଜ୍ୟ । ଗତ ସପ୍ତମ ପଞ୍ଚ ବାର୍ଷିକ ଯୋଜନା ମଧ୍ୟରେ ଏହା ଅନେକ ପ୍ରାକୃତିକ ବିପର୍ଯ୍ୟୟର ସମ୍ମୁଖୀନ ହୋଇଅଛି ।ସପ୍ତମ ଯୋଜନାର ପ୍ରଥମ ୩ ବର୍ଷ ମଧ୍ୟରେ ଖାଦ୍ୟ ଶସ୍ୟ ଉତ୍ପାଦନ ଅତିମାତ୍ରାରେ ହ୍ରାସ ହୋଇଅଛି । ୧୯୮୫–୮୬ ବର୍ଷରେ ମୋଟ ଖାଦ୍ୟ ଶସ୍ୟ ଉତ୍ପାଦନ ୬୯·୭୦ ଲକ୍ଷ ମେଟ୍ରିକ୍ ଟନ୍ ହୋଇଥିବା ସ୍ଥଳେ ଭୟାବହ ମରୁଡ଼ି ପରିସ୍ଥିତି ଯୋଗୁ ୧୯୮୬–୮୭ ବର୍ଷରେ ଏହା ୫୦·୬୦ ଲକ୍ଷ ମେଟ୍ରିକ୍ ଟନ୍‌କୁ କମି ଆସିଛି । କିନ୍ତୁ ୧୯୮୮–୮୯ ବର୍ଷରେ ଅନୁକୂଳ ମୌସୁମୀ ପ୍ରବାହ ଯୋଗୁ ଖାଦ୍ୟ ଶସ୍ୟ ଉତ୍ପାଦନ ୬୯·୮୦ ଲକ୍ଷ ଟନ୍‌ରେ ପହଞ୍ଚିଛି । ୧୯୮୯–୯୦ ବର୍ଷରେ ପୂର୍ବବର୍ଷ ଅପେକ୍ଷା ଅଧିକ ଉତ୍ପାଦନ ହୋଇଛି । ଚଳିତ ଆର୍ଥିକ ବର୍ଷରେ ଖରିଫ୍ ଫସଲ ୫୮·୪ ମେଟ୍ରିକ ଟନ୍‌ରେ ପହଞ୍ଚିଛି । କୃଷି କ୍ଷେତ୍ରରେ ଆଶାନୁରୂପ ଉତ୍ପାଦନ ଯୋଗୁ ସପ୍ତମ ଯୋଜନା କାଳରେ ଅଭିବୃଦ୍ଧି ହାର ଶତକଡ଼ା ୫ ହୋଇଛି ଏବଂ ଯୋଜନାର ଲକ୍ଷ୍ୟ ପୂରଣ ହୋଇପାରିଛି ।

୧୯୮୧ ଜନଗଣନା ଅନୁସାରେ ଓଡ଼ିଶାର ଲୋକସଂଖ୍ୟା ୨୬୪ ଲକ୍ଷ ଯାହାକି ଭାରତର ମୋଟ ଲୋକ ସଂଖ୍ୟା ଶତକଡ଼ା ୩·୮୫ ଭାଗ । ଗତ ୧୯୮୭ ମସିହାରେ ନମୁନା ରେଜିଷ୍ଟ୍ରେସନ ବୁଲେଟିନ୍ ଅନୁସାରେ ଓଡ଼ିଶାରେ ପ୍ରତି ହଜାର ଲୋକ ସଂଖ୍ୟାରେ ଜନ୍ମହାର ୩୧ ଏବଂ ମୃତ୍ୟୁହାର ୧୩·୧ ଥିଲା ଏବଂ ଶିଶୁ ମୃତ୍ୟୁ ସଂଖ୍ୟା ହଜାର ଲୋକ ସଂଖ୍ୟାରେ ୧୨୬ । ସପ୍ତମ ଯୋଜନାର ଶେଷ ସୁଦ୍ଧା ଏହି ରାଜ୍ୟର ଲୋକ ସଂଖ୍ୟା ୩୧୧ ଲକ୍ଷ ହେବା ଆଶା କରାଯାଏ । ରାଜ୍ୟର ମୋଟ ଲୋକ ସଂଖ୍ୟାର ପ୍ରାୟ ଶତକଡ଼ା ୩୯·୬୩ ଭାଗ ପନ୍ଦର ବର୍ଷରୁ କମ୍ ବୟସର ଲୋକ ଅଛନ୍ତି ଯାହାକି ଜାତୀୟ ସ୍ତରରେ ଏହି ବୟସ ପରିସୀମାର ସଂଖ୍ୟା ହେଉଛି ଶତକଡ଼ା ୩୭·୧ ଭାଗ । ଗତ ୧୯୭୧–୮୧ ଦଶନ୍ଧିରେ ଜନସଂଖ୍ୟା ବୃଦ୍ଧି ଶତକଡ଼ା ୨୦·୨କୁ ହ୍ରାସ ପାଇଥିଲା ଯାହାକି ୧୯୬୧–୭୧ ଦଶନ୍ଧିରେ ୨୫·୦୫ ଥିଲା । ଏହା ଏକ ଉତ୍ସାହଜନକ ସୂଚନା କାରଣ ଏହି ସମୟରେ ଜାତୀୟ ସ୍ତରରେ ଶତକଡ଼ା ୨୫ ଭାଗ ଥିଲା । ଆମ ରାଜ୍ୟରେ ଆଦିବାସୀ ଓ ହରିଜନମାନଙ୍କ ସଂଖ୍ୟା ରାଜ୍ୟର ମୋଟ ଜନସଂଖ୍ୟାର ଶତକଡ଼ା ୩୭·୧ ଭାଗ ଓ ସର୍ବଭାରତୀୟ କ୍ଷେତ୍ରରେ ଏହାର ସଂଖ୍ୟା ମୋଟ ଜନସଂଖ୍ୟାର ୨୩·୫ ଭାଗ । ୧୯୭୧ ମସିହାରେ ଆମ ରାଜ୍ୟରେ ଆଦିବାସୀ ଓ ହରିଜନ ସଂଖ୍ୟା ୮୩·୮ ଲକ୍ଷ ଥିବା ସ୍ଥଳେ ୧୯୮୧ ମସିହାରେ ଏହା ୯୭·୮ ଲକ୍ଷକୁ ବୃଦ୍ଧି ପାଇଛି । କୋରାପୁଟ ଜିଲ୍ଲାରେ ଏହାର ସଂଖ୍ୟା ହେଉଛି ଶତକଡ଼ା ୬୯·୩ ଭାଗ । ୧୯୮୧ ମସିହା ସୁଦ୍ଧା ଓଡ଼ିଶାର ସାକ୍ଷରତା ହାର ଶତକଡ଼ା ୩୪·୨ ଭାଗ ଥିଲା ବେଳେ ଏହା ଜାତୀୟ ସ୍ତରରେ ଶତକଡା ୩୬·୨ ଭାଗ ଥିଲା । ଏହି ରାଜ୍ୟରେ ମହିଳା ସାକ୍ଷରତା ହାର ଶତକଡା ୨୧·୧୨ ଭାଗ ଥିବା ସ୍ଥଳେ ପୁରୁଷ ସାକ୍ଷରତା ହାର ହେଉଛି ଶତକଡା ୪୭·୧୦ ।

ସପ୍ତମ ଯୋଜନାର ପ୍ରାରମ୍ଭରେ ରାଜ୍ୟର ବେକାରୀ ସଂଖ୍ୟା ୧୪·୫ ଲକ୍ଷ ଥିଲା । କିନ୍ତୁ ଏହି ଯୋଜନାର ମଧ୍ୟ ଭାଗରେ ଏହା

୧୨ ଲକ୍ଷକୁ କମି ଆସିଲା । କିନ୍ତୁ ଏହି ସମୟ ମଧ୍ୟରେ ଶିକ୍ଷିତ ବେକାର ସଂଖ୍ୟା ୩.୨୪ ଲକ୍ଷରୁ ୪.୫ ଲକ୍ଷକୁ ବୃଦ୍ଧି ପାଇଅଛି । ଯଦିଓ ଉପରୋକ୍ତ ଯୋଜନା ମଧ୍ୟରେ ଗ୍ରାମାଞ୍ଚଳରେ **NREP**, **RLEGP** ଦ୍ୱାରା ଅଧିକ ଶ୍ରମ ନିଯୋଗ ହୋଇଛି । ତଥାପି ଶିକ୍ଷିତ ବେକାରୀ ସମସ୍ୟାର ସମାଧାନ ହୋଇପାରିନି । ଏଣୁ ଅଷ୍ଟମ ଯୋଜନାରେ ଏହା ଏକ ବଡ଼ ସମସ୍ୟା ରୂପେ ଦେଖାଦେବ ।

ରାଜ୍ୟର ନୀଟ୍ ଘରୋଇ ଉତ୍ପାଦନ (୧୯୮୦-୮୧ ଦରରେ) ସପ୍ତମ ଯୋଜନାର ପ୍ରଥମ ଚାରି ବର୍ଷରେ ଏକ ମିଶ୍ରିତ ହାରରେ ବୃଦ୍ଧି ପାଇଥିଲା । ପ୍ରଥମ ଦୁଇ ବର୍ଷରେ କୌଣସି ବିଶେଷ ଅଭିବୃଦ୍ଧି ପରିଲକ୍ଷିତ ହୋଇ ନଥିଲା କାରଣ ୧୯୮୫-୮୬ ବର୍ଷରେ ମୋଟ ଆୟ ୩୯୮୦.୬୭ କୋଟି ଥିବା ସ୍ଥଳେ ୧୯୮୬-୮୭ରେ ଏହା ୩୯୭୯.୨୧ କୋଟି ହେଲା । ପୁନଶ୍ଚ ୧୯୮୭-୮୮ ମସିହାରେ ଏହା ୩୬୭୭.୦୪ କୋଟିକୁ କମି ଆସିଲା । କିନ୍ତୁ ୧୯୮୮-୮୯ରେ ଏହା ୪୩୯୧.୮୭ କୋଟିକୁ ବୃଦ୍ଧି ପାଇଲା । ସେହିପରି ମୁଣ୍ଡପିଛା ଆୟ ୧୯୮୫ ଠାରୁ ୧୯୮୭ ମଧ୍ୟରେ ୧,୩୯୦ ଟଙ୍କାରୁ ୧,୩୨୦ ଟଙ୍କାକୁ ଖସି ଆସିଲା ।

## ଦରଦାମ ପରିସ୍ଥିତି :

ସପ୍ତମ ଯୋଜନା କାଳରେ ଦରଦାମ ପରିସ୍ଥିତିରେ ମୁଦ୍ରାସ୍ଫୀତି ପ୍ରାୟ ଲାଗି ରହିଥିଲା । ୧୯୮୫-୮୬ ଏବଂ ୧୯୮୬-୮୭ ବର୍ଷରେ ସମସ୍ତ ପଣ୍ୟଦ୍ରବ୍ୟର ପାଇକାରୀ ଦରସୂଚକ (Whole sale price Index)ର ବୃଦ୍ଧି ଯଥାକ୍ରମେ ଶତକଡା ୫.୭ ଭାଗ ଏବଂ ୫.୩ ଭାଗରେ ସୀମିତ ଥିଲା । କିନ୍ତୁ ୧୯୮୭-୮୮ ଏବଂ ୧୯୮୮-୮୯ ବର୍ଷରେ ପାଇକାରୀ ଦର ସୂଚକ ହଠାତ୍ ଯଥାକ୍ରମେ ଶତକଡା ୭.୬ ଭାଗ ଏବଂ ୭.୪ ଭାଗକୁ ବୃଦ୍ଧି ପାଇଥିଲା ।

୧୯୮୯ ଜୁଲାଇ ମାସ ଶେଷ ସୁଦ୍ଧା ଓଡ଼ିଶାରେ ଶିଳ୍ପ ଶ୍ରମିକମାନଙ୍କ ପାଇଁ ଖାଉଟୀ ଦର ସୂଚକ (Consumer Price Index) ସର୍ବନିମ୍ନ ୧୬୦ (୧୯୮୨=୧୦୦ ଭିତ୍ତିରେ) ଥିଲା ବେଳେ ସର୍ବ ଭାରତୀୟ ସ୍ତରରେ ଏହା ୧୬୨ ଥିଲା । ଓଡ଼ିଶା ପାଇଁ ଏହା ଅନୁକୂଳ ଥିଲା । ସେହିପରି ଓଡ଼ିଶାର କୃଷି ଶ୍ରମିକମାନଙ୍କ ପାଇଁ ଖାଉଟୀ ଦର ସୂଚକ ୧୯୮୭-୮୮ଠାରୁ ୧୯୮୮-୮୯ରେ ଶତକଡା ୫.୩ ଭାଗ ସାଧାରଣ ସୂଚକ (General Index)ରେ ଏବଂ ଶତକଡା ୫ ଭାଗ ଖାଦ୍ୟ ସୂଚକ (Food Index) ରେ ବଢ଼ି ଥିଲା । ସର୍ବଭାରତୀୟ ସ୍ତରରେ ଏହି ବୃଦ୍ଧି ହାର ଯଥାକ୍ରମେ ଶତକଡା ୧୧.୪ ଭାଗ ଏବଂ ୭ ଭାଗ ଥିଲା ।

ରାଜ୍ୟ ସରକାର ଚାଷୀମାନଙ୍କ ଦ୍ୱାରା ଉତ୍ପାଦିତ ଦ୍ରବ୍ୟର ଉପଯୁକ୍ତ ମୂଲ୍ୟ ନିର୍ଦ୍ଧାରଣ କରିବାରେ ଯତ୍ନବାନ ଅଛନ୍ତି । ୧୯୮୮-୮୯ ବର୍ଷରେ ମୋଟା ଧାନର ସହାୟକ ମୂଲ୍ୟ କୁଇଣ୍ଟାଲ ପିଛା ୧୬୦ ଟଙ୍କା ଥିଲାବେଳେ ୧୯୮୯-୯୦ରେ ୧୮୫ ଟଙ୍କାକୁ ବୃଦ୍ଧି କରାଯାଇଛି । ସାଧାରଣ ବଣ୍ଟନ ପ୍ରଣାଳୀ ଜରିଆରେ ରାଜ୍ୟରେ ୧୯୮୯-୯୦ ବର୍ଷରେ ଦୁଇଲକ୍ଷ ମେଟ୍ରିକ୍ ଟନ୍ ଚାଉଳ ବଣ୍ଟନ ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା ବେଳେ ପ୍ରକୃତରେ ୧.୮୭ ଲକ୍ଷ ମେଟ୍ରିକ୍ ଟନ୍ ଚାଉଳ ସଂଗ୍ରହ କରାଯାଇ ପାରିଛି । ରାଜ୍ୟର ସହର ଓ ଗ୍ରାମାଞ୍ଚଳରେ ପ୍ରାୟ ୨୧,୧୬୪ ସୁଲଭ ମୂଲ୍ୟର ଦୋକାନ (ମାର୍ଚ୍ଚ ୧୯୯୦ ମସିହା ପର୍ଯ୍ୟନ୍ତ) ସାତ ଗୋଟି ଆବଶ୍ୟକୀୟ ପଦାର୍ଥ ଯଥା : ଚାଉଳ, ଗହମ, ଲେଭି ଚିନି, କିରୋସିନି, ନିୟନ୍ତ୍ରିତ କପଡ଼ା, ଖାଇବା ତେଲ ଏବଂ ଜାଳେଣୀ କୋଇଲାର କାରବାର କରୁଅଛନ୍ତି ।

## କୃଷି ବିକାଶ :

କୃଷି ଉତ୍ପାଦନ କ୍ଷେତ୍ରରେ ଷଷ୍ଠ ଯୋଜନା ତୁଳନାରେ ସପ୍ତମ ଯୋଜନାରେ ଅଧିକ ଉନ୍ନତି ଘଟିଛି । ସପ୍ତମ ଯୋଜନାର ପ୍ରଥମ ଚାରି ବର୍ଷରେ କୃଷି ଆୟ ବୃଦ୍ଧିହାର ଶତକଡା ୫.୫ ଭାଗ ଥିଲା (୧୯୮୦-୮୧ ମୂଲ୍ୟ ସୂଚୀ ଅନୁଯାୟୀ) । ସପ୍ତମ ଯୋଜନାର ପ୍ରଥମ ବର୍ଷ ମଧ୍ୟରେ ଖାଦ୍ୟ ଶସ୍ୟ ଉତ୍ପାଦନ ବୃଦ୍ଧିର ହାର ଶତକଡା ୫.୬ ଭାଗ ଏବଂ ଖାଦ୍ୟ ଶସ୍ୟର ଉତ୍ପାଦିକା ହାର ଶତକଡା ୪.୯ ଭାଗ ଥିଲା । ଶରତ, ଶୀତ ଏବଂ ଗ୍ରୀଷ୍ମ ଋତୁରେ ରାଜ୍ୟରେ ଧାନ ଚାଷ ସର୍ବତ୍ର ହୋଇଥାଏ । ରାଜ୍ୟରେ ୧୯୮୫-୮୬ ମସିହାରେ ଧାନ ଉତ୍ପାଦନ ଅଞ୍ଚଳ ଥିଲା ୪୪.୦୭ ଲକ୍ଷ ହେକ୍ଟର ଏବଂ ତାହା ୧୯୮୬-୮୭ ମସିହାରେ ୪୩.୯୪ ହେକ୍ଟର ଏବଂ ୧୯୮୭-୮୮ ମସିହାରେ ୪୦.୫୩ ଲକ୍ଷ ହେକ୍ଟରକୁ ଖସି ଆସିଛି । ୧୯୮୮-୮୯ ମସିହାରେ ଧାନ ଚାଷ ହେଉଥିବା ଅଞ୍ଚଳ ୪୨.୮୨ ଲକ୍ଷ ହେକ୍ଟରକୁ ବୃଦ୍ଧି ପାଇଅଛି । ୧୯୮୯-୯୦ ମସିହାରେ କେବଳ ଖରିଫ ଧାନ ଚାଷ କରାଯାଇଥିବା ଅଞ୍ଚଳ ୪୧.୮୭ ଲକ୍ଷ ହେକ୍ଟର ବୋଲି ଅଟକଳ କରାଯାଇଛି । ପ୍ରକୃତରେ ସପ୍ତମ ଯୋଜନା କାଳରେ ମୋଟ ଧାନ ଉତ୍ପାଦନ ଅବିରତ ଭାବରେ ବୃଦ୍ଧି ପାଇଛି । କେବଳ ୧୯୮୭-୮୮ ବର୍ଷରେ ଉତ୍କଟ ମରୁଡ଼ି ହେତୁ ଉତ୍ପାଦନ ବହୁତ କମିଗଲା ଯାହାକି ମାତ୍ର ୩୪.୭ ଲକ୍ଷ ମେଟ୍ରିକ୍ ଟନ୍ ଥିଲା । ମୋଟ ଉପରେ ୧୯୮୫-୮୬ ମସିହାରେ ହେକ୍ଟର ପ୍ରତି ଧାନ ଉତ୍ପାଦନ ୧୧.୮୭ କୁଇଣ୍ଟାଲରୁ ବୃଦ୍ଧି ପାଇ ୧୯୮୮-୮୯ ମସିହାରେ ଏହା ୧୨.୩୭ କୁଇଣ୍ଟାଲରେ ପହଁଚି ପାରିଛି । କେବଳ ୧୯୮୭-୮୮ ବର୍ଷରେ ଭୀଷଣ ମରୁଡ଼ି ହେତୁ ହେକ୍ଟର ପ୍ରତି ଧାନ ଉତ୍ପାଦନ ୮.୬୭ କୁଇଣ୍ଟାଲକୁ ହ୍ରାସ ପାଇଥିଲା । ରାଜ୍ୟରେ ଉତ୍ପାଦିକା ହାରର ବର୍ଦ୍ଧିଷ୍ଣୁ ଗତି ସତ୍ତ୍ୱେ ଏହା ଅନ୍ୟାନ୍ୟ ରାଜ୍ୟ ଏବଂ ସର୍ବଭାରତୀୟ ହାର ତୁଳନାରେ ବହୁତ ନିମ୍ନସ୍ତରରେ ଅଛି । ସର୍ବଭାରତୀୟ ହାର ହେଉଛି ହେକ୍ଟର ପିଛା ୧୪.୭ କୁଇଣ୍ଟାଲ ।

ଅଷ୍ଟମ ଯୋଜନାରେ କୃଷି ଉତ୍ପାଦନ ବୃଦ୍ଧି ପାଇଁ ଅଧିକ ଗୁରୁତ୍ୱ ଆରୋପ କରାଯାଇଛି । ଅଷ୍ଟମ ଯୋଜନାର ରୂପରେଖ ପ୍ରସ୍ତୁତ କରିବା ସମୟରେ ଗ୍ରାମାଞ୍ଚଳର ଜନସାଧାରଣଙ୍କର ଅର୍ଥନୈତିକ ଅବସ୍ଥାର ବିକାଶ ନିମନ୍ତେ ଗ୍ରାମ ଉନ୍ନୟନ ଅଭିମୁଖୀ କାର୍ଯ୍ୟକ୍ରମମାନଙ୍କ ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଉଅଛି । ଅଷ୍ଟମ ଯୋଜନାର ସମସ୍ତ କାର୍ଯ୍ୟକ୍ରମ ଗ୍ରାମାଞ୍ଚଳ ଲୋକମାନଙ୍କୁ କାର୍ଯ୍ୟ ଯୋଗାଇବା ଉପରେ ପର୍ଯ୍ୟବସିତ । ଅଷ୍ଟମ ଯୋଜନାର ଶେଷ ବେଳକୁ ଖାଦ୍ୟଶସ୍ୟ ଉତ୍ପାଦନର ଲକ୍ଷ୍ୟ ୯୬.୦୦ ଲକ୍ଷ ମେଟ୍ରିକ୍ ଟନ୍ । ସେଥିମଧ୍ୟରୁ ଧାନ ହେଉଛି ୭୨.୦୦ ଲକ୍ଷ ଟନ୍ । ଅଷ୍ଟମ ଯୋଜନା କାଳରେ କୃଷି ଉପଯୋଗୀ ଜଳବାୟୁ ଅଞ୍ଚଳ (Agro Claimatic Zone)ର ସର୍ବୋଚ୍ଚ ଉପଯୋଗ ପାଇଁ ସମୁଚିତ ଏବଂ ସ୍ଥାନ ବିନିର୍ଦ୍ଦିଷ୍ଟ କୌଶଳ ସ୍ଥିର

କରାଯାଇଛି । ବୃଷ୍ଟି ଜଳ ପୁଷ୍ଟ (Rainfed) ଚାଷ କୌଶଳ ଉପରେ ମଧ୍ୟ ଗୁରୁତ୍ୱ ଆରୋପ କରାଯାଇଅଛି ।

## ଜଙ୍ଗଲ ଉନ୍ନୟନ :

ଓଡ଼ିଶାରେ ଜଙ୍ଗଲ ଅଞ୍ଚଳ ୧୯୭୧-୭୨ ମସିହାରେ ଶତକଡା ୪୩-୫ ଭାଗ ଥିବାବେଳେ ୧୯୮୭-୮୮ ମସିହା ବେଳକୁ ତାହା ଶତକଡ଼ା ୩୭-୧ ଭାଗକୁ କମିଆସିଛି । ରାଜ୍ୟରେ ସପ୍ତମ ଯୋଜନା କାଳରେ ବୃକ୍ଷରୋପଣ, କ୍ଷୟପ୍ରାପ୍ତ ଜଙ୍ଗଲର ପୁନରୁଦ୍ଧାର କାର୍ଯ୍ୟକ୍ରମ ଅଧୀନରେ ସୁବିସ୍ତୃତ କାର୍ଯ୍ୟକ୍ରମ ସମ୍ପନ୍ନ ହୋଇଯାଇଛି । ଷଷ୍ଠ ଯୋଜନା କାଳରେ ୩-୯୩ ଲକ୍ଷ ହେକ୍ଟର ଜମିରେ ବୃକ୍ଷରୋପଣ କରାଯାଇଥିବା ସ୍ଥଳେ ସପ୍ତମ ଯୋଜନାର ପ୍ରଥମ ଚାରିବର୍ଷ ମଧ୍ୟରେ ୦-୪୪ ଲକ୍ଷ ହେକ୍ଟର ଜମିରେ ବୃକ୍ଷରୋପଣ କାର୍ଯ୍ୟକ୍ରମ ସମାହିତ ହୋଇଛି । ଷଷ୍ଠ ଏବଂ ସପ୍ତମ ଯୋଜନା କାଳରେ ରାଜ୍ୟରେ ଜାଳେଣୀ କାଠର ଅଭାବ ଦୂରୀକରଣ ଏବଂ ଗ୍ରାମାଞ୍ଚଳରେ ମୃତ୍ତିକାର ଉନ୍ନତି ସାଧନ ପାଇଁ ଓଡ଼ିଶା ସାମାଜିକ ଜଙ୍ଗଲ ପରିଯୋଜନା (SIDA)ଗ୍ରାମ୍ୟ ଜାଳେଣୀ କାଠ ବୃକ୍ଷରୋପଣ, ଜାତୀୟ ଗ୍ରାମ୍ୟ କର୍ମଯୋଗାଣ ଯୋଜନା(NREP), ଗ୍ରାମ୍ୟ ଶ୍ରମିକ କର୍ମଯୋଗାଣ କାର୍ଯ୍ୟକ୍ରମ (RLEGP) ଭଳି ବିଭିନ୍ନ ଯୋଜନାରେ ସାମାଜିକ ଜଙ୍ଗଲ ଅଭିବୃଦ୍ଧିର କାର୍ଯ୍ୟକ୍ରମ ହାତକୁ ନିଆଯାଇଛି ।

## ଅଷ୍ଟମ ଯୋଜନାରେ ନେବାକୁ ଥିବା କେତେକ ପଦକ୍ଷେପ :

(କ) ପ୍ରାକୃତିକ ଜଙ୍ଗଲର ରକ୍ଷଣାବେକ୍ଷଣ ଏବଂ ଭୋଗାଧିକାର ବଣ୍ଟନରେ ଜନସାଧାରଣଙ୍କୁ ଜଡ଼ିତ କରିବା

(ଖ) ଜନସାଧାରଣଙ୍କ ମଧ୍ୟରେ ଆଗ୍ରହ ସୃଷ୍ଟି କରି ସେମାନଙ୍କ ଉଦ୍ୟମରେ ଘରୋଇ ଜଙ୍ଗଲ ବୃଦ୍ଧି କରିବା ପାଇଁ ବୃହତ କାର୍ଯ୍ୟକ୍ରମ ହାତକୁ ନେବା

(ଗ) କ୍ଷୟପ୍ରାପ୍ତ ଜଙ୍ଗଲକୁ ବାଡ଼ ବନ୍ଦିକରି ତାହାର ପୁନଃବୃଦ୍ଧି କରିବା

(ଘ) ଉନ୍ନତ ଚାରା ଯୋଗାଇଦେଇ ବୃକ୍ଷରୋପଣରେ ଗୁଣାତ୍ମକ ପରିବର୍ତ୍ତନ ଆଣିବା

(ଙ) ବିଭିନ୍ନ ଜଙ୍ଗଲଭିତ୍ତିକ କାର୍ଯ୍ୟକ୍ରମଗୁଡ଼ିକୁ ଆଗେଇ ନେବା ପାଇଁ ଏକ ଗବେଷଣାତ୍ମକ ଭିତ୍ତିଭୂମି ପ୍ରଣୟନ କରିବା

(ଚ) ମୂଲ୍ୟାୟନ, ପର୍ଯ୍ୟାଲୋଚନା ଏବଂ ରିମୋଟ୍‌ସେନ୍‌ସିଂ ଜରିଆରେ ବିଭିନ୍ନ କାର୍ଯ୍ୟକ୍ରମଗୁଡ଼ିକୁ ଚୂଡ଼ାନ୍ତ କରି ଜଙ୍ଗଲ ବିଭାଗର କାର୍ଯ୍ୟଦକ୍ଷତା ବୃଦ୍ଧି କରିବା

(ଛ) କ୍ଷୟପ୍ରାପ୍ତ ଜଙ୍ଗଲ ଜମିରେ ପୁନଃଜଙ୍ଗଲ ସୃଷ୍ଟି କରିବା ପାଇଁ ଗ୍ରାମ୍ୟ ଜନସାଧାରଣ ଏବଂ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକୁ ଜଡ଼ିତ କରିବା

(ଜ) ଜଙ୍ଗଲ ପଶୁପକ୍ଷୀମାନଙ୍କର ସଂରକ୍ଷଣ କରିବା

## ମତ୍ସ୍ୟ ଚାଷ :

ସପ୍ତମ ଯୋଜନା କାଳରେ ମତ୍ସ୍ୟ ଉତ୍ପାଦନ କ୍ଷେତ୍ରରେ ଉନ୍ନତି ସାଧିତ ହୋଇଅଛି । ଦେଖାଯାଇଛି ଯେ ୧୯୮୫-୮୬ ବର୍ଷରେ ମୋଟ ମତ୍ସ୍ୟ ଉତ୍ପାଦନ ୧୦୮-୭୧ ହଜାର ମେଟ୍ରିକ୍ ଟନ୍ ହୋଇଥିବା ସ୍ଥଳେ, ୧୯୮୮-୮୯ ବର୍ଷରେ ଏହା ୧୩୧-୦୦ ହଜାର ମେଟ୍ରିକ୍ ଟନ୍‌କୁ ବୃଦ୍ଧି ପାଇଛି । ସେହିଭଳି ଅନ୍ୟ ରାଜ୍ୟକୁ ମତ୍ସ୍ୟ ରପ୍ତାନି ୧୯୮୪-୮୫ ବର୍ଷଠାରୁ ୧୯୮୮-୮୯ ବର୍ଷ ମଧ୍ୟରେ ଶତକଡ଼ା ୨୭-୧ ଭାଗ ବୃଦ୍ଧି ପାଇଛି ।

ଅଷ୍ଟମ ଯୋଜନା କାଳରେ ପୁନରୁଦ୍ଧାର, ଆଧୁନିକୀକରଣ ଏବଂ ଉତ୍ପାଦନ ବୃଦ୍ଧି ପାଇଁ ନୂତନ କୌଶଳ ପ୍ରୟୋଗ କରି ମତ୍ସ୍ୟ ଚାଷରୁ ଅଧିକ ଉତ୍ପାଦନ ବୃଦ୍ଧି କରିବା ସଙ୍ଗେ ସଙ୍ଗେ କର୍ମ ନିଯୁକ୍ତି ସୃଷ୍ଟି କରିବା ଉପରେ ଗୁରୁତ୍ୱ ଦିଆଯାଇଅଛି । ଏହି ଯୋଜନା ମଧ୍ୟରେ ନିମ୍ନଲିଖିତ କାର୍ଯ୍ୟକ୍ରମଗୁଡ଼ିକ ଅଗ୍ରାଧିକାର ଭିତ୍ତିରେ ହାତକୁ ନିଆଯିବ ।

(କ) କେନ୍ଦ୍ର ସହାୟତାରେ ଶତକଡ଼ା ୫୦ ଭାଗ ମତ୍ସ୍ୟଧରା ବନ୍ଦର ନିର୍ମାଣ, ମତ୍ସ୍ୟ ଜେଟି ନିର୍ମାଣ, ସଂଯୋଗ ରାସ୍ତା ଓ ହେଚରି ନିର୍ମାଣ

(ଖ) ମତ୍ସ୍ୟ ଚାଷ କ୍ଷେତ୍ର, ମତ୍ସ୍ୟ ଚାଷ ପୋଖରୀ, ଗୋଲାକାର ହେଚରିର ସମ୍ପ୍ରସାରଣ ଏବଂ କ୍ଷୁଦ୍ର ହେଚରି ସ୍ଥାପନ

(ଗ) ମତ୍ସ୍ୟ ଚାଷ ଉନ୍ନୟନ ଏଜେନ୍‌ସି ଓ ବି: ଏଫ୍: ଡି: ଏ: ଜରିଆରେ ଅନ୍ତର୍ଦେଶୀୟ ମତ୍ସ୍ୟ ଏବଂ ଚିଙ୍ଗୁଡ଼ି ଚାଷୀଙ୍କୁ ଏବଂ ସାଧାରଣ ମତ୍ସ୍ୟଜୀବୀମାନଙ୍କୁ ସହାୟତା ପ୍ରଦାନ

(ଘ) କ୍ଷୁଦ୍ର ମତ୍ସ୍ୟଜୀବୀ ଚାଷୀମାନଙ୍କର ସ୍ୱାର୍ଥରକ୍ଷା ପାଇଁ ଦୁର୍ଘଟଣା ବୀମା ଯୋଜନା, ସମସ୍ତ କର୍ମଠ ମତ୍ସ୍ୟଜୀବୀମାନଙ୍କ ପାଇଁ ସଞ୍ଚୟ ତଥା ସହାୟତା କାର୍ଯ୍ୟକ୍ରମ, ସ୍ୱଳ୍ପ ଖର୍ଚ୍ଚରେ ଗୃହ ନିର୍ମାଣ, ମତ୍ସ୍ୟଜୀବୀ ଗ୍ରାମମାନଙ୍କୁ ନଳକୂପ ଯୋଗାଣ ଏବଂ ମତ୍ସ୍ୟଜୀବୀମାନଙ୍କର ସ୍ୱାର୍ଥରକ୍ଷା ନିମନ୍ତେ ୧୯୮୨ ମସିହା ଓଡ଼ିଶା ସାମୁଦ୍ରିକ ମତ୍ସ୍ୟ ନିୟମର ଅଧିନିୟମ ପ୍ରବର୍ତ୍ତନ

## ବାସ୍ତବ ଲକ୍ଷ୍ୟ :

ସପ୍ତମ ଯୋଜନା କାଳରେ ମାଛ ଜାଆଁଳ ଉତ୍ପାଦନ ୧୯୦୦ ଲକ୍ଷ ଥିଲା ମାତ୍ର ଅଷ୍ଟମ ଯୋଜନା କାଳରେ ଜାଆଁଳ ଉତ୍ପାଦନ ୩,୦୦୦ ଲକ୍ଷକୁ ବୃଦ୍ଧି କରାଯିବ । ସପ୍ତମ ଯୋଜନା ଶେଷରେ ଅନ୍ତର୍ଦେଶୀୟ ମତ୍ସ୍ୟ (Inland fish) ଉତ୍ପାଦନ ୭୫,୮୭୦ ମେଟ୍ରିକ୍ ଟନ୍ ଏବଂ ସାମୁଦ୍ରିକ ମତ୍ସ୍ୟ (Marine fish) ଉତ୍ପାଦନ ୭୭, ୮୯୫ ମେଟ୍ରିକ୍ ଟନ୍ ଥିଲାବେଳେ ଅଷ୍ଟମ ଯୋଜନା କାଳରେ ଏହା ଯଥାକ୍ରମେ ୧,୦୦,୦୦୦ ମେଟ୍ରିକ୍ ଟନ୍ ଏବଂ ୧,୦୦,୦୦୦ ମେଟ୍ରିକ୍ ଟନ୍‌କୁ ବୃଦ୍ଧି ପାଇବ । ସପ୍ତମ ଯୋଜନା ଶେଷ ଭାଗରେ ପ୍ରବର୍ତ୍ତନାତ୍ମକ ଅଭିଜନନ (Induced breeding) ଦ୍ୱାରା ଜାଆଁଳ ଉତ୍ପାଦନ ୪,୯୧୦ ଲକ୍ଷ ଥିବାବେଳେ ଅଷ୍ଟମ ଯୋଜନାର ମଧ୍ୟ ଭାଗରେ ଏହା ୬,୦୦୦ ଲକ୍ଷରେ ପହଞ୍ଚିବ ।

## ପଶୁପାଳନ :

ଦୁଗ୍ଧ ଉତ୍ପାଦନ କ୍ଷେତ୍ରରେ ଅଭିବୃଦ୍ଧି ପୂର୍ବରୁ ଏତେ ତାତ୍ପର୍ଯ୍ୟପୂର୍ଣ୍ଣ ନଥିଲା। ୧୯୮୯-୯୦ ବର୍ଷର ପ୍ରଥମ ଦଶ ମାସ ମଧ୍ୟରେ ପ୍ରାୟ ୪.୨୫ ଲକ୍ଷ ଲିଟର ଦୁଗ୍ଧ ଉତ୍ପାଦନ ହୋଇଥିଲା କିନ୍ତୁ ୧୯୮୮-୮୯ ବର୍ଷ ମଧ୍ୟରେ ୬.୪୦ ଲକ୍ଷ ଲିଟର ଦୁଗ୍ଧ ଉତ୍ପାଦିତ ହୋଇଥିଲା। ସର୍ବଭାରତୀୟ ସ୍ତରରେ ମୁଣ୍ଡପିଛା ଦୁଗ୍ଧ ଉତ୍ପାଦନ ୧୯୮୬-୮୭ ବର୍ଷରେ ୬୮.୪ କେ: ଜି: ଥିବା ସ୍ଥଳେ ଓଡ଼ିଶାରେ ଏହା ୧୨.୨ କେ: ଜି: ଅଟେ। ରାଜ୍ୟରେ କୁକୁଡ଼ା ପାଳନର ଅଗ୍ରଗତି ଏତେ ସନ୍ତୋଷଜନକ ନୁହେଁ। ୧୯୮୯-୯୦ ବର୍ଷରେ ମୁଣ୍ଡପିଛା ଅଣ୍ଡା ଉତ୍ପାଦନ ୧୨ଟି ଅଟେ।

ଅଷ୍ଟମ ଯୋଜନା କାଳରେ ପଶୁପାଳନ ଏବଂ ଗୋ ମହିଷାଦି ଉନ୍ନୟନ ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଇଛି ଯଥା:

(କ) ଗୋ ମହିଷାଦି ପଶୁମାନଙ୍କର କ୍ରସ୍ ବ୍ରିଡିଂ କରାଯିବ

(ଖ) କୁକୁଡ଼ା ପାଳନ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆଣିବା।

(ଗ) ଶିଳ୍ପୋଦ୍ୟୋଗୀମାନଙ୍କୁ ସହଜ କିସ୍ତିରେ ଋଣ ଯୋଗାଇ ଦେବା ଏବଂ ଆତ୍ମ ନିଯୁକ୍ତିର ବ୍ୟବସ୍ଥା।

(ଘ) ପଶୁମାନଙ୍କର ସ୍ୱାସ୍ଥ୍ୟରକ୍ଷା ଏବଂ ପଶୁ ସମ୍ପଦର ବିକ୍ରୟ ବ୍ୟବସ୍ଥା କରିବା।

## ଜଳସେଚନ :

୧୯୮୯ ସେପ୍ଟେମ୍ବର ମାସ ସୁଦ୍ଧା ଓଡ଼ିଶାରେ ବୃହତ୍, ମଧ୍ୟମ, କ୍ଷୁଦ୍ର ଜଳସେଚନ ଏବଂ ଅନ୍ୟାନ୍ୟ ପ୍ରକଳ୍ପଗୁଡ଼ିକରୁ ଜଳସେଚନ ସୁବିଧା ୧୮.୮୭ ଲକ୍ଷ ହେକ୍ଟର ଜମିକୁ ଯୋଗାଇ ଦିଆଯାଇଛି। ଏଥି ମଧ୍ୟରୁ କେବଳ ବୃହତ୍ ଏବଂ ମଧ୍ୟମ ଜଳସେଚନ ପ୍ରକଳ୍ପ ଶତକଡ଼ା ୪୭.୫ ଭାଗ ଜମିକୁ, କ୍ଷୁଦ୍ର ଜଳସେଚନ ପ୍ରକଳ୍ପ (ପ୍ରବାହ) ଶତକଡ଼ା ୧୯.୬ ଭାଗ ଜମିକୁ, ଉଠା ଜଳସେଚନ ଶତକଡ଼ା ୧୨.୭ ଭାଗ ଜମିକୁ ଏବଂ ଅନ୍ୟାନ୍ୟ ଜଳସେଚନ ପ୍ରକଳ୍ପଗୁଡ଼ିକ ଶତକଡ଼ା ୨୦.୨ ଭାଗ ଜମିକୁ ଜଳସେଚନ ସୁବିଧା ଯୋଗାଇଅଛି। ଭାରତ ସରକାରଙ୍କ କେନ୍ଦ୍ରୀୟ ଜଳ କମିଶନ' ଅଟକଳ ଅନୁଯାୟୀ ଓଡ଼ିଶାରେ ସମୁଦାୟ ୬୫.୫୯ ଲକ୍ଷ ହେକ୍ଟର ଚାଷ ଜମି ମଧ୍ୟରୁ କେବଳ ୫୯ ଲକ୍ଷ ହେକ୍ଟର ଜମିକୁ ଜଳସେଚନ ସୁବିଧା ଯୋଗାଇ ଦିଆଯାଇ ପାରିବ।

ସପ୍ତମ ପଞ୍ଚ ବାର୍ଷିକ ଯୋଜନା ଶେଷ ବେଳକୁ ୯୨୭.୪୩ ହଜାର ହେକ୍ଟର ଖରିଫ୍ ଏବଂ ୪୩୧.୪୪ ହଜାର ହେକ୍ଟର ରବି ଜମିରେ ଜଳସେଚନ ସୁବିଧା ସୃଷ୍ଟି କରାଯାଇଛି। ବୃହତ୍ ଏବଂ ମଧ୍ୟମ ଜଳସେଚନ ଯୋଜନା କରିଆରେ ପ୍ରାୟ ଶତକଡ଼ା ୭୩.୪୯ ଭାଗ ଜଳସେଚନ ସମ୍ଭବ ହୋଇଛି।

ଅଷ୍ଟମ ପଞ୍ଚ ବାର୍ଷିକ ଯୋଜନା କାଳରେ ବୃହତ୍ ଏବଂ ମଧ୍ୟମ ଜଳସେଚନ ପ୍ରକଳ୍ପଗୁଡ଼ିକୁ କାର୍ଯ୍ୟକାରୀ କରିବା ପାଇଁ କେତେକ ନୀତି ପ୍ରଣୟନ କରାଯାଇଛି।

(କ) ଚାଲୁ ରହିଥିବା ବୃହତ ଏବଂ ମଧ୍ୟମ ଜଳସେଚନ ପ୍ରକଳ୍ପଗୁଡ଼ିକୁ ଶୀଘ୍ର ସମ୍ପୂର୍ଣ୍ଣ କରାଯିବ।

(ଖ) ପ୍ରଚଳିତ ଜଳସେଚନ ପଦ୍ଧତି ଆଧୁନିକୀକରଣ ଏବଂ ଜଳ ବ୍ୟବସ୍ଥାର ଗୁଣ/ଦକ୍ଷତାର ଉନ୍ନତି ସାଧନ ଏବଂ ପୂର୍ବରୁ ସୃଷ୍ଟି ହୋଇଥିବା ଜଳସେଚନ ସୁବିଧାର ଯଥାଶୀଘ୍ର ଉପଯୋଗ କରାଯିବ।

(ଗ) ଅଧିକ ଦକ୍ଷ ଚାଷୀମାନଙ୍କର ଅଂଶ ଗ୍ରହଣ।

(ଘ) କର୍ମ ନିଯୁକ୍ତି ସୃଷ୍ଟି କରାଯିବ।

ଉପରୋକ୍ତ ନୀତିଗୁଡ଼ିକୁ ଦୃଷ୍ଟିରେ ରଖି ରେଙ୍ଗାଲି, ସୁବର୍ଣ୍ଣରେଖା, ଅପର କୋଲାବ ଏବଂ ଅପର ଇନ୍ଦ୍ରାବତୀ ଭଳି ବୃହତ ଜଳସେଚନ ପ୍ରକଳ୍ପଗୁଡ଼ିକରେ ମହଜୁଦ୍ ଥିବା ଜଳକୁ ବିନିଯୋଗ କରିବା ନିମନ୍ତେ ଆବଶ୍ୟକ ଅର୍ଥ ଯୋଗାଇ ଦେବାର ବ୍ୟବସ୍ଥା କରାଯାଉଛି।

ଅଷ୍ଟମ ପଞ୍ଚ ବାର୍ଷିକ ଯୋଜନା କାଳରେ ନିମ୍ନଲିଖିତ ବୃହତ ଏବଂ ମଧ୍ୟମ ଜଳସେଚନ ପ୍ରକଳ୍ପଗୁଡ଼ିକୁ ସମ୍ପୂର୍ଣ୍ଣ କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ଏବଂ ଅଧିକ ଅର୍ଥ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଛି।

(୧) ଅପର ଇନ୍ଦ୍ରାବତୀ ବନ୍ଧ (ବୃହତ୍)।

(୨) ମହାନଦୀ–ଚିତ୍ରୋତ୍ପଳା ତ୍ରିକୋଣଭୂମି ଜଳସେଚନ ପ୍ରକଳ୍ପ (ମଧ୍ୟମ)।

(୩) ହରିହର ଜୋର୍।

(୪) ହରଭାଙ୍ଗୀ।

(୫) ଅପର ଜଙ୍କ।

(୬) ବଡ଼ନଳା।

(୭) ବାଘୁଆ ଷ୍ଟେଜ–୨।

(୮) ଦଦରା ଘାଟୀ।

(୯) ସାପୁଆ ବଡ଼ଜୋର।

(୧୦) ବିରୁପା–ଗେଙ୍ଗୁଟି ତ୍ରିକୋଣଭୂମି ଜଳସେଚନ ପ୍ରକଳ୍ପ।

(୧୧) ବାଘଲଟି।

ଅଷ୍ଟମ ପଞ୍ଚ ବାର୍ଷିକ ଯୋଜନା କାଳ ମଧ୍ୟରେ ୨୬ ଗୋଟି ନୂତନ ପ୍ରକଳ୍ପ ହାତକୁ ନିଆଯାଇଛି। ସେଥିମଧ୍ୟରୁ ୩ ଗୋଟି ବୃହତ୍, ୮ ଗୋଟି ମଧ୍ୟମ ଏବଂ ୧୫ ଗୋଟି ଆଧୁନିକୀକରଣ ପ୍ରକଳ୍ପ। ଏହି ବୃହତ୍ ଏବଂ ମଧ୍ୟମ ଜଳସେଚନ ପ୍ରକଳ୍ପଗୁଡ଼ିକ ରାଜ୍ୟର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ, ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳ ଏବଂ ଆର୍ଥିକ ଅନୁନ୍ନତ ଅଞ୍ଚଳମାନଙ୍କର ଉନ୍ନତି ସାଧନ କରିବ। ଏଣୁ ଅଷ୍ଟମ ପଞ୍ଚ ବାର୍ଷିକ ଯୋଜନାରେ ଏଥି ନିମନ୍ତେ ୧୯୬୮.୭୮ କୋଟି ଟଙ୍କା ବ୍ୟବସ୍ଥା କରିବା ପାଇଁ ପ୍ରସ୍ତାବ ଦିଆଯାଇଛି। ଏହି ଟଙ୍କା ବିନିଯୋଗରେ ୨୨୬.୭୬ ହଜାର ହେକ୍ଟର ଖରିଫ୍ ଜମି ଏବଂ ୧୫୫.୯୬ ହଜାର ହେକ୍ଟର ରବି ଜମିରେ ଜଳସେଚନ ଯୋଗାଇ ଦେବାର ପ୍ରସ୍ତାବ ରହିଅଛି।

## କ୍ଷୁଦ୍ର ଜଳସେଚନ (ପ୍ରବାହ) :

କ୍ଷୁଦ୍ର ଜଳସେଚନ ପ୍ରକଳ୍ପଗୁଡ଼ିକ ଅଳ୍ପ ସମୟ ମଧ୍ୟରେ ଆରମ୍ଭ ହୋଇ ଖୁବ୍ ଶୀଘ୍ର ଫଳପ୍ରଦ ହେଉଥିବା ହେତୁ ଅଷ୍ଟମ ଯୋଜନା କାଳ ମଧ୍ୟରେ କ୍ଷୁଦ୍ର ଜଳସେଚନଗୁଡ଼ିକ କାର୍ଯ୍ୟକାରୀ କରିବା ନିମନ୍ତେ ଅଗ୍ରାଧିକାର ଦିଆଯାଉଛି । ଚଳିତ ଆର୍ଥିକ ବର୍ଷ (୧୯୯୦-୯୧)ରେ ଅଧିକ ଜଳସେଚନ କାର୍ଯ୍ୟକ୍ରମ ହାତକୁ ନିଆଯାଇ କୃଷି ଉତ୍ପାଦନ ବୃଦ୍ଧି କରିବା ଏବଂ ଅଧିକ କର୍ମ ନିଯୋଜନର ସୁବିଧା ସୁଯୋଗ ସୃଷ୍ଟି କରିବା ପାଇଁ ୯୨ଟି ନୂତନ ମଧ୍ୟମ ଜଳସେଚନ ପ୍ରକଳ୍ପ ଏବଂ ଚାଲୁ ରହିଥିବା ୪୫୦ଟି ପ୍ରକଳ୍ପ ହାତକୁ ନେବାଲାଗି ସ୍ଥିର କରାଯାଇଛି ।

ଅଷ୍ଟମ ଯୋଜନା କାଳରେ କ୍ଷୁଦ୍ର ଜଳସେଚନ (ପ୍ରବାହ) ସେକ୍ଟରରେ ଥିବା ଯୋଜନା ପୁଞ୍ଜିକୁ ବିଚାରକୁ ନେଇ ଏବଂ ଅଷ୍ଟମ ଯୋଜନା ପ୍ରସ୍ତାବର ସର୍ବୋଚ୍ଚ ସୁଯୋଗ ହାସଲ କରିବା ପାଇଁ ପ୍ରଥମେ ଚାଲୁ ରହିଥିବା ବକେୟା ପ୍ରକଳ୍ପଗୁଡ଼ିକ ତ୍ୱରାନ୍ତ କରାଯିବ ଏବଂ ଯଥାସମ୍ଭବ କମ୍ ସମୟ ମଧ୍ୟରେ କୃଷକମାନଙ୍କୁ ଜଳସେଚନର ସୁବିଧା ଯୋଗାଇ ଦିଆଯିବ ।

ଆଦିବାସୀ ଉପ ଯୋଜନା ଅଞ୍ଚଳ, ମରୁଡ଼ି ଅଞ୍ଚଳ, ଅନ୍ୟ ଅନୁନ୍ନତ ଅଞ୍ଚଳରେ କ୍ଷୁଦ୍ର ଚାଷୀ ଏବଂ ନାମମାତ୍ର ଚାଷୀଙ୍କୁ ଦୃଷ୍ଟିରେ ରଖି ନୂତନ ଯୋଜନାମାନ ହାତକୁ ନିଆଯିବ ।

ଅଷ୍ଟମ ପଞ୍ଚ ବାର୍ଷିକ ଯୋଜନା କାଳରେ ୪୪,୧୭୦ ହେକ୍ଟର ଖରିଫ୍ ଏବଂ ୮,୮୮୦ ହେକ୍ଟର ରବି ଜମିରେ ଅଧିକ ଜଳସେଚନ ସୁବିଧା କରିବା ପାଇଁ ଯୋଜନା ପୁଞ୍ଜି ବ୍ୟବସ୍ଥା କରାଯାଇଛି ।

## ଉଠା ଜଳସେଚନ :

ଅଷ୍ଟମ ଯୋଜନାର କାର୍ଯ୍ୟକ୍ରମ ମୁଖ୍ୟତଃ କାର୍ଯ୍ୟକାରୀ ହେଉଥିବା ଉଠା ଜଳସେଚନ ପ୍ରକଳ୍ପଗୁଡ଼ିକର ଅନୁରକ୍ଷଣ କରିବା ନିମନ୍ତେ ଉଦ୍ଦିଷ୍ଟ । ଭୂଜଳ ସର୍ବେକ୍ଷଣ ଏବଂ ଅନୁସନ୍ଧାନ କାର୍ଯ୍ୟକ୍ରମ ଚଳିତ ବର୍ଷ ମଧ୍ୟରେ ସୀମାବଦ୍ଧ ହୋଇରହିବ ।

ଓଡ଼ିଶା ଉଠା ଜଳସେଚନ ନିଗମ ନୂତନ ପ୍ରକଳ୍ପ ସ୍ଥାପନ କରିବା ନିମନ୍ତେ ବିଭିନ୍ନ ଏଜେନ୍ସିରୁ ସହାୟତା ପାଉଅଛି । ଏହାଦ୍ୱାରା ପ୍ରାୟ ବର୍ଷକୁ ୮୦୦ ଗୋଟି ପ୍ରକଳ୍ପ କାର୍ଯ୍ୟକାରୀ ହୋଇପାରିବ । ୧୯୯୧-୯୨ର ୧୯୯୪-୯୫ ବର୍ଷ ମଧ୍ୟରେ ଓଡ଼ିଶା ଉଠା ଜଳସେଚନ ନିଗମ ଏହି ସହାୟତାରେ ୩,୨୦୦ ଉଠା ଜଳସେଚନ ପ୍ରକଳ୍ପ ସଂସ୍ଥାପନ କରିବ । ଚଳିତ ବର୍ଷ ପାଇଁ ୧,୨୭୮ ଗୋଟି ପ୍ରକଳ୍ପ ସଂସ୍ଥାପନ କରିବାର କାର୍ଯ୍ୟକ୍ରମ ରହିଅଛି । ସୁତରାଂ ଅଷ୍ଟମ ପଞ୍ଚ ବାର୍ଷିକ ଯୋଜନା କାଳ ମଧ୍ୟରେ ମୋଟ ୪,୪୭୮ ଗୋଟି ଉଠା ଜଳସେଚନ ପ୍ରକଳ୍ପ ସଂସ୍ଥାପନ କରାଯିବ ଏବଂ ତାହା ୯୦,୦୦୦ ହେକ୍ଟର ଜମିକୁ ଅଧିକ ଜଳସେଚନ ସୁବିଧା ଯୋଗାଇଦେବ ।

## ଶକ୍ତି :

ଦେଶର ସମୂହ ଆର୍ଥିକ ଉନ୍ନତି ପାଇଁ ଶକ୍ତିର ବିକାଶ ଅପରିହାର୍ଯ୍ୟ । ପ୍ରଥମ ପଞ୍ଚ ବାର୍ଷିକ ଯୋଜନାରେ ଏଥିପାଇଁ କେବଳ ୪.୮ କୋଟି ଟଙ୍କା ବ୍ୟୟ ବରାଦ ଥିବା ସ୍ଥଳେ ସପ୍ତମ ପଞ୍ଚ ବାର୍ଷିକ ଯୋଜନାରେ ଏଥିପାଇଁ ୭୮୬.୮୯ କୋଟି ଟଙ୍କାର ବ୍ୟବସ୍ଥା କରାଯାଇଥିଲା । କେନ୍ଦ୍ର ଶକ୍ତି ପ୍ରାଧିକାରୀଙ୍କ ଅଟକଳ ଅନୁସାରେ ସପ୍ତମ ଯୋଜନା ଶେଷରେ ଓଡ଼ିଶାର Firm Power 508·3 M. W ଥିବାବେଳେ ବିଦ୍ୟୁତ୍ ଚାହିଦା ୧,୨୭୧ ମେଗାୱାଟ୍‌କୁ ବୃଦ୍ଧି ପାଇଛି । ଏଣୁ ସପ୍ତମ ଯୋଜନା ଶେଷ ସୁଦ୍ଧା ଚାହିଦା ତୁଳନାରେ ୭୬୨.୭ M. W. ନିଅଣ୍ଟ ହୋଇଥିଲା । ଏହାର ଏକମାତ୍ର କାରଣ ଏହି ଯେ ଶକ୍ତିର ଚାହିଦା ବର୍ଷକୁ ପ୍ରାୟ ଶତକଡ଼ା ୧୩.୫ ହାରରେ ବୃଦ୍ଧି ପାଉଛି । ଆଶା କରାଯାଉଛି ଯେ ଅଷ୍ଟମ ଯୋଜନା ସମୟରେ ରାଜ୍ୟର Installed capacity (ରାଜ୍ୟ ଓ କେନ୍ଦ୍ର ସହଯୋଗ) ୨,୧୪୬ M. W.କୁ ଓ Firm Power 1,051·3କୁ ବୃଦ୍ଧି ପାଇବ । ୧୯୮୮-୮୯ ବର୍ଷ ଶେଷ ସୁଦ୍ଧା ରାଜ୍ୟର ମୋଟ ୪୬,୯୯୨ ଗ୍ରାମ ମଧ୍ୟରୁ ୨୯,୮୮୬ ଗ୍ରାମକୁ ବିଦ୍ୟୁତ୍ ସଂଯୋଗ କରାଯାଇଥିଲା । ଅଷ୍ଟମ ଯୋଜନାରେ ୧୦,୦୦୦ ଗ୍ରାମକୁ ବିଦ୍ୟୁତ୍ ସଂଯୋଗ କରିବାର ଲକ୍ଷ୍ୟ ରଖାଯାଇଛି । ଏହି ସମୟ ମଧ୍ୟରେ ହୀରାକୁଦ ସପ୍ତମ ୟୁନିଟ୍, ଇନ୍ଦ୍ରାବତୀ, ଅପରକୋଲାବ ଓ ରେଙ୍ଗାଲି ୨ୟ ପର୍ଯ୍ୟାୟ ଜଳ ବିଦ୍ୟୁତ୍ ପ୍ରକଳ୍ପ ଓ ଇବ୍ ଥର୍ମାଲ୍ ପ୍ରଥମ ପର୍ଯ୍ୟାୟକୁ ସମ୍ପୂର୍ଣ୍ଣ କରାଯିବ । ଏତଦ୍‌ବ୍ୟତୀତ ପ୍ରାୟ ୨୭ ଗୋଟି କ୍ଷୁଦ୍ର ଜଳ ବିଦ୍ୟୁତ୍ କେନ୍ଦ୍ର ପ୍ରତିଷ୍ଠା ପାଇଁ ପଦକ୍ଷେପ ନିଆଯିବ ।

## ଶିଳ୍ପ :

ଷଷ୍ଠ ଯୋଜନା ପ୍ରାରମ୍ଭରେ ଜାତୀୟ ମାନଚିତ୍ରରେ ଓଡ଼ିଶା ଶିଳ୍ପ କ୍ଷେତ୍ରରେ ଏକ ଅନୁନ୍ନତ ରାଜ୍ୟ ରୂପେ ଚିହ୍ନିତ ଥିଲା । କିନ୍ତୁ ସପ୍ତମ ଯୋଜନା ପ୍ରଥମ ଚାରିବର୍ଷ ମଧ୍ୟରେ ୭୧ ଗୋଟି ନୂତନ ବୃହତ୍ ଓ ମଧ୍ୟମ ଶିଳ୍ପ ପ୍ରତିଷ୍ଠା କରାଯାଇଥିଲା । ୧୯୮୯ ଜୁଲାଇ ଶେଷ ସୁଦ୍ଧା ୨୧୯ ବୃହତ୍ ଓ ମଧ୍ୟମ ଶିଳ୍ପ ଉତ୍ପାଦନକ୍ଷମ ହୋଇପାରିଛି । ଏଥିରେ ୧୦୦୩.୮୫ କୋଟି ଟଙ୍କା ବିନିଯୋଗ କରାଯାଇଛି । ଶିଳ୍ପର ବିକାଶକୁ ତ୍ୱରାନ୍ୱିତ କରିବା ପାଇଁ I. D. C., I. P. I. C. O. L., O. S. F. C., O. S. I. C., O. F. D. C. ଏବଂ E. L. C. O. ପ୍ରଭୃତି ସଂସ୍ଥାମାନେ ପଦକ୍ଷେପ ନେଉଛନ୍ତି । ୧୯୮୫-୮୬ ବର୍ଷରେ ଓଡ଼ିଶାର ମୁଣ୍ଡପିଛା ଶିଳ୍ପରୁ ମୋଟ୍ ଆୟ ୭୦୬ ଟଙ୍କା ଥିବା ସ୍ଥଳେ ସର୍ବ ଭାରତୀୟ ସ୍ତରରେ ଏହା ୧୫୭୫.୮ ଟଙ୍କା ଥିଲା । ଅଷ୍ଟମ ଯୋଜନାର ଶେଷ ବେଳକୁ ବିଦ୍ୟୁତ୍ କେନ୍ଦ୍ର ଓ ଇସ୍ପାତ କାରଖାନାର ପ୍ରତିଷ୍ଠା ପରେ ଓଡ଼ିଶା ଶିଳ୍ପ କ୍ଷେତ୍ରରେ ଦେଶର ଅନ୍ୟାନ୍ୟ ଶିଳ୍ପ ଉନ୍ନତ ରାଜ୍ୟ ସହ ସମାନ ସ୍ଥାନ ପାଇପାରିବ । ଏହି ଯୋଜନା ମଧ୍ୟରେ ଅଧିକ ସଫଳ ବିନିଯୋଗ କରି ଅସମ୍ପୂର୍ଣ୍ଣ ଶିଳ୍ପ ସଂସ୍ଥା ଓ ରୁଗ୍ଣ ସଂସ୍ଥାକୁ ଅଭ୍ୟୁତ୍ଥାନ ଓ ଆଧୁନିକୀକରଣ କରାଯିବ । ଗ୍ରାମୀଣ କାରିଗର ଓ କୃଷି ଭିତ୍ତିକ ଶିଳ୍ପ, ଖଦୀ ଓ ଗ୍ରାମ୍ୟ ଶିଳ୍ପର ବିକାଶକୁ ଅଗ୍ରାଧିକାର ଦିଆଯିବ ।

## ଖଣିଜ ସମ୍ପଦ :

ଓଡ଼ିଶା ଖଣିଜ ସମ୍ପଦରେ ପରିପୂର୍ଣ୍ଣ । ସପ୍ତମ ଯୋଜନାର ପ୍ରଥମ ଚାରିବର୍ଷ ମଧ୍ୟରେ ଓଡ଼ିଶାର ଧାତବ ଓ ଖଣିଜ ପଦାର୍ଥ ଉତ୍ପାଦନ କରାଯାଇ ବିଦେଶକୁ ବହୁ ପରିମାଣରେ ରପ୍ତାନୀ କରାଯାଇଛି । ୧୯୮୭-୮୮ ବର୍ଷଠାରୁ ୧୯୮୮-୮୯ ବର୍ଷରେ

ଧାତବ ପଦାର୍ଥର ରପ୍ତାନୀ ଶତକଡ଼ା ୬୩ ଭାଗକୁ ବୃଦ୍ଧି ପାଇଛି । କିନ୍ତୁ ୧୯୮୪-୮୫ ବର୍ଷ ତୁଳନାରେ ୧୯୮୮-୮୯ ବର୍ଷରେ ଏହା ଶତକଡ଼ା ୧୩୪୩.୪ ଭାଗକୁ ବୃଦ୍ଧି ପାଇଛି ।

ଅଷ୍ଟମ ଯୋଜନା କାଳରେ ଖଣିଜ ଓ ଧାତବ ପଦାର୍ଥ ଉତ୍ପାଦନର ଅଭିବୃଦ୍ଧି ହାର ବହୁ ଉଚ୍ଚ ସ୍ତରରେ ରଖାଯାଇଛି । ଆଶା କରାଯାଉଛି ଯେ ଏହି ଅଭିବୃଦ୍ଧି ହାର ସମ୍ପୂର୍ଣ୍ଣ ଭାବରେ ବରଂ ଧାର୍ଯ୍ୟ ଲକ୍ଷ୍ୟଠାରୁ ଅଧିକ ହାରରେ ହାସଲ କରାଯାଇ ପାରିବ ଏବଂ ରାଜ୍ୟର ଅର୍ଥନୈତିକ ଅଭିବୃଦ୍ଧି ପାଇଁ ଏହା ସହାୟକ ହେବ ।

## ବିଜ୍ଞାନ ଓ ବୈଷୟିକ କାର୍ଯ୍ୟକ୍ରମ :

ରାଜ୍ୟରେ ବିଜ୍ଞାନ, ବୈଷୟିକ ଓ ପରିବେଶ ବିଭାଗ ୧୯୮୩ ମସିହା ଜାନୁୟାରୀ ମାସରୁ ଆରମ୍ଭ ହୋଇ ରାଜ୍ୟରେ ବିଜ୍ଞାନ କାରିଗରୀ ଏବଂ ପରିବେଶର ବିକାଶ ନିମନ୍ତେ ଅନେକଗୁଡ଼ିଏ ଉନ୍ନତିମୂଳକ କାର୍ଯ୍ୟକ୍ରମ ଆରମ୍ଭ କରିଛି । ଷଷ୍ଠ ପଞ୍ଚ ବାର୍ଷିକ ଯୋଜନା କାଳ ମଧ୍ୟରେ ୪,୮୬୨ ଗୋଟି ପରିବାର ଭିତ୍ତିକ ଜୈବିକ ଗ୍ୟାସ୍ ପ୍ଲାଣ୍ଟ ହୋଇଥିବା ସ୍ଥଳେ ସପ୍ତମ ଯୋଜନା କାଳରେ ଶକ୍ତିର ବିକଳ୍ପ ବ୍ୟବସ୍ଥା ଉଦ୍ଭାବନ କରିବାକୁ ଯାଇ ୨୬,୭୨୫ ସଂଖ୍ୟକ ପରିବାର ଭିତ୍ତିକ ଜୈବିକ ଗ୍ୟାସ୍ ପ୍ଲାଣ୍ଟ ଏବଂ ୨୩ ଗୋଟି ଗୋଷ୍ଠୀ ଭିତ୍ତିକ ଜୈବିକ ଗ୍ୟାସ୍ ପ୍ଲାଣ୍ଟ ସଂସ୍ଥାପନ କରାଯାଇଛି । ସେହିଭଳି ସପ୍ତମ ଯୋଜନା କାଳ ମଧ୍ୟରେ ୨୧୫ ଜଳଶକ୍ତି ଚାଳିତ ପବନ କଳ, ୫୧୬ଟି ସୂର୍ଯ୍ୟ ଶକ୍ତି ଚୁଲା ଏବଂ ୨୦୫.୮ ହଜାର ଉନ୍ନତ ଚୁଲା ସଂସ୍ଥାପନ କରାଯାଇଛି । ଏହି ସମସ୍ତ କାର୍ଯ୍ୟକ୍ରମ ୧୯୮୪ ମସିହାଠାରୁ କାର୍ଯ୍ୟକାରୀ କରାଯାଉଅଛି । ୧୯୮୪ ମସିହାରେ ଓଡ଼ିଶା ରିମୋଟ ସେନ୍ସିଂ ଆପ୍ଲିକେସନ କେନ୍ଦ୍ର ଭଳି ଏକ ନୋଡାଲ୍ ଏଜେନ୍ସି ସ୍ଥାପନ କରିବା ନିମନ୍ତେ ଆମ ରାଜ୍ୟ ଏକ ସୁଯୋଗ ପାଇଥିଲା । ଏହି ସଂସ୍ଥା ଜଙ୍ଗଲ ଅଞ୍ଚଳକୁ ବିନିର୍ଦ୍ଦିଷ୍ଟ କରିବା, ମରୁଡ଼ି ଅବସ୍ଥାର ପର୍ଯ୍ୟାଲୋଚନା କରିବା, ବୃକ୍ଷରୋପଣ କାର୍ଯ୍ୟକ୍ରମର ସର୍ବେକ୍ଷଣ କରିବା, ପରିବେଶ ଏବଂ ଖଣିଜ ପଦାର୍ଥର ନିର୍ଦ୍ଧାରଣ କରିବା ନିମନ୍ତେ ଅନୁସନ୍ଧାନ କାର୍ଯ୍ୟ କରୁଛନ୍ତି । ଏଭଳି ୮୬ ଗୋଟି କାର୍ଯ୍ୟ ହାତକୁ ନେଇ ୧୯୮୮-୮୯ ସୁଦ୍ଧା ୧୬ ଗୋଟି ରିପୋର୍ଟ ପ୍ରକାଶିତ ହୋଇଅଛି । ଓଡ଼ିଶା କମ୍ପ୍ୟୁଟର୍ ଆପ୍ଲିକେସନ କେନ୍ଦ୍ର, ଆଞ୍ଚଳିକ ବିଜ୍ଞାନ କେନ୍ଦ୍ର, ରାଜ୍ୟ ପ୍ରଦୂଷଣ ନିବାରଣ ଏବଂ ନିୟନ୍ତ୍ରଣ ବୋର୍ଡ, ଆଞ୍ଚଳିକ ପ୍ଲାଣ୍ଟ କେନ୍ଦ୍ର ଇତ୍ୟାଦି ଭଳି ଅନେକ ଏଜେନ୍ସି ସପ୍ତମ ଯୋଜନା କାଳ ମଧ୍ୟରେ ସଫଳତାର ସହ କାର୍ଯ୍ୟ କରିଆସିଛନ୍ତି । ଅଷ୍ଟମ ଯୋଜନା କାଳ ମଧ୍ୟରେ ବିଜ୍ଞାନ କାରିଗରୀ ବିକାଶ ନିମନ୍ତେ ପର୍ଯ୍ୟାପ୍ତ ପୁଞ୍ଜି ବ୍ୟବସ୍ଥା କରାଯାଇଅଛି । ଏହାଦ୍ୱାରା ବିଜ୍ଞାନ ଗବେଷଣା ଓ ପରିବେଶ କାର୍ଯ୍ୟକ୍ରମ ମାଧ୍ୟମରେ ଅନେକଗୁଡ଼ିଏ ପ୍ରକଳ୍ପ ସଫଳତାର ସହ କାର୍ଯ୍ୟକାରୀ ହୋଇପାରିବ ।

## ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ :

ଓଡ଼ିଶାର ଆର୍ଥିକ ଅବସ୍ଥା ଅତି ଅନୁନ୍ନତ ଓ ରାଜ୍ୟର ପ୍ରାୟ ଶତକଡ଼ା ୮୮ ଭାଗ ଲୋକ ଗ୍ରାମରେ ବାସ କରନ୍ତି । ୧୯୮୩ ମସିହା ସମୀକ୍ଷା ଅନୁସାରେ ଜନସଂଖ୍ୟାର ଶତକଡ଼ା ୫୨.୮ ଭାଗ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ଅଛନ୍ତି ।

ଗ୍ରାମାଞ୍ଚଳର ଦରିଦ୍ର ଲୋକମାନଙ୍କର ସାମାଜିକ ଓ ଆର୍ଥିକ ଉ
ପାଇଁ ଅନେକ ଗୋଷ୍ଠୀ ଉନ୍ନୟନ ଯୋଜନା କାର୍ଯ୍ୟକ
କରାଯାଇଅଛି । ଏଥିରେ ସମନ୍ୱିତ ଗ୍ରାମ ଉନ୍ନୟନ ଯୋ
ଅନ୍ୟତମ । ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଦ
ଲୋକମାନଙ୍କର ଆର୍ଥିକ ଅବସ୍ଥାର ମାନରେ ଉନ୍ନତି ଘଟା
ଏହାର ମୁଖ୍ୟ ଉଦ୍ଦେଶ୍ୟ । ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟ
ଜରିଆରେ ଷଷ୍ଠ ଯୋଜନା କାଳରେ ୯.୨ ଲକ୍ଷ ପରିବାର ଉପ
ହୋଇଥିବା ସ୍ଥଳେ ସପ୍ତମ ଯୋଜନା କାଳରେ ୧୦.୧୫ ଲ
ପରିବାର ଏହି କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ହୋଇଥିଲେ
ଏତଦ୍‌ବ୍ୟତୀତ ଜବାହର ରୋଜଗାର ଯୋଜନା କାର୍ଯ୍ୟ
ମାଧ୍ୟମରେ ୧୯୬୫.୧୨ ଲକ୍ଷ ଶ୍ରମ ଦିବସ ସୃଷ୍ଟି କରାଯାଇଅ
ଅଷ୍ଟମ ଯୋଜନାରେ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମକୁ ଅଧି
ସୁଦୂର ପ୍ରସାରୀ ଓ ତ୍ୱରାନ୍ୱିତ କରାଯିବ ।

## ମହିଳା କଲ୍ୟାଣ କାର୍ଯ୍ୟକ୍ରମ :

୧୯୮୧ ଜନଗଣନା ଅନୁସାରେ ଓଡ଼ିଶାର ମହିଳା ସଂଖ୍ୟା ୧
କୋଟି ୩୦ ଲକ୍ଷ ଏବଂ ରାଜ୍ୟର ମୋଟ ଲୋକସଂଖ୍ୟାର ପ୍ରା
ଅର୍ଦ୍ଧାଂଶ । ଏମାନଙ୍କ ମଧ୍ୟରେ ସାକ୍ଷର ସଂଖ୍ୟା ଶତକଡ଼ା ୨୧.୦
ଭାଗ । ମହିଳାମାନଙ୍କର ସାମାଜିକ ଓ ଆର୍ଥିକ ଉନ୍ନତି ପାଇଁ ଗ
ସପ୍ତମ ପଞ୍ଚ ବାର୍ଷିକ ଯୋଜନାରେ ଅନେକ ଜନମଙ୍ଗଳ କାର୍ଯ୍ୟକ
ହାତକୁ ନିଆଯାଇଛି । ମହିଳା କର୍ମଚାରୀମାନଙ୍କ ପାଇଁ ହଷ୍ଟେଲ
ପ୍ରୌଢ଼ଶିକ୍ଷା ପାଇଁ ସଂକ୍ଷିପ୍ତ ପାଠ୍ୟକ୍ରମ ଓ ବୃତ୍ତିଗତ ତାଲି
ଇତ୍ୟାଦି । ଅଷ୍ଟମ ଯୋଜନା କାଳରେ ୧୦ ଗୋଟି ବୃତ୍ତିଗ
ତାଲିମ କେନ୍ଦ୍ର, ୬୨୫ ଦୈନ୍ୟ ପ୍ରପୀଡ଼ିତ ମହିଳାଙ୍କର ଥଇଥାନ
ମହିଳା ସମିତି ଦ୍ୱାରା ଉତ୍ପାଦିତ ଜିନିଷ ପାଇଁ ଅଧିକ ୧୦ ଗୋଟି
ବିକ୍ରୟ କେନ୍ଦ୍ର, ଯୌତୁକ ବିହୀନ ବିବାହ ପାଇଁ ଅର୍ଥ ଅନୁଦାନ
ଇତ୍ୟାଦି କାର୍ଯ୍ୟକ୍ରମ ହାତକୁ ନିଆଯାଇଅଛି ।

## ହରିଜନ ଓ ଆଦିବାସୀ କଲ୍ୟାଣ କାର୍ଯ୍ୟକ୍ରମ :

୧୯୮୧ ମସିହା ଜନଗଣନା ଅନୁସାରେ ଓଡ଼ିଶାର ମୋଟ
ଜନସଂଖ୍ୟା ୨ କୋଟି ୬୩ ଲକ୍ଷ ୭୦ ହଜାର ମଧ୍ୟରୁ ଆଦିବାସୀ
ମୋଟ ଜନସଂଖ୍ୟା ହେଉଛି ୫୯ ଲକ୍ଷ ୧୫ ହଜାର ଏବଂ ଏହା
ଶତକଡ଼ା ୨୨.୪୩ ଭାଗ । ଆଦିବାସୀ ସଂଖ୍ୟାନୁପାତରେ
ମଧ୍ୟପ୍ରଦେଶ ପରେ ଓଡ଼ିଶାର ସ୍ଥାନ ଦ୍ୱିତୀୟ । ଅଷ୍ଟମ ପଞ୍ଚ ବାର୍ଷିକ
ଯୋଜନା କାଳରେ ୩.୮୯ ଲକ୍ଷ ଆଦିବାସୀ ପରିବାର ବିଭିନ୍ନ
ଉନ୍ନୟନ ଯୋଜନା ମାଧ୍ୟମରେ ସାହାଯ୍ୟ ଦେବାର ଲକ୍ଷ୍ୟ
ରଖାଯାଇଛି । ଆଦିବାସୀ ଅଞ୍ଚଳରେ ଅଧିକ ଶିକ୍ଷାର ପ୍ରସାର
ପାଇଁ ପଦକ୍ଷେପ ନିଆଯିବ । ବର୍ତ୍ତମାନ ୨୧ ଆଇ: ଟି: ଡି: ଏ:, ୪୫
ମାଡ଼ା, ୮ କ୍ଲଷ୍ଟର ଓ ୧୫ ମାଇକ୍ରୋ ପ୍ରୋଜେକ୍ଟ କାର୍ଯ୍ୟକାରୀ
କରାଯାଉଅଛି । ଓଡ଼ିଶାରେ ମୋଟ ୯୩ ତଫସିଲଭୁକ୍ତ ଜାତି ଅଛନ୍ତି
ଓ ୧୯୮୧ ଜନଗଣନା ଅନୁସାରେ ସେମାନଙ୍କ ସଂଖ୍ୟା ୩୮ ଲକ୍ଷ
୬୫ ହଜାର ଏବଂ ଲୋକସଂଖ୍ୟାର ଶତକଡ଼ା ୧୬.୨୨ ଭାଗ ।
ଅଷ୍ଟମ ଯୋଜନା ଶେଷ ସୁଦ୍ଧା ବିଭିନ୍ନ ଉନ୍ନୟନ ମୂଳକ କାର୍ଯ୍ୟକ୍ରମ
ଜରିଆରେ ୨,୫୮,୦୦୦ ପରିବାରକୁ ସାହାଯ୍ୟ ଦିଆଯିବ ।
ଏମାନଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ପାନୀୟ ଜଳ, ଗମନାଗମନ
ସୁବିଧା, ଗ୍ରାମ୍ୟ ବିଦ୍ୟୁତ୍ ଓ ବାସଗୃହ ଯୋଗାଇ ଦିଆଯିବ ।

## ଶିକ୍ଷା :

ସ୍ୱାକ୍ଷରତା କ୍ଷେତ୍ରରେ ଓଡ଼ିଶାର ସ୍ଥାନ ଦେଶରେ ଦଶମ। ୧୯୮୧ ଜନଗଣନା ଅନୁସାରେ ସର୍ବଭାରତୀୟ ସାକ୍ଷର ହାର ଶତକଡ଼ା ୩୬·୨ ଥିବା ସ୍ଥଳେ ଆମ ରାଜ୍ୟର ସ୍ୱାକ୍ଷର ସଂଖ୍ୟା ହାର ଶତକଡ଼ା ୩୪·୨ ଭାଗ। ମହିଳାମାନଙ୍କର ସ୍ୱାକ୍ଷର ହାର ଶତକଡ଼ା ୨୧ ଭାଗ। ୧୯୮୬ ମସିହା ନୂତନ ଶିକ୍ଷାନୀତି ଅନୁସାରେ ୧୯୯୫ ସୁଦ୍ଧା ଏହି ରାଜ୍ୟରେ ନିରକ୍ଷରତା ସମ୍ପୂର୍ଣ୍ଣ ରୂପେ ଦୂରୀକରଣ କରାଯିବାର ଲକ୍ଷ୍ୟ ରଖାଯାଇଛି। ୧୯୮୯–୯୦ ବର୍ଷଠାରୁ ପ୍ରାଥମିକ ଓ ପ୍ରୌଢ଼ ଶିକ୍ଷାକୁ ସାର୍ବଜନୀନ ଶିକ୍ଷା ରୂପେ ଘୋଷଣା କରାଯାଇ ଏଥିପାଇଁ ଆବଶ୍ୟକ ପଦକ୍ଷେପ ନିଆଯାଉଅଛି। ୧୯୮୯ ଲୋକସଂଖ୍ୟା ଅଟକଳ ଅନୁସାରେ ଆମ ରାଜ୍ୟରେ ୬ ବର୍ଷରୁ ୧୧ ବର୍ଷ ବୟସ ମଧ୍ୟରେ ୮୪·୯ ଲକ୍ଷ ଶିଶୁ ଥିଲେ ଓ ସେମାନଙ୍କ ମଧ୍ୟରୁ ୩୮·୧ ଲକ୍ଷ ବାଳକ ବାଳିକାଙ୍କୁ ପ୍ରାଥମିକ ଶିକ୍ଷାର ପରିସରଭୁକ୍ତ କରାଯାଇଛି। ଏକ ଅଟକଳ ଅନୁଯାୟୀ ଆମ ରାଜ୍ୟର ୫୧·୮ ଲକ୍ଷ ପ୍ରୌଢ଼ ନିରକ୍ଷର ଲୋକଙ୍କୁ ସ୍ୱାକ୍ଷର କରିବାକୁ ପଡ଼ିବ। ୧୯୮୯–୯୦ ଶେଷ ସୁଦ୍ଧା ୨୨·୬ ଲକ୍ଷ ପ୍ରୌଢ଼ ନିରକ୍ଷରଙ୍କୁ ସ୍ୱାକ୍ଷର କରାଯାଇଛି। ସମ୍ପୂର୍ଣ୍ଣ ନିରକ୍ଷରତା ଦୂର କରିବା ପାଇଁ ରାଜ୍ୟରେ ୬୨ ଗୋଟି ବ୍ଲକକୁ ବଛାଯାଇଛି। ସେଥିମଧ୍ୟରୁ ୨୫ ଗୋଟି ବ୍ଲକ୍‌ରେ ମାଇକ୍ରୋପ୍ଲାନ୍ ସମ୍ପୂର୍ଣ୍ଣ କରାଯାଇଛି ।ଏତଦ୍‌ବ୍ୟତୀତ ଅଷ୍ଟମ ଯୋଜନାରେ ଏକ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ଜରିଆରେ କଳାହାଣ୍ଡି ଓ ବଲାଙ୍ଗୀରର ଜିଲ୍ଲାରୁ ନିରକ୍ଷରତା ସମ୍ପୂର୍ଣ୍ଣ ରୂପେ ଦୂରୀକରଣ କରାଯିବ।

## ସ୍ୱାସ୍ଥ୍ୟ ସେବା :

ଓଡ଼ିଶାର ସମସ୍ତ ଜନସାଧାରଣ ସ୍ୱାସ୍ଥ୍ୟ ସେବା ସୁବିଧା ପାଉନାହାନ୍ତି। ୧୯୮୭ ବର୍ଷର ଅଟକଳ ଅନୁସାରେ ଆମ ରାଜ୍ୟରେ ପ୍ରତି ହଜାରେ ଲୋକସଂଖ୍ୟାରେ ବାର୍ଷିକ ୧୩·୧ ମୃତ୍ୟୁ ଓ ୧୨୬ ଶିଶୁ ମୃତ୍ୟୁ ହେଉଛି। ଏହା ସର୍ବଭାରତୀୟ ସ୍ତରରେ ଯଥାକ୍ରମେ ୧୦·୯ ଓ ୯୫। ପୁଣି ସର୍ବଭାରତୀୟ ସ୍ତରରେ ପ୍ରତି ଏକ ଲକ୍ଷ ଲୋକଙ୍କ ପାଇଁ ୮୯ଟି ହସ୍‌ପିଟାଲ୍ ଶଯ୍ୟା ଥିବା ସ୍ଥଳେ ଓଡ଼ିଶାରେ ଏହାର ସଂଖ୍ୟା ହେଉଛି ୫୩। ସପ୍ତମ ପଞ୍ଚ ବାର୍ଷିକ ଯୋଜନାର ପ୍ରଥମ ଚାରି ବର୍ଷ ମଧ୍ୟରେ ଚିକିତ୍ସା ଅନୁଷ୍ଠାନ ସଂଖ୍ୟା ୨୩·୨ ହାରରେ ବୃଦ୍ଧି ପାଇଅଛି। ୧୯୮୯–୯୦ ସୁଦ୍ଧା ମୁଣ୍ଡପିଛା ଚିକିତ୍ସା ବାବଦରେ ଖର୍ଚ୍ଚ ୩୬·୨୪ ଟଙ୍କା ଥିଲା ଯାହାକି ଅନ୍ୟାନ୍ୟ ରାଜ୍ୟ ତୁଳନାରେ କମ୍। ସୁଷମ ପୁଷ୍ଟିକର ଖାଦ୍ୟ ଯୋଗାଣ କାର୍ଯ୍ୟକ୍ରମରେ ୧୯୮୯–୯୦ ବର୍ଷ ସୁଦ୍ଧା ୧୮·୨ ଲକ୍ଷ ଶିଶୁଙ୍କୁ ଅନ୍ତର୍ଭୁକ୍ତ କରାଯାଇଛି ଏବଂ ଏହା ମୋଟ ଧାର୍ଯ୍ୟ ଲକ୍ଷ୍ୟ ୨୨·୩ ଲକ୍ଷ ଶିଶୁ ସଂଖ୍ୟାରେ ଶତକଡ଼ା ୮୧·୬ ଭାଗ। ଗ୍ରାମାଞ୍ଚଳରେ ଅଧିକ ସ୍ୱାସ୍ଥ୍ୟ ସେବା ଯୋଗାଇ ଦେବା ହେଉଛି ଅଷ୍ଟମ ଯୋଜନାର ଆଭିମୁଖ୍ୟ। ଏହି ସମୟ ମଧ୍ୟରେ ୨୬୦ ଗୋଟି ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର, ୧୨୫ କମ୍ୟୁନିଟି ସ୍ୱାସ୍ଥ୍ୟ କେନ୍ଦ୍ର, ୧୮୦ ଆୟୁର୍ବେଦିକ ଓ ୧୮୦ ହୋମିଓପ୍ୟାଥିକ୍ ଚିକିତ୍ସାଳୟ ସ୍ଥାପନ କରାଯିବ।

## ସଡ଼କ ଓ ଗମନାଗମନ :

ରାଜ୍ୟରେ ସାମାଜିକ ଅର୍ଥନୈତିକ ବିକାଶ ନିମନ୍ତେ ଗମନାଗମନ ବ୍ୟବସ୍ଥା ଅତ୍ୟାବଶ୍ୟକ। ସପ୍ତମ ଯୋଜନା ପର୍ଯ୍ୟନ୍ତ ମଧ୍ୟ ଓଡ଼ିଶା ରେଳପଥ ଓ ସଡ଼କ ନିର୍ମାଣରେ ପଛୁଆ ରାଜ୍ୟ ଥିଲା। ସର୍ବଭାରତୀୟ ସ୍ତରରେ ପ୍ରତି ୧,୦୦୦ ବର୍ଗ କିଲୋମିଟରରେ ୧୮·୩ କିଲୋମିଟର ରେଳପଥ ଥିବାବେଳେ ଓଡ଼ିଶାରେ ଏହା ମାତ୍ର ୧୨·୭୩ କିଲୋମିଟର ଅଛି। ସେହିଭଳି ୧୯୮୮–୮୯ ବର୍ଷରେ ରାଜ୍ୟରେ ମୋଟ ସଡ଼କ ପଥ ୩୦,୬୩୮ କିଲୋମିଟର ଯାହାକି ରାଜ୍ୟର ପ୍ରତି ଏକ ଲକ୍ଷ ଲୋକଙ୍କ ପାଇଁ ଏହା ୧୦୨·୧୬ କିଲୋମିଟର। ସପ୍ତମ ପଞ୍ଚ ବାର୍ଷିକ ଯୋଜନାର ପ୍ରଥମ ଚାରି ବର୍ଷ ମଧ୍ୟରେ ୧,୫୦୦ ଓ ତଦୁର୍ଦ୍ଧ୍ୱ ଲୋକସଂଖ୍ୟା ବିଶିଷ୍ଟ ୧୧୫ ଗ୍ରାମ, ୧,୦୦୦ ଏବଂ ୧,୫୦୦ ମଧ୍ୟରେ ଲୋକସଂଖ୍ୟା ବିଶିଷ୍ଟ ୧୩୭ ଗ୍ରାମକୁ ଯାତାୟାତ ସୁବିଧା ଯୋଗାଇ ଦିଆଯାଇଛି। ୧୯୮୯–୯୦ ବର୍ଷରେ ଗମନାଗମନ ସେକ୍ଟରରେ ମୁଣ୍ଡପିଛା ଖର୍ଚ୍ଚ ଶତକଡ଼ା ୨୬·୫୮ ଭାଗ। ସେହି ବର୍ଷ ମଧ୍ୟରେ ପରିବହନ ସେକ୍ଟରରେ ବ୍ୟୟ ବରାଦ ମୋଟ ଯୋଜନା ଅଟକଳର ଶତକଡ଼ା ପ୍ରାୟ ୫·୮ ଭାଗ। ଅଷ୍ଟମ ଯୋଜନା କାଳରେ ୧୬୫ ଅସମାପ୍ତ ପ୍ରକଳ୍ପ ଅଗ୍ରାଧିକାର ଭିତ୍ତିରେ ସମାପ୍ତ କରାଯିବ। ଏତଦ୍‌ବ୍ୟତୀତ ଗୁରୁତ୍ୱପୂର୍ଣ୍ଣ ପୋଲ ସମେତ ପୁରାତନ ଦୁର୍ବଳ ଓ ଭଗ୍ନ ଅବସ୍ଥାରେ ଥିବା ପୋଲଗୁଡ଼ିକର ପୁନଃନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯିବ। ଚାଲୁ ରହିଥିବା ଓ ନୂତନ ପ୍ରକଳ୍ପମାନ ଅଗ୍ରାଧିକାର ଭିତ୍ତିରେ ମଧ୍ୟ ସମ୍ପୂର୍ଣ୍ଣ କରାଯିବ। ସବ୍‌ଡିଭିଜନ୍ ଓ ବ୍ଲକ୍ ସଦର ମହକୁମାକୁ ସବୁଦିନିଆ ସଂଯୋଗ ରାସ୍ତା ଅଗ୍ରାଧିକାର ଭିତ୍ତିରେ ନିର୍ମାଣ କରାଯିବ। ଅଷ୍ଟମ ଯୋଜନା ପ୍ରସ୍ତୁତ କରିବା ସମୟରେ ନିମ୍ନଲିଖିତ ବିଷୟଗୁଡ଼ିକ ପ୍ରତି ଅଧିକ ଗୁରୁତ୍ୱ ପ୍ରଦାନ କରାଯାଇଅଛି :

(କ) ୧୩୮ ପୋଲ ସମ୍ପୂର୍ଣ୍ଣ କରିବା।

(ଖ) ରାସ୍ତା ସବୁକୁ ଅଧିକା ଓସାରିଆ ଓ ଉନ୍ନତ କରିବା।

(ଗ) ୧,୪୧୫ କିଲୋମିଟର ମେଟାଲ୍ ବିଛେଇବା।

(ଘ) ୧,୪୧୫ କିଲୋମିଟର ପିଚୁ କରିବା ଏବଂ

(ଙ) ୨୫୨ଟି ରାସ୍ତା ପ୍ରକଳ୍ପ ମଧ୍ୟରୁ ଏସିଆ ଉନ୍ନୟନ ବ୍ୟାଙ୍କ୍ ସହାୟତାରେ ନିର୍ମିତ ହେବାକୁ ଥିବା ରାସ୍ତା ବ୍ୟତୀତ ଅନ୍ୟ ସମସ୍ତ ରାସ୍ତା ପ୍ରକଳ୍ପକୁ ସମ୍ପୂର୍ଣ୍ଣ କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି।

## ଯୋଜନା ଆଭିମୁଖ୍ୟ :

ଉପରୋକ୍ତ ଆର୍ଥିକ ପୃଷ୍ଠଭୂମିରେ ଆମ ରାଜ୍ୟକୁ ଜାତୀୟ ସ୍ତରରେ ପହଞ୍ଚାଇବାକୁ ହେଲେ ପର୍ଯ୍ୟାପ୍ତ ଅର୍ଥ ଆବଶ୍ୟକ। ୧୯୮୦–୮୧ ମୂଲ୍ୟ ସୂଚୀ ଅନୁଯାୟୀ ସପ୍ତମ ଯୋଜନା ଶେଷ ଭାଗରେ ରାଜ୍ୟ ମୁଣ୍ଡପିଛା ଆୟ ୧,୪୫୫ ଟଙ୍କା ଥିବା ସ୍ଥଳେ ସର୍ବ ଭାରତୀୟ ସ୍ତରରେ ମୁଣ୍ଡପିଛା ଆୟ ୧,୯୧୦ ଟଙ୍କା ରହିଛି। ଅଷ୍ଟମ ଯୋଜନାର ଶେଷ ସୁଦ୍ଧା ଏହି ପାର୍ଥକ୍ୟର ଶତକଡ଼ା ୩୩·୩୩ ଭାଗ ପୂରଣ କରିବାକୁ ହେଲେ ୧୧,୦୦୦ କୋଟି ଟଙ୍କା ବିନିଯୋଗ କରିବାକୁ ପଡ଼ିବ। ଅର୍ଥନୀତିର ଅଭିବୃଦ୍ଧି ବାର୍ଷିକ ଶତକଡ଼ା ୨ ଭାଗ ହାରରେ ରଖିବାକୁ ହେବ। ଶକ୍ତି ଉପଦେଷ୍ଟା ପରିଷଦ (୧୯୮୫)ର ରିପୋର୍ଟ ଅନୁସାରେ ବିଦ୍ୟୁତ୍ ଶକ୍ତିର ବାର୍ଷିକ ଅଭିବୃଦ୍ଧି ଶତକଡ଼ା ୧୬ ହାରରେ କରିବାକୁ ହେବ। ଅଷ୍ଟମ

ଯୋଜନାରେ ଶକ୍ତିର ଚାହିଦା ପୂରଣ କରିବାକୁ ଆମକୁ ୨,୦୦୦ ମେଗାୱାଟ୍ ଶକ୍ତି ସଂସ୍ଥାପନ କରିବାକୁ ପଡ଼ିବ ଏବଂ ନବମ ଯୋଜନାରେ ଆଉ ଅଧିକ ୪,୯୦୦ ମେଗାୱାଟ୍ । ଏଥିପାଇଁ ଅଷ୍ଟମ ଯୋଜନାରେ ଅନ୍ତତଃପକ୍ଷେ ୬,୦୦୦ କୋଟି ଟଙ୍କା ପୁଞ୍ଜି ଆବଶ୍ୟକ କିନ୍ତୁ ସମ୍ବଳ ଅଭାବରୁ ଏହି ଯୋଜନାରେ ପ୍ରାୟ ୩,୦୦୦ କୋଟି ଟଙ୍କା ବିନିଯୋଗ କରାଯିବ । ଏହି କାରଣରୁ ରାଜ୍ୟର ଅର୍ଥନୈତିକ ଅବସ୍ଥାର ଉନ୍ନତି ପାଇଁ ପୁଞ୍ଜି ବିନିମୟର ଆବଶ୍ୟକତା ଥିବାରୁ ଆମ ରାଜ୍ୟ ଜାତୀୟ ସ୍ତରର ଚିନ୍ତାଧାରା ଓ ଜାତୀୟ ଉନ୍ନୟନ ପରିଷଦ ଦ୍ୱାରା ଅନୁମୋଦିତ ନୀତି ଓ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିବାକୁ ପଡ଼ିବ । ସେଥିପାଇଁ ଗ୍ରାମ୍ୟ ଉନ୍ନୟନ କ୍ଷେତ୍ରରେ ଅନ୍ୟୁନ ଶତକଡ଼ା ୬୦ ଭାଗ ପୁଞ୍ଜି ବ୍ୟବସ୍ଥା କରାଯାଇଛି । ଅଷ୍ଟମ ଯୋଜନାରେ ଶ୍ରମିକମାନଙ୍କୁ ନିଯୋଜନ ନିମନ୍ତେ ଏବଂ ଦରିଦ୍ରମାନଙ୍କର ଜୀବନ ଧାରଣର ମାନଦଣ୍ଡର ଅଭିବୃଦ୍ଧି ପାଇଁ ଅଧିକ ଗୁରୁତ୍ୱ ଦିଆଯାଇଛି ।

---

ରାଷ୍ଟ୍ରମନ୍ତ୍ରୀ,
ଯୋଜନା ଓ ସମନ୍ୱୟ,
ଓଡ଼ିଶା, ଭୁବନେଶ୍ୱର ।



ଏସିଆଡ୍ ବିଡ଼ିଂ କ୍ରୀଡ଼ା ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିଥିବା ପ୍ରଗତି ମିଶ୍ରଙ୍କୁ ପର୍ଯ୍ୟଟନ, କ୍ରୀଡ଼ା, ସଂସ୍କୃତି ଓ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ପଚିଶ ହଜାର ଟଙ୍କାର ଏକ ଚେକ୍ ପ୍ରଦାନ କରୁଛନ୍ତି ।

# ଶିକ୍ଷିତ ବେକାରୀ ଦୂରୀକରଣରେ ଓପୋଲୋଫେଡ୍‌ର ଭୂମିକା



ଶ୍ରୀ ସୂର୍ଯ୍ୟନାରାୟଣ ପାଣ୍ଡି

ଭାରତ ଓ ତାହାର ପାର୍ଶ୍ୱବର୍ତ୍ତୀ ଦେଶମାନେ କୁକୁଡ଼ାମାନଙ୍କର ଗୃହ ଭାବରେ ବହୁ ପ୍ରାଚୀନ କାଳରୁ ସୁପରିଚିତ। ଗୋଲସ୍ ଗେଲସ୍ (Gollus Gallus) ନାମକ ଏକ ଜାତୀୟ ଜଙ୍ଗଲ ନାଲି କୁକୁଡ଼ା ବହୁ ପ୍ରାଚୀନ କାଳରୁ ଆମ ଦେଶରେ ଦେଖିବାକୁ ମିଳନ୍ତି। ଓଡ଼ିଶା ଓ ଆନ୍ଧ୍ରର ସୀମାନ୍ତ "ଅସିଲ୍" କୁକୁଡ଼ା କୁହାଯାଏ।

ତେଣୁ କୁକୁଡ଼ା ପାଳନ ଆମ ରାଜ୍ୟରେ କିଛି ନୂଆ ନୁହେଁ। ଏହାକୁ ବହୁକାଳ ହେଲା ଲୋକମାନେ "ଘରବାଡ଼ିର ଚାଷ" (Back yard farming) ଭାବରେ ଗ୍ରହଣ କରିଆସିଛନ୍ତି। ପ୍ରତିଦିନ ଗୋଟିଏ ଅଣ୍ଡା ଅର୍ଥାତ୍ ସୁଲଭ ପ୍ରାପ୍ତ ପ୍ରାଣୀଜ ପ୍ରୋଟିନ ନିଜର ପିଲାମାନଙ୍କୁ ଖୁଆଇବା ବୋଧହୁଏ ହେଉଛି ଏହାର ଉଦ୍ଦେଶ୍ୟ। କଥାରେ ଅଛି :

"An egg a day, keep the Doctor away".

"ଦିନକୁ ଗୋଟିଏ ଅଣ୍ଡା,
ଡାକ୍ତର ବଇଦ ଦୂର ହୋଇଯିବେ,
ରୋଗ ହୋଇଯିବ ଅଣ୍ଡା।"

ମାତ୍ର ବ୍ୟବସାୟିକ ଭିତ୍ତିରେ କୁକୁଡ଼ା ପାଳନ କାର୍ଯ୍ୟକ୍ରମ ଗତ ତିନି ଦଶନ୍ଧି ହେଲା ଆରମ୍ଭ ହୋଇଛି। ୧୯୬୦ ମସିହାରେ ଭାରତରେ ପ୍ରଥମେ ଆମ ଓଡ଼ିଶା ପ୍ରଦେଶରେ ସଘନ କୁକୁଡ଼ା ପାଳନ କାର୍ଯ୍ୟକ୍ରମ "ଗଭୀର ଖତ ପ୍ରଣାଳୀ" ବାDeep litter systemରେ ଆରମ୍ଭ କରାଯାଇଥିଲା। ଏଥିପାଇଁ ଧଳା ଲେଗ୍‌ହର୍ଣ୍ଣ କୁକୁଡ଼ା ଓ ଲାଲ ରୋଡ଼ଆଇଲାଣ୍ଡ କୁକୁଡ଼ାକୁ ବଛାଯାଇ ରଖାଯାଇଥିଲା। ଏମାନଙ୍କର ଅଣ୍ଡା ଦେବା ଶକ୍ତି ଆମ ଦେଶୀ କୁକୁଡ଼ାଙ୍କ ଅପେକ୍ଷା ଅଢ଼େଇ ଗୁଣରୁ ତିନି ଗୁଣ ଅଧିକ ଥିବାରୁ ଓ ଏମାନେ ୬ ମାସ ବୟସ ବେଳକୁ ଅଣ୍ଡା ଦେବା ଆରମ୍ଭ କରୁଥିବାରୁ ଏମାନେ ଶୀଘ୍ର ଲୋକପ୍ରିୟତା ଅର୍ଜନ କରିପାରିଥିଲେ। ଏହାଛଡ଼ା ଗଭୀର ଖତ ପ୍ରଣାଳୀରେ ପାଳନ କରାଯାଉଥିବାରୁ କୃଷୀର ବିଲ ପାଇଁ ଏହି ଖତ ଜୈବିକ ସାର ରୂପେ ମଧ୍ୟ ବ୍ୟବହୃତ ହୋଇପାରୁଛି। ଅଧୁନା ଏହି ପ୍ରଣାଳୀରେ ଉନ୍ନତ କୁକୁଡ଼ା ପାଳନ ଓ ପଞ୍ଜୁରୀ ପ୍ରଣାଳୀରେ କୁକୁଡ଼ା ପାଳନ ଏକ ସାଧାରଣ ଘଟଣାରେ ପରିଣତ ହୋଇପାରିଛି।

ଆହୁରି ମଧ୍ୟ ଗତ ଏକ ଦଶନ୍ଧି ହେଲା ସହରମାନଙ୍କରେ ତଥା ଶିଳ୍ପାଞ୍ଚଳମାନଙ୍କରେ ରନ୍ଧନୋପଯୋଗୀ ବ୍ରଏଲର ଜାତୀୟ କୁକୁଡ଼ା ପାଳନ କ୍ରମେ ପ୍ରସିଦ୍ଧି ଲାଭ କରୁଛି। ଏହି ଜାତୀୟ କୁକୁଡ଼ାମାନେ ଖୁବ୍ ଶୀଘ୍ର ବଢ଼ି ଦୁଇମାସ ମଧ୍ୟରେ ଖାଦ୍ୟ ଉପଯୋଗୀ ହୋଇପାରୁଛନ୍ତି। ଏହାଦ୍ୱାରା ଚାଷୀ ଶୀଘ୍ର ବ୍ରଏଲର କୁକୁଡ଼ା ପାଳନ ଜନିତ ଅର୍ଥ ଓ ଲାଭାଂଶ ପାଇପାରୁଛନ୍ତି।

ରାଜ୍ୟର କୁକୁଡ଼ାପାଳକମାନଙ୍କୁ ସଙ୍ଘବଦ୍ଧ କରି ଏହି ଶିଳ୍ପର ବିକାଶ, ପ୍ରଗତି ତଥା ଅଭିବୃଦ୍ଧି କରାଇବା ଉଦ୍ଦେଶ୍ୟରେ ଆମ ରାଜ୍ୟରେ ୧୯୭୬ ମସିହାରେ ଓପୋଲୋଫେଡ୍ ବା ଓଡ଼ିଶା କୁକ୍କୁଟ ଉତ୍ପାଦକ ସମବାୟ ମହାସଂଘ ନାମରେ ଏକ ଶୀର୍ଷ ଅନୁଷ୍ଠାନ ଗଠନ କରାଗଲା। ଏହି ମହାସଂଘ କୁକୁଡ଼ାପାଳକମାନଙ୍କର ଉତ୍ପାଦିତ ଦ୍ରବ୍ୟର ବିକ୍ରି ବ୍ୟବସ୍ଥା ଗ୍ରହଣ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ସୁବିଧାରେ କୁକୁଡ଼ା ଛିଆଁ ଓ କୁକୁଡ଼ା ଖାଦ୍ୟ ମଧ୍ୟ ଯୋଗାଉଛନ୍ତି। କୁକୁଡ଼ାପାଳକମାନଙ୍କୁ ବୈଷୟିକ ପରାମର୍ଶ ଦେବା ମଧ୍ୟ ଏହି ମହାସଂଘର ଅନ୍ୟତମ ଲକ୍ଷ୍ୟ। ଏହି ଲକ୍ଷ୍ୟ ଓ ଉଦ୍ଦେଶ୍ୟ ହାସଲ ନିମନ୍ତେ କୁକ୍କୁଟ ସମବାୟ ସମିତିମାନ ଗଠନ କରାଯାଇଛି ଓ କରାଯାଉଛି ମଧ୍ୟ। ୨୦ ଜଣ ସଭ୍ୟକୁ ନେଇ ଗୋଟିଏ ଲେଖାଏଁ କୁକୁଡ଼ା ପାଳକ ସମବାୟ ସମିତି ଗଠନ କରାଯାଉଛି ଓ ଏହାକୁ ମହାସଂଘର ସଭ୍ୟଭୁକ୍ତ ହେଉଛନ୍ତି।

ଏହି ମହାସଂଘ କର୍ମସଂସ୍ଥାନ ସୃଷ୍ଟି ପାଇଁ ମଧ୍ୟ କେତେକ କାର୍ଯ୍ୟକ୍ରମ ହାତକୁ ନେବାର ପ୍ରସ୍ତାବ ରଖିଛି। ସେଗୁଡ଼ିକ ହେଲା :

## (୧) ଶିକ୍ଷିତ ବେକାରମାନଙ୍କର କର୍ମସଂସ୍ଥାନ କାର୍ଯ୍ୟକ୍ରମ :

ସର୍ବନିମ୍ନ ମେଟ୍ରିକ ପାଶ୍ କରିଥିବା ୧୮ବର୍ଷ ବୟସରୁ ଉର୍ଦ୍ଧ୍ୱ ହୋଇଥିବା ଯେ କୌଣସି ଯୁବକ ବା ଯୁବତୀ ଏହି କାର୍ଯ୍ୟକ୍ରମରେ

ଅଂଶ ଗ୍ରହଣ କରିପାରିବେ । ଆଗ୍ରହୀ ଯୁବକ ବା ଯୁବତୀମାନଙ୍କୁ ୧,୦୦୦ ଓ ୫,୦୦୦ କୁକୁଡ଼ାର ଫାର୍ମ କରିବା ପାଇଁ ଯଥାକ୍ରମେ ୨୦,୮୩୦ ଟଙ୍କା ଓ ୨୪,୫୬୦ ଟଙ୍କା ସରଳ ଋଣ ଆକାରରେ ମହାସଂଘ ତରଫରୁ ଦିଆଯିବ । ପୁଞ୍ଜିଭୂତ ଭାବରେ ଅନ୍ତତଃ ୩୫,୦୦୦ କୁକୁଡ଼ା ପାଳିବା ପାଇଁ ଆଗ୍ରହୀ ଯୁବକମାନେ ବାହାରିଲେ ସେମାନଙ୍କୁ ମହାସଂଘ ତରଫରୁ ସୁବିଧା ସୁଯୋଗ ଯୋଗାଇ ଦିଆଯିବା ସଙ୍ଗେ ସଙ୍ଗେ, ଉତ୍ପାଦିତ ଦ୍ରବ୍ୟର ବିକ୍ରି ବ୍ୟବସ୍ଥା ମଧ୍ୟ ମହାସଂଘ ଗ୍ରହଣ କରିବେ ।

## (୨) ହରିଜନ ଓ ଆଦିବାସୀମାନଙ୍କ ପାଇଁ ପାଞ୍ଚଶହଟି ଅଣ୍ଡାଦିଆ କୁକୁଡ଼ା ୟୁନିଟ୍ ପାଳନ ପୁଞ୍ଜି :

ଏହି କାର୍ଯ୍ୟକ୍ରମ ଅନୁସାରେ ହରିଜନ ଓ ଆଦିବାସୀ ଶ୍ରେଣୀର ଆଗ୍ରହୀ କୁକୁଡ଼ାପାଳକମାନେ ପ୍ରତ୍ୟେକ ୫୦୦ ସଂଖ୍ୟାରେ ଅଣ୍ଡାଦିଆ କୁକୁଡ଼ା ଫାର୍ମ ପୁଞ୍ଜିଭୂତ ଭାବରେ କରିବାକୁ ମହାସଂଘ ତରଫରୁ ପ୍ରୋତ୍ସାହନ ଦିଆଯିବ । ପ୍ରତ୍ୟେକ ପୁଞ୍ଜିରେ ୧୦୦ କିମ୍ବା ତଦୂର୍ଦ୍ଧ୍ୱ ଏକକ ରହିବ । ଏହି ଯୋଜନା ପାଇଁ ହରିଜନ ଆଦିବାସୀ ଉନ୍ନୟନ ଅର୍ଥ ସେବା ସମବାୟ ନିଗମ ସଂସ୍ଥା ମୂଳ ଜମା ଦେବେ । ସରକାରଙ୍କ ନିୟମାନୁସାରେ ସେମାନେ ମଧ୍ୟ ରିହାତି ପାଇବେ । ମହାସଂଘ ତରଫରୁ ସମସ୍ତ ଦାୟିତ୍ୱ ବହନ କରାଯିବ । ଏମାନେ ମଧ୍ୟ ପ୍ରାଥମିକ ସମବାୟ ସମିତି ଗଠନ କରି ମହାସଂଘର ସଭ୍ୟଶ୍ରେଣୀ ଭୁକ୍ତ ହେବେ ।

## (୩) ଶିକ୍ଷିତ ସହରୀ ବେକାରମାନଙ୍କର କର୍ମସଂସ୍ଥାନ କାର୍ଯ୍ୟକ୍ରମ :

ଏହି କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିବାକୁ ଆଗ୍ରହୀ କୁକୁଡ଼ାପାଳକମାନଙ୍କର ସର୍ବନିମ୍ନ ଶିକ୍ଷାଗତ ଯୋଗ୍ୟତା ମେଟ୍ରିକ୍ ପାଶ୍ ଓ ସର୍ବନିମ୍ନ ବୟସ ୧୮ ବର୍ଷ ହୋଇଥିବା ଦରକାର । ଏମାନେ ମହାସଂଘ ଦ୍ୱାରା ସ୍ୱୀକୃତି ପ୍ରାପ୍ତ ବିକ୍ରୟ କେନ୍ଦ୍ର ଖୋଲି ସେଥିରେ କୁକୁଡ଼ା ମାଂସ, ଅଣ୍ଡା ଓ ଅନ୍ୟାନ୍ୟ କୁକୁଡ଼ା ଜାତ ଦ୍ରବ୍ୟର ବିକ୍ରୟ କରିପାରିବେ । ମ୍ୟୁନିସିପାଲିଟି ବା ଏନ୍: ଏ: ସି:ମାନେ ମହାସଂଘର ସ୍ୱୀକୃତିପ୍ରାପ୍ତ ବିକ୍ରୟ କେନ୍ଦ୍ର ଖୋଲିବା ପାଇଁ ଜମି ଆବଣ୍ଟନ କରିବେ । ପ୍ରତ୍ୟେକ ବିକ୍ରୟ କେନ୍ଦ୍ର ପାଇଁ ବ୍ୟବସାୟିକ ବ୍ୟାଙ୍କମାନଙ୍କରୁ ଋଣ ଯୋଗାଣର ବ୍ୟବସ୍ଥା କରି ଗୋଟିଏ ଲେଖାଏଁ ଶୀତଳୀକରଣ ଯନ୍ତ୍ର ((Deep freezer) ମହାସଂଘ ଯୋଗାଇ ଦେବ । ଉଦ୍ୟୋଗୀମାନେ କେବଳ ମୂଳଜମା ଓ ମାନୀ ବ୍ୟାଙ୍କର ନିୟମ ଅନୁସାରେ ଜମା ଦେଇଥାନ୍ତି । ଉଦ୍ୟୋଗୀମାନେ ମଧ୍ୟ ମହାସଂଘର ନିୟମ ଅନୁସାରେ ୨,୦୦୦ ଟଙ୍କା ସିକ୍ୟୁରିଟି ଜମା ମହାସଂଘରେ ପଇଠ କରିଥାନ୍ତି । ସେମାନେ ନିର୍ଦ୍ଧାରିତ ବ୍ୟାଙ୍କରେ ଏକ ଦିନ ପୂର୍ବରୁ ଟଙ୍କା ଜମା ଦେଇ ଆବଶ୍ୟକୀୟ ଅଣ୍ଡା ଓ କୁକୁଡ଼ା ମାଂସ ସେମାନଙ୍କର ବିକ୍ରୟ କେନ୍ଦ୍ରଠାରେ ପାଇପାରିବେ ।

କୁକୁଡ଼ା ପାଳନ ମାଧ୍ୟମରେ ଶିକ୍ଷିତ ବେକାରମାନେ ଯେ କର୍ମ ସଂସ୍ଥାନ କରିପାରିବେ, ଏଥିରେ ଆଦୌ ସନ୍ଦେହ ନାହିଁ ।

---

ରାଷ୍ଟ୍ରମନ୍ତ୍ରୀ, ମତ୍ସ୍ୟ ଓ ପଶୁପାଳନ
ବିଭାଗ, ଓଡ଼ିଶା, ଭୁବନେଶ୍ୱର ।



ରାଜ୍ୟର ବାର୍ଷିକ ପରିଦର୍ଶନ କରିବାକୁ ଆସିଥିବା ମାଇକେଲ୍ ବହଟକସ୍ ନେତୃତ୍ୱରେ ଓ୍ୱାର୍ଲଡ ବ୍ୟାଙ୍କ୍ ଟିମ୍ ମୁଖ୍ୟ ଶାସନ ସଚିବ ଓ ଅନ୍ୟାନ୍ୟ ସଚିବମାନଙ୍କ ସହିତ ଆଲୋଚନା କରୁଛନ୍ତି ।

# "ସ୍ୱତନ୍ତ୍ର" ଓ "ସାଧାରଣତନ୍ତ୍ର"

ଡଃ ତନ୍ଦ୍ରା ପଟ୍ଟନାୟକ

ମନୁଷ୍ୟ ଇତିହାସରେ 'ସ୍ୱତନ୍ତ୍ର', 'ଗଣତନ୍ତ୍ର', 'ସ୍ୱାଧୀନତା', 'ସାଧାରଣତନ୍ତ୍ର' ପ୍ରଭୃତି ଆଦର୍ଶ ସର୍ବଦା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ଆସିଛି । ଏହି ଆଦର୍ଶଗୁଡ଼ିକୁ ସାକାର କରିବା ପାଇଁ ଯୁଗେ ଯୁଗେ ମନୁଷ୍ୟ ସଂଗ୍ରାମ କରିଛି । କାରଣ ଏହି ପ୍ରତ୍ୟୟଗୁଡ଼ିକ ମାଧ୍ୟମରେ ମାନବର ଆଶା, ଆକାଙ୍କ୍ଷା, ଆଦର୍ଶବୋଧ ଓ ମନୁଷ୍ୟତ୍ୱବୋଧ ପ୍ରତିଫଳିତ ହୁଏ । ତେଣୁ ଯେଉଁଠାରେ ଏହି ପ୍ରକାର ମାନବିକ–ଆଦର୍ଶବୋଧର କଣ୍ଠରୋଧ କରାଯାଇଛି ସେଠାରେ ଦେଖାଦେଇଛି ବିପ୍ଳବ, ରକ୍ତପାତ ଓ ସଂଗ୍ରାମ । ଭାରତର ସ୍ୱତନ୍ତ୍ରତା ସଂଗ୍ରାମ ଏହାର ଏକ ଉଜ୍ଜ୍ୱଳ ନିଦର୍ଶନ । କାଳକ୍ରମେ ଆମେ ଆମର ଚିର ଆକାଙ୍କ୍ଷିତ ସ୍ୱାତନ୍ତ୍ର୍ୟ, ଗଣତନ୍ତ୍ର ଓ ଗଣତନ୍ତ୍ର ପ୍ରତିଷ୍ଠାର ସ୍ୱପ୍ନକୁ ସାକାର କରିଛୁ । କିନ୍ତୁ ଏହି ସାଫଲ୍ୟର ପ୍ରାୟ ୫୦ ବର୍ଷ ପରେ ଏହି ଆଦର୍ଶଗୁଡ଼ିକ ପ୍ରତି ଆମର ପ୍ରାକ୍‌ସ୍ୱାଧୀନତା କାଳର ଆବେଗ ଲୁପ୍ତ ପ୍ରାୟ । ତଥାପି ଆମେ ଏହି ଆଦର୍ଶମାନଙ୍କୁ ସମ୍ପୂର୍ଣ୍ଣ ରୂପେ ଶୁଦ୍ଧ ଓ ତାତ୍ତ୍ୱିକ ବୋଲି କହି ପାରିବା କି ? ବର୍ତ୍ତମାନ ସମୟର ସାମାଜିକ ଓ ରାଜନୈତିକ ପରିସ୍ଥିତିରେ 'ସ୍ୱାତନ୍ତ୍ର୍ୟ', 'ଗଣତନ୍ତ୍ର' ଓ 'ସାଧାରଣତନ୍ତ୍ର' ପ୍ରଭୃତି ଆଦର୍ଶ କି ପ୍ରକାର ମୂଲ୍ୟ ବହନ କରନ୍ତି ତାହାର ଏକ ସମୀକ୍ଷାତ୍ମକ ବିଚାର କରିବା ଏହି ପ୍ରବନ୍ଧର ମୂଳ ଲକ୍ଷ୍ୟ ।

ଉପରୋକ୍ତ ପ୍ରଶ୍ନର ଏକ ନିରପେକ୍ଷ ବିଚାର କରିବା ପୂର୍ବରୁ ପ୍ରଥମେ ଆମକୁ ଜାଣିବାକୁ ହେବ ଯେ ସ୍ୱତନ୍ତ୍ର ଓ ସାଧାରଣତନ୍ତ୍ର କହିଲେ ଆମେ କ'ଣ ବୁଝୁ ଏବଂ ଏସବୁ ପ୍ରତ୍ୟୟର ପରିସୀମା କେତେ ବ୍ୟାପକ । ଅଭିଧାନିକ ଅର୍ଥରେ 'ତନ୍ତ୍ର' ଶବ୍ଦଟି 'ତନ୍' ଧାତୁରୁ ନିଷ୍ପନ୍ନ ଓ ଏହାର ଅର୍ଥ ହେଉଛି 'ଯାହା ପରିବ୍ୟାପ୍ତ' । ଏହି ଦୃଷ୍ଟିରେ ବିଚାର କରିଲେ 'ସ୍ୱତନ୍ତ୍ର'ର ଅର୍ଥ ହେଉଛି 'ସ୍ୱ'ର ପରିବ୍ୟାପ୍ତି । ସେହିପରି 'ସାଧାରଣତନ୍ତ୍ର' ଓ 'ଗଣତନ୍ତ୍ର'ର ଅର୍ଥ ହେଉଛି ସାଧାରଣ ମନୁଷ୍ୟ ଓ ଗଣର ଇଚ୍ଛା ବା ସଙ୍କଳ୍ପର ପରିବ୍ୟାପ୍ତି । କିନ୍ତୁ ଏହି ଶବ୍ଦମାନଙ୍କର ଆକ୍ଷରିକ ଅର୍ଥ ସୀମିତ ଓ ସରଳ ହେଲେ ମଧ୍ୟ ଏମାନଙ୍କର ପ୍ରୟୋଗର ସୀମା ବ୍ୟାପକ ଓ ଜଟିଳ ।

## 'ସ୍ୱତନ୍ତ୍ର' ଶବ୍ଦର ତାତ୍ପର୍ଯ୍ୟ :

'ସ୍ୱତନ୍ତ୍ର' ଶବ୍ଦଟି ଏକ ବହୁମୁଖୀ କଳ୍ପନାର ନାମ । ପ୍ରୟୋଗ କ୍ଷେତ୍ରରେ ଏହାର ମୁଖ୍ୟତଃ ଦୁଇଟି ଭିନ୍ନ ଦିଗ ଅଛି — (୧) ସାମୂହିକ ଓ (୨) ବ୍ୟକ୍ତିକେନ୍ଦ୍ରିକ । ଯେତେବେଳେ ସ୍ୱତନ୍ତ୍ର ଶବ୍ଦଟିକୁ ସାମୂହିକ ଅର୍ଥରେ ପ୍ରୟୋଗ କରାଯାଏ, ସେତେବେଳେ ଏହା ଦେଶ ବା ଜାତି ବା ସମାଜ ପ୍ରତି ପ୍ରଯୁଜ୍ୟ । ତେଣୁ ଯେଉଁ ଦେଶ ବା ସମାଜ ଏଥିରେ ବସବାସ କରୁଥିବା ନାଗରିକମାନଙ୍କର ସାମୂହିକ ସଙ୍କଳ୍ପ ବା ଇଚ୍ଛା ଦ୍ୱାରା ପରିଚାଳିତ ନ ହୋଇ କୌଣସି ବାହ୍ୟ ଶକ୍ତି ବା ନିର୍ଦ୍ଦିଷ୍ଟ ବ୍ୟକ୍ତିବିଶେଷର ଇଚ୍ଛା ଦ୍ୱାରା ପରିଚାଳିତ ତାହାକୁ ଆମେ ପରାଧୀନ ବୋଲି ଅଭିହିତ କରିଥାଉ । ଏହି ଦୃଷ୍ଟିରୁ ବିଚାର କଲେ ଭାରତର ସ୍ୱତନ୍ତ୍ରତା ସଂଗ୍ରାମ ପରାଧୀନତାର କବଳରୁ ମୁକ୍ତି ପାଇବା ନିମନ୍ତେ ଉଦ୍ଦିଷ୍ଟ ଥିଲା । ଭାରତୀୟମାନଙ୍କର ସାମୂହିକ ସ୍ୱାତନ୍ତ୍ର୍ୟ ହିଁ ଥିଲା ଏ ସଂଗ୍ରାମର କେନ୍ଦ୍ର ବିନ୍ଦୁ । ତାତ୍‌କାଳିକ ପରିପ୍ରେକ୍ଷୀରେ ତିଳକଙ୍କ 'ସ୍ୱରାଜ ଆମର ଜନ୍ମସିଦ୍ଧ ଅଧିକାର' — ଏହି ମନ୍ତ୍ର ହିଁ ଦେଶବାସୀଙ୍କୁ ସ୍ୱତନ୍ତ୍ରତା ସଂଗ୍ରାମରେ ଝାସ ଦେବା ପାଇଁ ଉଦ୍‌ବୁଦ୍ଧ କରିଥିଲା । ମହାତ୍ମା ଗାନ୍ଧୀ, ନେହେରୁ, ପଟେଲ ପ୍ରଭୃତି ମନୀଷୀମାନେ ଅହିଂସା ମାଧ୍ୟମରେ 'ସ୍ୱତନ୍ତ୍ରତା'ର ଆଦର୍ଶକୁ ସାକାର କରିବାର ପ୍ରୟାସ କରିଥିଲେ ଓ ଅନ୍ୟ ଦିଗରେ ଭଗତ୍ ସିଂ, ବାଘାଯତୀନ, ନେତାଜୀ ସୁଭାଷ ପ୍ରଭୃତି ବିପ୍ଳବର ପଥକୁ ବାଛି ନେଇଥିଲେ । କିନ୍ତୁ ଲକ୍ଷ୍ୟ ଥିଲା ତାଙ୍କର ଏକ ଭାରତର ସ୍ୱାତନ୍ତ୍ର୍ୟ । ଏ କ୍ଷେତ୍ରରେ 'ସ୍ୱତନ୍ତ୍ରତା'ର ମୁଖ୍ୟ ଦିଗଟି ଥିଲା ରାଜନୈତିକ । ରାଜନୈତିକ ଶାସନ କ୍ଷେତ୍ରରେ 'ସ୍ୱ'ରାଜ ବା ଦେଶର ସାମୂହିକ 'ସ୍ୱ'ତ୍ୱର ପ୍ରତିଷ୍ଠା । କିନ୍ତୁ ଏହି ରାଜନୈତିକ ରୂପ 'ସ୍ୱତନ୍ତ୍ର' ପ୍ରତ୍ୟୟର ଗୋଟିଏ ଦିଗ ମାତ୍ର । ଏହାର ଅନ୍ୟ ଦିଗ ସମ୍ବନ୍ଧରେ ଆମେ ପରେ ବିଚାର କରିବା ।

## 'ସାଧାରଣତନ୍ତ୍ର'ର ଅର୍ଥାନୁଶୀଳନ :

ବର୍ତ୍ତମାନ ଦେଖାଯାଉ 'ସାଧାରଣତନ୍ତ୍ର'ର ପ୍ରକୃତ ରୂପ କ'ଣ । ଏହି ଶବ୍ଦଟି ମୂଳତଃ ଏକ ରାଜନୀତି ସମ୍ପର୍କିତ ଆଦର୍ଶକୁ ବୁଝାଏ । ରାଜନୀତି ବିଜ୍ଞାନର ଦୃଷ୍ଟିକୋଣରୁ ଯଦି କୌଣସି ଦେଶର ଶାସନ ମୁଖ୍ୟ ଜନ୍ମଗତ ଭିତିରେ ବଛା ନ ଯାଇ ଜନସାଧାରଣଙ୍କ ଦ୍ୱାରା ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ମନୋନୀତ ହୁଅନ୍ତି ତେବେ ସେହି ଦେଶକୁ 'ସାଧାରଣତନ୍ତ୍ର' କୁହାଯାଏ । ଅନ୍ୟ ପକ୍ଷରେ

ଯେଉଁଠାରେ ଶାସନ ମୁଖ୍ୟ ଜନ୍ମଗତ ଭିତିରେ କ୍ଷମତା ଉପଭୋଗ କରନ୍ତି ତାହାକୁ 'ରାଜତନ୍ତ୍ର' କୁହାଯାଏ । କିନ୍ତୁ 'ରାଜତନ୍ତ୍ର' ଓ 'ସାଧାରଣତନ୍ତ୍ର' ବ୍ୟତୀତ 'ସୈନିକତନ୍ତ୍ର' ମଧ୍ୟ ବହୁ ଦେଶରେ ପ୍ରଚଳିତ ରହିଛି । ଏସବୁ ଦେଶରେ ଶାସନ ମୁଖ୍ୟ ଜନ୍ମଗତଭିତ୍ତି ବା ସାଧାରଣଙ୍କ ଦ୍ୱାରା ମନୋନୀତ ନ ହୋଇ ସେନା ଶକ୍ତି ବଳରେ ଶାସନ ମୁଖ୍ୟ ହୋଇଥାନ୍ତି । ଆମେ ସାଧାରଣତଃ 'ଗଣତନ୍ତ୍ର' ଓ 'ସାଧାରଣତନ୍ତ୍ର'କୁ ସମ ପର୍ଯ୍ୟାୟଭୁକ୍ତ କରିଥାଉ । କିନ୍ତୁ ଆମକୁ ମନେ ରଖିବାକୁ ହେବ ଯେ 'ଗଣତନ୍ତ୍ର' ଓ 'ସାଧାରଣତନ୍ତ୍ର'ର ବ୍ୟାପ୍ତି ସମାନ ନୁହେଁ ଯଥା: ଇଂଲାଣ୍ଡରେ ରାଜତନ୍ତ୍ର ପ୍ରଚଳି[illegible] ଥିଲେ ମଧ୍ୟ ସେଠାରେ ଗଣତନ୍ତ୍ର ବହୁକାଳରୁ ପ୍ରତିଷ୍ଠିତ । [illegible] କଥା ଚିନ୍ତା କରିବା ମଧ୍ୟ ଭୁଲ୍ ଯେ ଯେଉଁଠାରେ 'ସାଧାରଣତନ୍ତ୍ର' ପ୍ରତିଷ୍ଠିତ ସେଠାରେ ଗଣତାନ୍ତ୍ରିକ ମୂଲ୍ୟବୋଧର ଉପସ୍ଥିତି ଅନିବାର୍ଯ୍ୟ । ଉଦାହରଣ ସ୍ୱରୂପ, ଚୀନ୍ ଦେଶର ନାମରେ 'ସାଧାରଣତନ୍ତ୍ର' ଶବ୍ଦଟି ଯୋଗ କରାଯାଇଛି କିନ୍ତୁ ସେଠାରେ ଛାତ୍ରମାନେ ଗଣତନ୍ତ୍ର ଓ ସ୍ୱାତନ୍ତ୍ର ପାଇଁ ଅଦମ୍ୟ ସଂଗ୍ରାମ କରିଥିଲେ । ଟିନାମ୍ୟାନ୍ ଛକରେ ଗଣତନ୍ତ୍ର ବିରୋଧୀ ଶକ୍ତିର ନାରକୀୟ ଦମନଲୀଳା ଏ ପର୍ଯ୍ୟନ୍ତ ପୃଥିବୀର ସମସ୍ତ ସ୍ୱାତନ୍ତ୍ର୍ୟ ଓ ଗଣତନ୍ତ୍ରପ୍ରେମୀ ମଣିଷଙ୍କ ମନରେ ଜୀବନ୍ତ । ପୂର୍ବ ୟୁରୋପରେ କମ୍ୟୁନିଷ୍ଟ ରାଷ୍ଟ୍ରମାନଙ୍କରେ 'ସାଧାରଣତନ୍ତ୍ର' ପ୍ରତିଷ୍ଠା କରାଯାଇଥିଲେ ମଧ୍ୟ ନିକଟ ଅତୀତରେ ରୁମାନିଆ, ଚେକୋସ୍ଲୋଭାକିଆ, ପୂର୍ବଜର୍ମାନୀ ପ୍ରଭୃତି ଦେଶରେ 'ଗଣତନ୍ତ୍ର' ନିମନ୍ତେ ଯେଉଁ ବିପ୍ଳବର ଢେଉ ଉଠିଥିଲା ତାହା ସ୍ପଷ୍ଟ [illegible] ପ୍ରମାଣିତ କରେ ଯେ 'ସାଧାରଣତନ୍ତ୍ର' ଗଣତାନ୍ତ୍ରିକ ଆଦର୍ଶର ଅନ୍ୟ ନାମ ନୁହେଁ । ତେଣୁ 'ସାଧାରଣତନ୍ତ୍ର' ରାଷ୍ଟ୍ରର ଶାସନ ପ୍ରଣାଳୀର ଏକ ରାଜନୈତିକ ନାମ ମାତ୍ର ।

## ଆବେଗଗତ ବିଭାଗ :

କିନ୍ତୁ ଭାରତୀୟମାନଙ୍କ ପାଇଁ 'ସାଧାରଣତନ୍ତ୍ର' ଶବ୍ଦଟିର ଏକ ଆବେଗମୟ ଅର୍ଥ ରହିଛି । ଏ କଥା ସତ୍ୟ ଯେ ରାଜନୀତିକ ଦୃଷ୍ଟିକୋଣରୁ ଭାରତ ଏକ 'ସାଧାରଣତନ୍ତ୍ର', କାରଣ ଏହାର ଶାସନ ମୁଖ୍ୟ ରାଷ୍ଟ୍ରପତି ଜନ୍ମଗତ ଭିତ୍ତିରେ ମନୋନୀତ ନ ହୋଇ ଜନସାଧାରଣଙ୍କ ଦ୍ୱାରା ପରୋକ୍ଷ ଭାବରେ ମନୋନୀତ ହୁଅନ୍ତି । କିନ୍ତୁ ଭାରତ ମଧ୍ୟ ଏକ ଗଣତାନ୍ତ୍ରିକ ରାଷ୍ଟ୍ର । ରାଜନୈତିକ ତଥା ଐତିହାସିକ ପରିପ୍ରେକ୍ଷୀରେ ସ୍ୱତନ୍ତ୍ରତା ଓ ଗଣତନ୍ତ୍ରର ପ୍ରତିଷ୍ଠା ଭାରତ ପାଇଁ ଅଧିକ ଗୁରୁତ୍ୱପୂର୍ଣ୍ଣ ଲକ୍ଷ୍ୟ ଭାବେ ପରିଗଣିତ ହୁଏ । ତେଣୁ ଆମ ପାଇଁ 'ସାଧାରଣତନ୍ତ୍ର' ସ୍ୱତନ୍ତ୍ରତାର ଅନ୍ୟ ଏକ ରୂପ । କାରଣ ୧୯୫୦ ଜାନୁଆରୀ ୨୬ରେ ଭାରତର 'ସ୍ୱତନ୍ତ୍ରତା'ର ସ୍ୱପ୍ନ ସମ୍ପୂର୍ଣ୍ଣ ଓ ସାକାର ରୂପ ପାଇଥିଲା । ୧୯୪୭ ମସିହାରେ ଭାରତ ସ୍ୱାଧୀନ ହୋଇଥିଲେ ମଧ୍ୟ ପରାଧୀନତାର ଶେଷ ଶୃଙ୍ଖଳଟି ଅତୁଟ ଥିଲା । କାରଣ ଭାରତର ଶାସନ ମୁଖ୍ୟ ତଥାପି ଇଂଲାଣ୍ଡର ରାଣୀ ଥିଲେ । ତେଣୁ ଭାରତର ଗଭର୍ଣ୍ଣର ଜେନେରାଲ୍ ଏଠାରେ ଇଂଲାଣ୍ଡର ରାଜତନ୍ତ୍ରର ପ୍ରତିନିଧିତ୍ୱ କରୁଥିଲେ । କିନ୍ତୁ 'ସାଧାରଣତନ୍ତ୍ର' ଦିବସ ଅର୍ଥାତ୍ ୧୯୫୦ ଜାନୁଆରୀ ୨୬ରେ ଭାରତ ପରାଧୀନତାର ଏହି ଅବଶିଷ୍ଟ ଶୃଙ୍ଖଳରୁ ମୁକ୍ତ ହୋଇ ସର୍ବତୋ ଭାବରେ ସ୍ୱତନ୍ତ୍ର ହୋଇଥିଲା । ତେଣୁ ଆମମାନଙ୍କ ପାଇଁ 'ସାଧାରଣତନ୍ତ୍ର' ଶବ୍ଦଟି ରାଜନୀତି ବିଜ୍ଞାନର ସଂଜ୍ଞା ମଧ୍ୟରେ ସୀମିତ ହୋଇ ରହି ନାହିଁ । 'ସାଧାରଣତନ୍ତ୍ର' ଭାରତରେ ସମ୍ପୂର୍ଣ୍ଣ ସ୍ୱରାଜ ଓ ସ୍ୱତନ୍ତ୍ରତାର ପ୍ରତୀକ । ତେଣୁ ଏହା ଆମ ପାଇଁ ବିଜୟର ଓ ଗୌରବର ସ୍ମୃତି ବହନ କରେ ।

## ରାଜନୈତିକ ଓ ବ୍ୟକ୍ତିକ ମୂଲ୍ୟ :

ଭାରତ ରାଜନୈତିକ ଭାବରେ ସ୍ୱତନ୍ତ୍ର ହେଲେ ମଧ୍ୟ 'ସ୍ୱାତନ୍ତ୍ର୍ୟ'ର ପ୍ରକୃତ ମୂଲ୍ୟ ଆମେ ଏ ପର୍ଯ୍ୟନ୍ତ ଉପଲବ୍ଧି କରିନାହୁଁ । କାରଣ 'ସ୍ୱତନ୍ତ୍ର' ଶବ୍ଦର ରାଜନୈତିକ ରୂପ ତଳେ ଲୁଚି ରହିଥିବା ସାମାଜିକ ଓ ବ୍ୟକ୍ତି କେନ୍ଦ୍ରିକ ଦିଗ ପ୍ରତି ଆମେ ଏ ପର୍ଯ୍ୟନ୍ତ ଦୃଷ୍ଟି ଦେଇନାହୁଁ । 'ରାଜନୈତିକ ସ୍ୱାତନ୍ତ୍ର୍ୟ' ଏକ ସ୍ୱୟଂସମ୍ପୂର୍ଣ୍ଣ କଳ୍ପନା ନୁହେଁ । ଏହା ଜୀବନର ଅନ୍ୟାନ୍ୟ ସମସ୍ୟା ସହିତ ଓତଃପ୍ରୋତ ଭାବରେ ଜଡ଼ିତ । ସାମାଜିକ ଓ ବ୍ୟକ୍ତିଗତ ସ୍ୱାତନ୍ତ୍ର ବିନା ରାଜନୈତିକ ସ୍ୱାତନ୍ତ୍ର୍ୟ ଏକ ଶୂନ୍ୟସାର କଳ୍ପନା ମାତ୍ର ।

ମନୁଷ୍ୟ ମୂଳତଃ ଏକ ସାମାଜିକ ଜୀବ । ସାମାଜିକ ପ୍ରାଣୀ ହିସାବରେ ସମାଜରେ ଅନ୍ୟମାନଙ୍କ ସହିତ ନିର୍ଦ୍ୱନ୍ଦ୍ୱରେ ଓ ନିର୍ଭୟରେ ବଞ୍ଚିବାର ଅଧିକାର ତାହାର ଅଛି । ଏହି ଅଧିକାରକୁ ହିଁ ସାଧାରଣତଃ ସାମାଜିକ ସ୍ୱାତନ୍ତ୍ର୍ୟ କୁହାଯାଏ । ସମାଜରେ ଅବାଧରେ କର୍ମ ଓ ଭାବର ଆଦାନ ପ୍ରଦାନ କରିବାର ଅଧିକାର ସାମାଜିକ ଜୀବ ହିସାବରେ ତାହାର ପ୍ରାପ୍ୟ । ପୁଣି ସାମାଜିକ ସ୍ୱାତନ୍ତ୍ର୍ୟ ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ବିନା ଅସମ୍ପୂର୍ଣ୍ଣ । ମନୁଷ୍ୟ ଏକ ବୁଦ୍ଧି ଓ ବିବେକଶୀଳ ପ୍ରାଣୀ ହୋଇଥିବାରୁ ଆତ୍ମସମ୍ମାନବୋଧ ଓ ସ୍ୱଚେତନତାବୋଧ ତାହାର ରହିଛି । ଏହି ଦୁଇଟି ଗୁଣ ହିଁ ତାହାର ମନୁଷ୍ୟତ୍ୱର ମାପକାଠି । ତେଣୁ 'ବ୍ୟକ୍ତିସ୍ୱାତନ୍ତ୍ର୍ୟ' କଳ୍ପନା ଆତ୍ମସମ୍ମାନବୋଧ ଓ ସ୍ୱଚେତନାତାବୋଧ ଉପରେ ପର୍ଯ୍ୟବସିତ । ଯେଉଁ ସମାଜରେ ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ନାହିଁ, ସେଠାରେ ସାମାଜିକ ସ୍ୱାତନ୍ତ୍ର୍ୟ ମଧ୍ୟ ନାହିଁ ।

## ସଂକଳ୍ପ ସ୍ୱାତନ୍ତ୍ର୍ୟ :

ମନୁଷ୍ୟକୁ ନ୍ୟୂନତମ ଆତ୍ମମର୍ଯ୍ୟାଦା ସହିତ ବଞ୍ଚିବାକୁ ହେଲେ ତାହାର ଲୋଡ଼ା ସଙ୍କଳ୍ପ ସ୍ୱାତନ୍ତ୍ର୍ୟ (Freedom of the will) । ସେ କେଉଁ କାର୍ଯ୍ୟ କରିବ, କି ପ୍ରକାର ଚିନ୍ତା କରିବ, କେଉଁ ଧର୍ମରେ ବିଶ୍ୱାସ କରିବ ଇତ୍ୟାଦି ବହୁତ ନିଷ୍ପତ୍ତି ତାହାର ନିଜସ୍ୱ ସଙ୍କଳ୍ପ ଉପରେ ନିର୍ଭରଶୀଳ । କିନ୍ତୁ ଏପରି କହିବା ଅର୍ଥ ନୁହେଁ ଯେ ବ୍ୟକ୍ତିଗତ ସ୍ତରରେ "ସ୍ୱେଚ୍ଛାଚାରିତା"ର ଅନ୍ୟ ନାମ 'ସ୍ୱାତନ୍ତ୍ର୍ୟ' । ବ୍ୟକ୍ତି ସ୍ୱତନ୍ତ୍ର ହେଲେ ମଧ୍ୟ ସେ ମୁଖ୍ୟତଃ ଏକ ସାମାଜିକ ଜୀବ । ତାହାର କର୍ମଭୂମି ହେଉଛି ସମାଜ ଏବଂ ସମାଜ ପୃଷ୍ଠଭୂମିରେ ହିଁ ମନୁଷ୍ୟ ତାହାର ମନୁଷ୍ୟତ୍ୱବୋଧ ସମ୍ବନ୍ଧରେ ସଚେତନ ହୁଏ । ମନୁଷ୍ୟ ସ୍ୱତନ୍ତ୍ର ହେଲେ ମଧ୍ୟ ସେ ସ୍ୱେଚ୍ଛାରେ ସାମାଜିକ ବନ୍ଧନରେ ଆବଦ୍ଧ ହୁଏ । ସମାଜରେ ବାସ କରୁଥିବା ବ୍ୟକ୍ତି ତେଣୁ ନିଜ ପାଇଁ ବଞ୍ଚିବା ସଙ୍ଗେ ସଙ୍ଗେ ଅନ୍ୟ ପାଇଁ ମଧ୍ୟ ବଞ୍ଚିବାକୁ ଶିଖେ । ଅତଏବ 'ସ୍ୱାତନ୍ତ୍ର୍ୟ'ର ଅର୍ଥ ଯଦି ସ୍ୱେଚ୍ଛାଚାରିତା ହୁଏ ତେବେ ସମାଜ ମୃତବତ୍ କଳ୍ପନା ହୋଇଯିବ । ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ବିବେକାନୁମୋଦିତ ହେବା ବାଞ୍ଛନୀୟ । ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟର ଅନ୍ୟ ଦିଗଟି ହେଉଛି ଆତ୍ମନିୟନ୍ତ୍ରଣ । ବ୍ୟକ୍ତିଗତ ସ୍ୱାତନ୍ତ୍ର ସମ୍ବନ୍ଧରେ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ମତାମତ ଏଠାରେ ଉଲ୍ଲେଖ କରିବା ଉଚିତ ମନେ କରୁଛି । 'ସ୍ୱାତନ୍ତ୍ର୍ୟ'ର ସ୍ୱରୂପ ବିଷୟରେ ବୁଝାଇବାକୁ ଯାଇ ସେ କହିଛନ୍ତି :

".....though it may sound paradoxical it is true that in human world only

perfect arrangement of interdependence gives rise to human freedom. The most individulistic human beings who own no responsibility are the savages who fail to attain their full manifestation....The history of growth of freedom is the perfection of human relationship''.

## ପରିପୂରକ ଦାୟିତ୍ୱ :

ତେଣୁ ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ଓ ସାମାଜିକ କର୍ତ୍ତବ୍ୟ ପରସ୍ପରର ପରିପୂରକ । ବ୍ୟକ୍ତିଗତସ୍ୱାତନ୍ତ୍ର୍ୟ ମନୁଷ୍ୟକୁ ସ୍ୱାର୍ଥପର କରିବା ପରିବର୍ତ୍ତେ ତାହା ମଧ୍ୟରେ ଅନ୍ତର୍ନିହିତ ଦୈବିକ ଗୁଣଗୁଡ଼ିକ ବିକାଶରେ ସହାୟକ ହୁଏ । କାରଣ ବ୍ୟକ୍ତିଗତ ସ୍ତରରେ 'ସ୍ୱାତନ୍ତ୍ର୍ୟ'ର ଅନ୍ୟ ଏକ ଦିଗ ହେଉଛି "ଆତ୍ମନିୟନ୍ତ୍ରଣ" ଓ ଆତ୍ମନିୟନ୍ତ୍ରଣର ପ୍ରେରଣା ଆସେ ସମାଜରେ ଥିବା ମାନବିକ ସମ୍ପର୍କ ମାଧ୍ୟମରେ ।

'ସ୍ୱାତନ୍ତ୍ର୍ୟ' ଶବ୍ଦର ବିଭିନ୍ନ ଦିଗ ପ୍ରତି ଦୃଷ୍ଟିପାତ କରିଲେ ଦେଖାଯାଏ ଯେ ରାଜନୈତିକ 'ସ୍ୱାତନ୍ତ୍ର୍ୟ' ଏହି ମହାନ୍ ଆଦର୍ଶର ଏକ ବହିଃପ୍ରକାଶ ମାତ୍ର । ଏହି ପରିପ୍ରେକ୍ଷୀରେ ଭାରତର ଅଧୁନା ପରିସ୍ଥିତି ସମ୍ବନ୍ଧରେ ବିଚାର କରାଯାଉ । ରାଜନୈତିକ ଦୃଷ୍ଟିରେ ସ୍ୱତନ୍ତ୍ର ଭାରତରେ ଆମର ସାମାଜିକ ଓ ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ କେତେଦୂର ସୁରକ୍ଷିତ ? 'ସାଧାରଣତନ୍ତ୍ର' ଓ 'ଗଣତନ୍ତ୍ର' ପ୍ରତିଷ୍ଠା ହେବାର ଦୀର୍ଘ ଛଅଗୋଟି ଦଶକ ବିତି ଯାଇଥିଲେ ମଧ୍ୟ ଭାରତରେ ଏବେ ବି ଲକ୍ଷ ଲକ୍ଷ ମନୁଷ୍ୟ ଅଛନ୍ତି ଯେଉଁମାନେ 'ବ୍ୟକ୍ତିଗତ' ଓ 'ସାମାଜିକ' ସ୍ୱାତନ୍ତ୍ର୍ୟ ବୋଲି କିଛି ଉପଲବ୍ଧି କରିବାର ସୁଯୋଗ ମଧ୍ୟ ପାଇ ନାହାନ୍ତି । ମଣିଷ ଅନ୍ୟ ମଣିଷକୁ ଏବେ ମଧ୍ୟ ଅସ୍ପୃଶ୍ୟ ବୋଲି ଗଣନା କରି ସମାଜରେ ମୁଖ୍ୟ ସ୍ରୋତରେ ସାମିଲ୍ କରିବାରେ ଦ୍ୱିଧା ବୋଧ କରେ । ଜାତି ତଥା ଦାରିଦ୍ର୍ୟ ଭିତ୍ତିରେ ଏ ଦେଶରେ ଏବେ ବି ମନୁଷ୍ୟକୁ ପଶୁ ପରି ବ୍ୟବହାର କରାଯାଉଛି । ପ୍ରତି ପଦକ୍ଷେପରେ ସେମାନଙ୍କ ଆତ୍ମବୋଧ ପ୍ରତି ସମ୍ମାନ ଦେବା ପରିବର୍ତ୍ତେ ତାହାକୁ ଅସମ୍ମାନ କରାଯାଉଛି । ଆମ ସମାଜର ଏହି କଳଙ୍କିତ ଦିଗ ବିଷୟରେ ବହୁ ତଥ୍ୟ, ପ୍ରବନ୍ଧ ଓ ବକ୍ତୃତାମାନ ପ୍ରସ୍ତୁତିତ ହୋଇଛି । ତେଣୁ ଏହାର ପୁନରାବୃତ୍ତି କରିବା ନିରର୍ଥକ । ଦେଶର ପ୍ରତ୍ୟେକ ଶିକ୍ଷିତ ନାଗରିକ ଏ ବିଷୟରେ ତଥ୍ୟଗତ ଭାବରେ ସଚେତନ କିନ୍ତୁ କାର୍ଯ୍ୟ କ୍ଷେତ୍ରରେ ଏହି କଳଙ୍କ ଦୂର କରିବାରେ ଆଗ୍ରହର ଘୋର ଅଭାବ ଲକ୍ଷ୍ୟ କରାଯାଏ । ଦେଶରେ ଏହି ଛଅ ଦଶକ ମଧ୍ୟରେ ବହୁ ଅଗ୍ରଗତି ଘଟିଛି । ରାସ୍ତା ଘାଟ, କଳ କାରଖାନା, ନୂତନ ସହର ତିଆରି ହେବାଠାରୁ ଆରମ୍ଭ କରି ଚନ୍ଦ୍ରକୁ ମଧ୍ୟ ଆମ ଦେଶର ଲୋକ ପ୍ରେରିତ ହୋଇଛନ୍ତି । କିନ୍ତୁ ଆମ ଧୂଳି ମାଟିରେ ବସବାସ କରୁଥିବା ସାଧାରଣ ମନୁଷ୍ୟର ଅତି ସାଧାରଣ ଅଧିକାର ସମାଜ ଦେଇ ପାରିନାହିଁ । ଦେଶରେ ଶିକ୍ଷାର ପ୍ରସାର ହେଲେ ମଧ୍ୟ ମାନବିକ ମୂଲ୍ୟବୋଧ ସମ୍ବନ୍ଧରେ ଶିକ୍ଷିତ ଶ୍ରେଣୀ ଏ ପର୍ଯ୍ୟନ୍ତ ସଚେତନ ନୁହଁନ୍ତି । ତେଣୁ ଆମର 'ସ୍ୱାତନ୍ତ୍ର୍ୟ' କଳ୍ପନା କେବଳ ଭୋଟ ବାକ୍ସ ମଧ୍ୟରେ ହିଁ ସୀମିତ ହୋଇ ରହିଯାଇଛି ।

## ପଣ୍ଡିତ ନେହେରୁ ଓ ସାମାଜିକ ସ୍ୱାତନ୍ତ୍ର୍ୟ :

ଭାରତ ସ୍ୱତନ୍ତ୍ର ହେବାର ବହୁ ବର୍ଷ ପୂର୍ବେ ନେହେରୁ ତାଙ୍କର 'ଡ଼ିସ୍କଭରି ଅଫ ଇଣ୍ଡିଆ'ରେ ଏ ସମ୍ବନ୍ଧରେ ଚେତାଇ କହିଥିଲେ ଯେ ସାମାଜିକ ସ୍ୱାତନ୍ତ୍ର୍ୟ ବିନା ରାଜନୈତିକ ସ୍ତରରେ ଗଣତନ୍ତ୍ର ମୂଲ୍ୟହୀନ । ସେ ଆହୁରି ମଧ୍ୟ ଦର୍ଶାଇଥିଲେ ଯେ ମାନବିକ ଚେତନାବୋଧ ଓ ମନୁଷ୍ୟତ୍ୱ ପ୍ରତି ସମ୍ମାନବୋଧ ହିଁ ଭାରତୀୟ ସମାଜର ଅଗ୍ରଗତିର ମାପ କାଠି । କିନ୍ତୁ ଆମେ ଆଜି ମଧ୍ୟ 'ସାଧାରଣତନ୍ତ୍ର' ଓ 'ଗଣତନ୍ତ୍ର' ଓ 'ସ୍ୱତନ୍ତ୍ରତା'ର ରାଜନୈତିକ ରୂପକୁ ହିଁ ଗୁରୁତ୍ୱ ଦେଇଆସିଛୁ । 'ଗଣତନ୍ତ୍ର' ଓ ସ୍ୱତନ୍ତ୍ରତା' କେବଳ ଏକ ରାଜନୈତିକ କଳ୍ପନା ନୁହେଁ ଏହା ଜୀବନ ପ୍ରତି ମୁକ୍ତ ବିଚାରର ଅନ୍ୟ ନାମ । ତେଣୁ ଯେ ପର୍ଯ୍ୟନ୍ତ ଆମେ ମଣିଷକୁ ତଥା ବ୍ୟକ୍ତିର 'ସ୍ୱ'ତ୍ୱ ପ୍ରତି ସମ୍ମାନ ଦେଇ ଶିଖିନାହୁଁ ସେ ପର୍ଯ୍ୟନ୍ତ ରାଜନୈତିକ ସ୍ୱାତନ୍ତ୍ର୍ୟ ଅସାର ଓ ବାହ୍ୟରୂପସର୍ବସ୍ୱ କଳ୍ପନା ହୋଇରହିବ । 'ସ୍ୱତନ୍ତ୍ର' ଓ 'ସାଧାରଣତନ୍ତ୍ର'ର ରାଜନୈତିକ ରୂପକୁ ବଞ୍ଚାଇ ରଖିବାକୁ ହେଲେ ଆମକୁ ଏହି ଆଦର୍ଶଗୁଡ଼ିକ ସମ୍ବନ୍ଧରେ ପୁଣି ନୂତନ ଭାବରେ ଚିନ୍ତା କରିବାକୁ ହେବ । ଏହି ଆଦର୍ଶଗୁଡ଼ିକୁ ଆମେ ସ୍ୱାଧୀନତା ପ୍ରାପ୍ତି ପରେ ମୃତ ବୋଲି ଧାରଣା ପୋଷଣ କରିଥିବାରୁ ହିଁ ଆମର ସମାଜ ଏପର୍ଯ୍ୟନ୍ତ ଯୁଗ ସହିତ ପାଦ ପକାଇ ଚାଲି ପାରିନାହିଁ ଏବଂ ଏବେ ବି ଆମେ ଯଦି ନିଦ୍ରିତ ହୋଇ ରହୁ ତେବେ ଆମର ରାଜନୈତିକ 'ସ୍ୱାତନ୍ତ୍ର୍ୟ' ଓ 'ଗଣତନ୍ତ୍ର'ର ଧ୍ୱଂସ ମଧ୍ୟ ଅବଶ୍ୟମ୍ଭାବୀ ।

---

ପ୍ରାଧ୍ୟାପିକା,
ଦର୍ଶନ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ ।



# ଗଣ ଚେତନାର ଜାଗ୍ରତ ପ୍ରହରୀ

ଡକ୍ଟର ଜଗନ୍ନାଥ ପଟ୍ଟନାୟକ

ନିଜର ଅସାଧାରଣ ପ୍ରତିଭା ଓ ମହନୀୟ କୃତିତ୍ୱ ଦ୍ୱାରା ଯେଉଁ କେତେଜଣ ବରେଣ୍ୟ ବ୍ୟକ୍ତି ଭାରତ ଇତିହାସକୁ ମହିମାନ୍ୱିତ ଓ ଗୁରିମନ୍ତ କରିଛନ୍ତି, ସେମାନଙ୍କ ମଧ୍ୟରୁ ବାବାସାହେବ୍ ଡକ୍ଟର ଭୀମରାଓ ଆମ୍ବେଦକର ଥିଲେ ଅନ୍ୟତମ । ଏକାଧାରରେ ଜଣେ ଲବ୍ଧ ପ୍ରତିଷ୍ଠ ଶିକ୍ଷାବିତ୍, ବରିଷ୍ଠ ରାଜନୀତିଜ୍ଞ, ମହାନ ନେତା, ସୁପ୍ରସିଦ୍ଧ ସମାଜ ସଂସ୍କାରକ ଏବଂ ଭାରତ ସମ୍ବିଧାନର ମୁଖ୍ୟ ପ୍ରଣେତା ଭାବରେ ସେ ଯଶସ୍ୱୀ ହୋଇ ରହିଛନ୍ତି । ବିଶେଷତଃ ଦଳିତ, ନିଷ୍ପେଷିତ ଓ ଅସ୍ପୃଶ୍ୟ ଭାରତୀୟଙ୍କୁ ମୁକ୍ତ ଓ ଜାଗ୍ରତ କରିବା ଦିଗରେ ସେ ଯେଉଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ, ତାହା ତାଙ୍କୁ ଯଥାର୍ଥରେ ଗଣଚେତନାର ଜାଗ୍ରତ ପ୍ରହରୀ ଭାବରେ ଅଭିହିତ କରାଇଥାଏ ।

ମହାରାଷ୍ଟ୍ର ଅନ୍ତର୍ଗତ ରତ୍ନଗିରି ଜିଲ୍ଲାର ଆମ୍ବଭାଡ଼େ ଗ୍ରାମରେ ଏକ ମାହାର ପରିବାରରେ ୧୮୯୧ ମସିହା ଏପ୍ରିଲ୍ ୧୪ ତାରିଖ ଦିନ ଡକ୍ଟର ଆମ୍ବେଦକରଙ୍କର ଜନ୍ମ । ପିତାଙ୍କ ନାମ ରାମଜୀ ସେକପାଲ ଏବଂ ମାତାଙ୍କ ନାମ ଭୀମାବାଈ । ମାହାରମାନେ ଏକ ଅସ୍ପୃଶ୍ୟ ଗୋଷ୍ଠୀ ହୋଇଥିଲେ ମଧ୍ୟ ସବୁ ଅସ୍ପୃଶ୍ୟ ଗୋଷ୍ଠୀମାନଙ୍କ ମଧ୍ୟରୁ ସେମାନେ ଥିଲେ ବୁଦ୍ଧିମାନ, ଲଢୁଆ, ସାହସୀ ଓ ଅଗ୍ରଣୀ । ମହାରାଷ୍ଟ୍ରର ସର୍ବ ପ୍ରାଚୀନ ଅଧିବାସୀ ବୋଲି ସେମାନେ ଦାବୀ କରିଥାନ୍ତି ଏବଂ ତାଙ୍କରି ନାମାନୁସାରେ ମହାରାଷ୍ଟ୍ର ବା ମାହାର ରାଷ୍ଟ୍ର ବୋଲି କଥିତ ହୋଇଛି ବୋଲି ସେମାନେ କହିଥାନ୍ତି । ସେ ଯାହାହେଉ ସେତେବେଳେ ମାହାର ସମେତ ଅନ୍ୟାନ୍ୟ ଅସ୍ପୃଶ୍ୟ ଜାତି ଲୋକମାନଙ୍କର ଅବସ୍ଥା ଥିଲା ଅତି ଦୟନୀୟ ଓ ଶୋଚନୀୟ । ସର୍ବସାଧାରଣ କୂପ ବା ପୋଖରୀରୁ ଜଳ ବ୍ୟବହାର କରିବାକୁ ସେମାନଙ୍କୁ ନିଷେଧ କରାଯାଇଥିଲା । ବିଦ୍ୟାଳୟରେ ଶିକ୍ଷାଲାଭ କରିବା ପାଇଁ ସେମାନେ ଅନୁମତି ପ୍ରାପ୍ତ ହେଉନଥିଲେ । ଗ୍ରାମ ଓ ସହରଠାରୁ ଦୂରରେ ରହିଥିବା ଅପରିଷ୍କାର, ସନ୍ତସନ୍ତିଆ, ଅସ୍ୱାସ୍ଥ୍ୟକର ସ୍ଥାନ ଥିଲା ସେମାନଙ୍କର ବାସସ୍ଥଳୀ । ସେମାନେ ହିନ୍ଦୁ ଧର୍ମର ଦେବାଦେବୀ ଉପାସନା କରିବା ସମେତ ହିନ୍ଦୁ ପର୍ବପର୍ବାଣୀ ପାଳନ କରୁଥିଲେ ମଧ୍ୟ ମନ୍ଦିର ମଧ୍ୟକୁ ପ୍ରବେଶ କରିବା ନିଷେଧ ଥିଲା । ଯୁଗ ଯୁଗ ଧରି ନିରକ୍ଷର ଓ ଅସ୍ପୃଶ୍ୟ ହୋଇଥିବାରୁ କୌଣସି ଚାକିରିରେ ସେମାନେ ନିଯୁକ୍ତି ପାଇପାରୁ ନଥିଲେ । ତେଣୁ ନିଜର ଭରଣ ପୋଷଣ ପାଇଁ ସେମାନେ ଝାଡୁଦାର, ମେହେନ୍ତର, ମୋଚି ଆଦିର କାର୍ଯ୍ୟ କରିବା ପାଇଁ ବାଧ୍ୟ ହେଉଥିଲେ । ମୋଟ ଉପରେ ଉଚ୍ଚ ବଂଶର ହିନ୍ଦୁମାନେ ସେମାନଙ୍କୁ ମଣିଷ ବୋଲି ଗଣ୍ୟ କରୁନଥିଲେ । ସତେ ଅବା ଜଣାପଡୁଥିଲା, ସେମାନେ ଅସ୍ପୃଶ୍ୟ ହୋଇ ଜନ୍ମଗ୍ରହଣ କରିଛନ୍ତି, ଅସ୍ପୃଶ୍ୟ ଭାବେ ଜୀବନ ଯାପନ କରି ଅସ୍ପୃଶ୍ୟ ହୋଇ ମୃତ୍ୟୁବରଣ କରିବେ । ଏହିପରି ଭାବେ ସେମାନେ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଅଧିକାରରୁ ବଞ୍ଚିତ ହୋଇ ଅତି ଦୁଃଖରେ କାଳାତିପାତ କରୁଥିଲେ । ଏହି ଶୋଚନୀୟ ଅବସ୍ଥାର ଉନ୍ନତି ପାଇଁ ସେମାନେ ମଧ୍ୟ କୌଣସି ପଦକ୍ଷେପ ନେବା ଦିଗରେ ସକ୍ଷମ ନଥିଲେ । ଅବଶ୍ୟ ହିନ୍ଦୁ ସମାଜର ଏପରି ଏକ କଳଙ୍କ ଦୂରୀଭୂତ କରିବା ପାଇଁ ଯୀଶୁ ଖ୍ରୀଷ୍ଟ ଜନ୍ମ ହେବାର ପାଞ୍ଚ ଶହ ବର୍ଷ ପୂର୍ବରୁ ଗୌତମ ବୁଦ୍ଧ ତାଙ୍କ ପ୍ରବର୍ତ୍ତିତ ଧର୍ମରେ ଅସ୍ପୃଶ୍ୟ ଲୋକଙ୍କୁ ଦୀକ୍ଷିତ କରାଇଥିଲେ । ଏହି ସାମାଜିକ କଳଙ୍କକୁ ଦୂର କରିବା ପାଇଁ ସେ ଅନ୍ୟାନ୍ୟ ପଦକ୍ଷେପ ନେଇଥିଲେ । ପରେ ପରେ ଏକାଦଶ ଶତାବ୍ଦୀରେ ରାମାନୁଜ ଏବଂ ପରେ ପରେ ଚକ୍ରଧର, ରାମାନନ୍ଦ, କବୀର, ଚୈତନ୍ୟ, ନାନକ, ସୀତାରାମ, ରୋହି ଦାସଙ୍କ ପରି ସାଧୁ ସନ୍ଥ ଏହି ସାମାଜିକ କଳଙ୍କ ବିରୁଦ୍ଧରେ ପ୍ରଶ୍ନର କରି ସମାଜରେ ସାମ୍ୟ ଆଣିବା ଦିଗରେ ଉଦ୍ୟମ କରିଥିଲେ । ସେହିପରି ରାମ ମୋହନ ରାୟ, ଶଶିଧର ବନ୍ଦୋପାଧ୍ୟାୟ, ମହାରାଷ୍ଟ୍ରର ମହାତ୍ମା ଫୁଲେ, ଭାରତୀୟ ରାଜାମାନଙ୍କ ମଧ୍ୟରୁ ବରୋଦାର ରାଜା ସୟାଜି ରାଓ ଗାଇକ୍ୱାଡ଼ ଏହି ଦିଗରେ ଉଦ୍ୟମ କରିଥିଲେ । ମାତ୍ର ଇଂରେଜ ପ୍ରଶାସକମାନେ ଏ ବିଷୟରେ ଉଦାସୀନ ନଥିଲେ । କେବଳ ମାତ୍ର ନିଜର ସ୍ୱାର୍ଥ ସାଧନ ଉଦ୍ଦେଶ୍ୟରେ ଖ୍ରୀଷ୍ଟିଆନ ପାଦ୍ରୀମାନେ ଏହି ଅସ୍ପୃଶ୍ୟ ଲୋକଙ୍କ ପ୍ରତି ସହାନୁଭୂତି ପ୍ରଦର୍ଶନ କରିଥିଲେ । ଖ୍ରୀଷ୍ଟ ଧର୍ମରେ ଭାରତୀୟମାନଙ୍କୁ ଦୀକ୍ଷିତ କରାଇବା ଥିଲା ତାଙ୍କର ପ୍ରଧାନ ଉଦ୍ଦେଶ୍ୟ । ଭାରତୀୟ ଜାତୀୟ କଂଗ୍ରେସ ମଧ୍ୟ ଏହି ବିଷୟ ପ୍ରତି ବିଶେଷ ଭାବରେ ଧ୍ୟାନ ଦେଉନଥିଲେ । ମହାରାଷ୍ଟ୍ର ତଥା ଭାରତବର୍ଷରେ ଏହି ପ୍ରକାର ସାମାଜିକ, ରାଜନୈତିକ ଅବସ୍ଥା ଚରମ ସୀମା ସ୍ପର୍ଶ କରିଥିବା ସମୟରେ ଭୀମ ରାଓ ଆମ୍ବେଦକର ଜନ୍ମଲାଭ କରିଥିଲେ ।

ବୟସ ବଢ଼ିବା ସଙ୍ଗେ ସଙ୍ଗେ ଭୀମ ରାଓ ଏ ପ୍ରକାର ସାମାଜିକ କଳଙ୍କ ଦେଖି ଶୋକାଭିଭୂତ ଓ ମ୍ରିୟମାଣ ହୋଇପଡ଼ିଥିଲେ । ତାଙ୍କ ବାଲ୍ୟ ଜୀବନର କେତୋଟି ଘଟଣା ବିଶେଷ ଭାବେ ତାଙ୍କୁ ବିଚଳିତ କରିଥିଲା । ତୃଷାର୍ତ୍ତ ହୋଇ ଦିନେ ସେ ଗୋଟିଏ ସର୍ବସାଧାରଣ କୂଅରୁ ପାଣି ଟାଣି ପିଉଥିବା ସମୟରେ ତାଙ୍କ ଉପରେ ପ୍ରହାର ହୋଇଥିଲା । ଅନ୍ୟ ଦିନେ ଗୋଟିଏ ବଳଦ ଗାଡ଼ିରେ ତାଙ୍କ ଭାଇ ସହିତ ଯାଉଥିବା ସମୟରେ ଶଗଡ଼ିଆ ସେମାନଙ୍କୁ ଅସ୍ପୃଶ୍ୟ ଜାତିର ଲୋକ ବୋଲି ଜାଣିପାରି ସେ ଶଗଡ଼ରୁ ଓହ୍ଲାଇ ଯାଇଥିଲା ଏବଂ ସେଥିରେ ନିଜେ ଦୁଇଭାଇ ଗାଡ଼ି ଚଳାଇ ଯାଇଥିଲେ । ଏପରିକି ବିଦ୍ୟାଳୟରେ ମଧ୍ୟ ସେ ଅନ୍ୟ ଉଚ୍ଚ ଜାତିର ହିନ୍ଦୁ ପିଲାଙ୍କ ସହିତ ବସି ପାଠ ପଢ଼ିବାରୁ ବଞ୍ଚିତ ହୋଇଥିଲେ । ଏପରିକି ଶିକ୍ଷକ ମଧ୍ୟ ତାଙ୍କର ଖାତା ସ୍ପର୍ଶ କରୁନଥିଲେ । ଆଗ୍ରହ ଥିଲେ ମଧ୍ୟ ସେ ନୀଚ ଜାତିର ପିଲା ହୋଇଥିବାରୁ ସଂସ୍କୃତ ଭାଷା ପଢ଼ିବାରୁ ବଞ୍ଚିତ ହୋଇଥିଲେ । ଏହିପରି କେତେକ ଅପ୍ରୀତିକର ଅଭିଜ୍ଞତା ତାଙ୍କ ହୃଦୟ କେଦାରରେ ବିଦ୍ରୋହର ବୀଜ ବପନ କରିଥିଲା । ଗଣଚେତନା ସୃଷ୍ଟି କରି ସାମାଜିକ କଳଙ୍କର ଦୂରୀକରଣ ନିମନ୍ତେ ସେ ପ୍ରତିଜ୍ଞାବଦ୍ଧ ହୋଇଥିଲେ । ମାତ୍ର ତା ପୂର୍ବରୁ ଯେପରି ହେଉ ସେ ଉଚ୍ଚ ଶିକ୍ଷା ଲାଭ କରିବାର ନିଷ୍ପତ୍ତି ନେଇ ବମ୍ବେସ୍ଥିତ ଏଲ୍‌ଫିନ୍‌ଷ୍ଟୋନ୍ କଲେଜରୁ ଆଇ: ଏ:, ବି: ଏ: ଏବଂ ନିଉୟର୍କରୁ ଏମ୍: ଏ:, ଲଣ୍ଡନରୁ ପି: ଏଚ୍‌ଡି:, ଡି: ଏସ୍: ସି: ଓ ବାର୍‌ଏଟ୍‌ଲ ଡିଗ୍ରୀ ଲାଭ କରିଥିଲେ । ତାପରେ ସେ ମାନବିକ ଅଧିକାର ଲାଭ କରିବା ପାଇଁ ସ୍ୱର ଉତ୍ତୋଳନ କରିଥିଲେ । ସେତେବେଳେ ଇଂରେଜ ସରକାର ଭାରତୀୟମାନଙ୍କର ନାଗରିକ ଅଧିକାର ସମ୍ପୂର୍ଣ୍ଣ ଭାବେ ଦମନ କରୁଥାଆନ୍ତି । ଜଣେ ନିଜର ସ୍ୱାଧୀନ ମତ ବ୍ୟକ୍ତ କରିପାରୁ ନଥାଏ । ଇଂରେଜମାନେ ୧୯୧୦ ମସିହାରେ ଭାରତୀୟ ସମ୍ବାଦପତ୍ର ଆଇନ୍ ପ୍ରଣୟନ କରି ସମ୍ବାଦପତ୍ରର ସ୍ୱାଧୀନତା ଅପହରଣ କରି ନେଇଥିଲେ । ଭାରତୀୟମାନେ ମଧ୍ୟ ସାଧାରଣ ସଭା କରିପାରିବେ ନାହିଁ ବୋଲି ଆଇନ୍ ପ୍ରଣୟନ କରାଯାଇଥିଲା । ଇଂରେଜମାନଙ୍କର ଏହି ସବୁ ପଦକ୍ଷେପ ଭୀମ ରାଓଙ୍କୁ ଅଧିକ ବିଦ୍ରୋହୀ କରିଦେଇଥିଲା । ଇତି ମଧ୍ୟରେ ସେ **Castes in India** ନାମରେ ଏକ ଲେଖାକୁ ପୁସ୍ତକ ଆକାରରେ ପ୍ରକାଶ କରିଥିଲେ । ତାପରେ ୧୯୧୯ରେ ମଣ୍ଟେଗୁ ଚେମସ୍‌ଫୋର୍ଡ଼ ଶାସନ ସଂସ୍କାର ପ୍ରବର୍ତ୍ତନ ପୂର୍ବରୁ ଭୀମ ରାଓ ଇଂରେଜ କର୍ତ୍ତୃପକ୍ଷଙ୍କ ନିକଟରେ ଦଳିତ ଶ୍ରେଣୀର ଲୋକମାନଙ୍କ ନିମନ୍ତେ ସ୍ୱତନ୍ତ୍ର ସ୍ଥାନ ସଂରକ୍ଷଣ କରିବା ପାଇଁ ଦାବୀ ଉପସ୍ଥାପନ କରିଥିଲେ । ଫଳରେ ପ୍ରଥମ ଥର ପାଇଁ ଦଳିତ ଶ୍ରେଣୀର ଲୋକେ ଶାସନ ସଂସଦରେ ସ୍ଥାନ ପାଇଥିଲେ । କେନ୍ଦ୍ର ଶାସନ ସଂସଦକୁ ଭାଇସ୍‌ରାଏ ମନୋନୀତ କରିଥିବା ୧୪ ଜଣ ବେସରକାରୀ ସଦସ୍ୟଙ୍କ ମଧ୍ୟରୁ ଜଣଙ୍କୁ ଦଳିତ ଶ୍ରେଣୀରୁ ନିଆଯାଇଥିଲା । ସେହିପରି ପ୍ରାଦେଶିକ ଶାସନ ସଂସଦରେ ମଧ୍ୟ ଦଳିତ ଜାତିର ଲୋକେ ସ୍ଥାନ ପାଇଥିଲେ । ପ୍ରଥମ ଥର ପାଇଁ ପ୍ରାଦେଶିକ ସଂସଦର ଡି: ଡି: ଗୋଲାପ ନାମରେ ଜଣେ ଦଳିତ ଜାତିର ବ୍ୟକ୍ତି ବମ୍ବେର ଶାସନ ବିଧାୟକ ପରିଷଦକୁ ମନୋନୀତ ହୋଇଥିଲେ । ଅସ୍ପୃଶ୍ୟତା ବିରୁଦ୍ଧରେ ଜାଗରଣ ସୃଷ୍ଟି କରିବା ପାଇଁ ୧୯୨୦ ମସିହା ଜାନୁଆରୀ ମାସ ୩୧ ତାରିଖ ଦିନ ଡକ୍ଟର ଆମ୍ବେଦକର 'ମୂକ ନାୟକ' ନାମକ ଏକ ସମ୍ବାଦପତ୍ର ସମ୍ପାଦନା କରିଥିଲେ । ଏଥିରେ ସେ ଦଳିତ ଜାତି ଲୋକଙ୍କର ଦାସତ୍ୱ, ଦାରିଦ୍ର୍ୟ, ଅଜ୍ଞତା ଓ ଅନ୍ୟାନ୍ୟ ସମସ୍ୟା ଉପରେ ଆଲୋକପାତ କରି ଗଣଚେତନା ସୃଷ୍ଟି କରିଥିଲେ । ପ୍ରଥମ ଥର ପାଇଁ ୧୯୨୦ ମସିହାରେ ମାର୍ଚ୍ଚ ୨୨ ତାରିଖ ଦିନ କୋହ୍ଲାପୁର ଅନ୍ତର୍ଗତ ମାଲଗାଓଁ ନାମକ ଏକ ସ୍ଥାନରେ ଆୟୋଜିତ ଏକ ସଭାରେ ପୌରହିତ୍ୟ କରିଥିଲେ । ପରେ ପରେ ସେ ନାଗପୁରଠାରେ ପ୍ରଥମ ସର୍ବଭାରତୀୟ ଦଳିତ ଜାତି ସମ୍ମିଳନୀରେ ପୌରହିତ୍ୟ କରି ତାଙ୍କର ଭାଷଣ ମାଧ୍ୟମରେ ଜନ ଜାଗରଣ ସୃଷ୍ଟି କରିପାରିଥିଲେ ।

୧୯୨୪ ମସିହା ପରେ ଆମ୍ବେଦକର ଗଣଚେତନା ସୃଷ୍ଟି କରିବା ଦିଗରେ ଅଧିକ ସକ୍ରିୟ ହୋଇଥିବାର ଦେଖାଯାଇଥିଲା । ସେ ବହିଷ୍କୃତ ହିତକାରିଣୀ ନାମରେ ଏକ ଅନୁଷ୍ଠାନ ଗଠନ କରି ୧୯୨୪ ମସିହା ଜୁଲାଇ ୨୦ ତାରିଖ ଦିନ ତାକୁ ଉଦ୍‌ଘାଟନ କରିଥିଲେ । ଉକ୍ତ ଅନୁଷ୍ଠାନର ଆଭିମୁଖ୍ୟ ଥିଲା ଦଳିତ ଜାତି ମଧ୍ୟରେ ଶିକ୍ଷାର ବିସ୍ତାର ଓ ସେମାନଙ୍କର ସାମାଜିକ ତଥା ଅର୍ଥନୈତିକ ଉନ୍ନତି ସାଧନ । ଡକ୍ଟର ଆମ୍ବେଦକର ସେହି ସମୟରେ ରାଜନୈତିକ ଆନ୍ଦୋଳନରେ ନିଜକୁ ସାମିଲ ନକରି ସାମାଜିକ ଜାଗରଣ ଆଣିବା ଦିଗରେ ଅଗ୍ରଣୀ ହୋଇଥିଲେ । କାରଣ ସେ ଉପଲବ୍ଧି କରିଥିଲେ ଯେ କୋଟି କୋଟି ଲୋକ ମୂକ ହୋଇ କ୍ଷୁଧା ଓ ତୃଷାରେ ଜର୍ଜରିତ ହୋଇ ସହୁଥିବା ସ୍ଥଳେ ରାଜନୈତିକ ସ୍ୱାଧୀନତାର ଅର୍ଥ କିଛି ହୁଏନା । ବରଂ ସେମାନଙ୍କର ସାମାଜିକ ଅର୍ଥନୈତିକ ଉନ୍ନତି ଆଣିପାରିଲେ ତାହା ଜାତିକୁ ଅଧିକ ସବଳ କରାଇବ । ତେଣୁ ପୂର୍ଣ୍ଣ ପ୍ରାଣରେ ସେ ସାମାଜିକ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ୧୯୨୪ ମସିହାରେ ମହାରାଷ୍ଟ୍ରର ସୋଲାପୁରଠାରେ ଦଳିତ ଜାତିର ଛାତ୍ରମାନଙ୍କ ପାଇଁ ସେ ଏକ ବିଦ୍ୟାଳୟ ସ୍ଥାପନ କରିଥିଲେ । ଡକ୍ଟର ଆମ୍ବେଦକରଙ୍କ ଦ୍ୱାରା ପ୍ରୋତ୍ସାହିତ ହୋଇ ଉକ୍ତ ବିଦ୍ୟାଳୟର ଛାତ୍ରମାନେ 'ସରସ୍ୱତୀ ବିଳାସ' ନାମକ ଏକ ପତ୍ରିକା ପ୍ରକାଶ କରିଥିଲେ । କେବଳ ସେତିକି ନୁହେଁ, ଡକ୍ଟର ଆମ୍ବେଦକର ମଧ୍ୟ ୧୯୨୭ ମସିହା ଏପ୍ରିଲ୍ ୩ ତାରିଖ ଦିନ 'ବହିଷ୍କୃତ ଭାରତ' ନାମ ଦେଇ ବମ୍ବେରେ ମରାଠୀ ଭାଷାରେ ଏକ ପାକ୍ଷିକ ପତ୍ରିକା ନିଜ ସମ୍ପାଦନାରେ ପ୍ରକାଶ କରିଥିଲେ । ଏହା ଦଳିତ ଜାତିମାନଙ୍କର ମୁଖପତ୍ର ହୋଇଥିଲା । ସେ ମଧ୍ୟ ଆନ୍ଦୋଳନ ପ୍ରତି ଯୁବକ ଯୁବତୀମାନଙ୍କୁ ଆକୃଷ୍ଟ କରାଇ ଜନଜାଗରଣ ସୃଷ୍ଟି କରିବା ଦିଗରେ ଉଦ୍ୟମ କରିଥିଲେ । ସେ ୧୯୨୭ ମସିହା ଅକ୍ଟୋବର ୨ ତାରିଖ ଦିନ ପୁନାରେ ଦଳିତ ଜାତି ଛାତ୍ରଙ୍କର ଏକ ସମାବେଶରେ ପୌରହିତ୍ୟ କରି ଦଳିତ ଛାତ୍ରଛାତ୍ରୀମାନଙ୍କୁ ଉକ୍ତ ଆନ୍ଦୋଳନରେ ଯୋଗଦେବା ପାଇଁ ଉଦ୍‌ବୋଧନ ଦେଇଥିଲେ ଏବଂ ସେହିଠାରେ ସେ ନିଷ୍ପତ୍ତି ନେଇଥିଲେ ଯେ ଯଦି ଦଳିତ ଜାତି ଲୋକଙ୍କୁ ମନ୍ଦିର ମଧ୍ୟକୁ ପ୍ରବେଶ ଓ ଅନ୍ୟ ସାମାଜିକ ଅଧିକାର ଦିଆନଯାଏ ତେବେ ସେ ସତ୍ୟାଗ୍ରହ କରିବେ । ଇତି ମଧ୍ୟରେ ସାଇମନ୍ କମିଶନ୍ ଭାରତବର୍ଷରେ ପଦାର୍ପଣ କରିଥିଲେ । ଏହି କମିଶନ୍ ନିକଟରେ ୧୮ଟି ଦଳିତ ଜାତି ସଂସଦ ଦାବୀପତ୍ର ଦେଇ ସେମାନଙ୍କ ପାଇଁ ସ୍ୱତନ୍ତ୍ର ସ୍ଥାନ ସଂରକ୍ଷଣ କରିବା ନିମନ୍ତେ ଦାବୀ ଉପସ୍ଥାପନ କରିଥିଲେ । ଆମ୍ବେଦକର ବହିଷ୍କୃତ ହିତକାରିଣୀ ସଭାକୁ ପ୍ରତିନିଧିତ୍ୱ କରି ସେହି କମିଶନ୍ ନିକଟରେ ତାଙ୍କର ଦାବୀ ଏପରି ଭାବେ ଉପସ୍ଥାପିତ କରିଥିଲେ ଯେ ସାଇମନ୍ କମିଶନ୍ ଦଳିତ ଜାତି ପାଇଁ ସଂସଦରେ ୧୦ ଗୋଟି ସ୍ଥାନ ସଂରକ୍ଷଣ କରି ରଖିବା ପାଇଁ ସୁପାରିଶ କରିଥିଲେ । ମାତ୍ର ଡକ୍ଟର ଆମ୍ବେଦକର ୧୯୨୮ରେ ଏହି ବହିଷ୍କୃତ ହିତକାରିଣୀ ସଭାକୁ ବନ୍ଦ କରି 'ଦଳିତ ଜାତି ଶିକ୍ଷା ସଂସଦ' ନାମରେ ଅନ୍ୟ ଏକ ଅନୁଷ୍ଠାନ ଉନ୍ମୋଚନ କରିଥିଲେ । ସେହିପରି

ମହାତ୍ମା ଗାନ୍ଧୀ ଦାଣ୍ଡିଯାତ୍ରା ଆରମ୍ଭ କରିବାର ଦୁଇଦିନ ପୂର୍ବରୁ ଡକ୍ଟର ଆମ୍ବେଦକର ନାସିକ୍‌ଠାରେ ଏକ ସତ୍ୟାଗ୍ରହ କମିଟି ଗଠନ କରି ମନ୍ଦିର ପ୍ରବେଶ ଆନ୍ଦୋଳନର ସୂତ୍ର ଦେଇଥିଲେ । ସେ ମଧ୍ୟ ଭାଇସ୍‌ରାଏଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ଇଂଲଣ୍ଡରେ ଆହୂତ ଗୋଲ୍‌ଟେବୁଲ୍ ବୈଠକରେ ଦଳିତ ଜାତିର ବିଭିନ୍ନ ଦାବୀ ଉପସ୍ଥାପନ କରିଥିଲେ । ସେଠାରେ ନିର୍ଭୀକତାର ସହ ସେ ପ୍ରଶ୍ନ କରିଥିଲେ 'ଇଂରେଜ ସରକାର ଅସ୍ପୃଶ୍ୟତା ନିବାରଣ ଦିଗରେ କୌଣସି ପଦକ୍ଷେପ ଗ୍ରହଣ କରିଛନ୍ତି କି? ଯଦି ଖୋଦ ସରକାରଙ୍କ ଆଗରେ ଆମେ ସର୍ବ ସାଧାରଣ କୂଅରୁ ଜଳ ଆଣିପାରୁ ନାହୁଁ, ତେବେ ସେ ସରକାର ଆମର କି ମଙ୍ଗଳ ବିଧାନ କରୁଛି ?' ତାଙ୍କର ଏହି ମନ୍ତବ୍ୟର ଫଳାଫଳ ସୁଦୂର ପ୍ରସାରୀ ହୋଇଥିଲା । ପରେ ପରେ ଇଂରେଜ କର୍ତ୍ତୃପକ୍ଷ ଏକ ଲଘୁ ସମ୍ପ୍ରଦାୟ କମିଟି ଗଠନ କରି ଦଳିତ ଜାତିମାନଙ୍କୁ ସମାନ ନାଗରିକ ଅଧିକାର ଦେବା ଦିଗରେ ଅନୁସନ୍ଧାନ କରିଥିଲେ ।

୧୯୩୨ ମସିହାରେ ଡକ୍ଟର ଆମ୍ବେଦକର ଲଣ୍ଡନରୁ ପ୍ରତ୍ୟାବର୍ତ୍ତନ କରିବା ପରେ ତାଙ୍କୁ ଭୋଟ ପ୍ରଥା କମିଟିର ଏକ ସଦସ୍ୟ ରୂପେ ମନୋନୀତ କରାଯାଇଥିଲା । ଏହି କମିଟିର ମୁଖ୍ୟ ଥିଲେ ଲର୍ଡ଼ ଲୋଥିଆନ୍ । ଏହା ବିହାର, କଲିକତା ଆଦି ସ୍ଥାନ ଭ୍ରମଣ କରିବା ଅବକାଶରେ ଡକ୍ଟର ଆମ୍ବେଦକର ତାଙ୍କର ସାମାଜିକ ବିପ୍ଳବ ବିଷୟରେ ସମସ୍ତଙ୍କୁ ଅବିହିତ କରାଇପାରିଥିଲେ । ଦଳିତ ଜାତିକୁ ବାଛନ୍ଦ କଲେ ଭାରତୀୟ ପିଙ୍ଗଳ କୋଡ଼ର ଦଣ୍ଡବିଧାନ ବ୍ୟବସ୍ଥା ଉପରେ ସେ ମଧ୍ୟ ଗୁରୁତ୍ୱ ଦେଇଥିଲେ । ସେ ପୁନର୍ବାର ଇଂଲଣ୍ଡ ଯାଇ ପ୍ରଧାନମନ୍ତ୍ରୀଙ୍କ ସହ ଦଳିତ ଜାତିମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ଇଲେକ୍ଟୋରେଟ୍ ରହିବା ସପକ୍ଷରେ ଆଲୋଚନା କରିଥିଲେ । ଫଳରେ ରାଜ୍ୟ ବିଧାନସଭାକୁ ଦଳିତ ଜାତି ନିଜ ନିଜର ପ୍ରତିନିଧି ପଠାଇବା ପାଇଁ ଅଧିକାର ପ୍ରାପ୍ତ ହୋଇଥିଲେ । ଏଥି ସହିତ କୃଷକଙ୍କର ଉନ୍ନତି କଳ୍ପେ ଡକ୍ଟର ଆମ୍ବେଦକର ଉଦ୍ୟମ କରିଥିଲେ । ସେ ହେଉଛନ୍ତି ଭାରତବର୍ଷର ପ୍ରଥମ ବ୍ୟକ୍ତି ଯିଏ କୃଷକଙ୍କ ମଧ୍ୟରେ ଥିବା ଦାସତ୍ୱ ପ୍ରଥାର ବିଲୋପ ସାଧନ ନିମନ୍ତେ ସ୍ୱର ଉତ୍ତୋଳନ କରିଥିଲେ । ୧୯୪୬ ଖ୍ରୀଷ୍ଟାବ୍ଦରେ 'ଶୁଦ୍ର କିଏ' ନାମରେ ଏକ ପୁସ୍ତକ ପ୍ରକାଶ କରି ସେଥିରେ ସେ କହିଥିଲେ ଯେ ଶୁଦ୍ରମାନେ ହେଉଛନ୍ତି କ୍ଷତ୍ରିୟ ଓ ସୂର୍ଯ୍ୟ ବଂଶୀୟ । ସେ ମଧ୍ୟ ଥିଲେ ରାଷ୍ଟ୍ରୀୟ ସମାଜବାଦର ପ୍ରବକ୍ତା । ସେ କହୁଥିଲେ ଯେ ଭାରତୀୟ ଶିଳ୍ପର ଉନ୍ନତି କେବଳ ରାଷ୍ଟ୍ରୀୟ ସମାଜବାଦ ଦ୍ୱାରା ସମ୍ଭବପର ହୋଇପାରିବ । ସ୍ୱାଧୀନତା ପ୍ରାପ୍ତି ପରେ ସେ ଭାରତବର୍ଷର ଆଇନ ମନ୍ତ୍ରୀ ରୂପେ ମନୋନୀତ ହୋଇଥିଲେ । ପ୍ରଥମ ଥର ପାଇଁ ଜଣେ ଅସ୍ପୃଶ୍ୟ ଜାତିର ବ୍ୟକ୍ତି କେନ୍ଦ୍ରୀୟ ମନ୍ତ୍ରୀମଣ୍ଡଳରେ ସ୍ଥାନ ପାଇଥିଲେ । ୧୯୪୭ ମସିହା ଅଗଷ୍ଟ ୨୯ ତାରିଖ ଦିନ କନ୍‌ଷ୍ଟିଚ୍ୟୁଏଣ୍ଟ୍ ଆସେମ୍ବ୍ଲି ତାଙ୍କୁ ସମ୍ବିଧାନ ପ୍ରଣୟନ କମିଟିର ଅଧ୍ୟକ୍ଷ ରୂପେ ନିଯୁକ୍ତ କରିଥିଲା । ଭାରତୀୟ ସମ୍ବିଧାନ ହେଉଛି ତାଙ୍କରି କୃତୀ । ସେଥିପାଇଁ ତାଙ୍କୁ ଆଧୁନିକ 'ମନୁ' ବୋଲି ଅଭିହିତ କରାଯାଇଥାଏ । ସେ ସମ୍ବିଧାନରେ ସାବାଳକ ଭୋଟ ପ୍ରଥା, ସମାନ ନାଗରିକ ଅଧିକାର, ପାର୍ଲାମେଣ୍ଟର ସାର୍ବଭୌମତ୍ୱ ଉପରେ ଗୁରୁତ୍ୱ ଦେଇଥିଲେ । ସାମ୍ୟବାଦ ଉପରେ ବିଶ୍ୱାସ କରୁଥିବା ବୌଦ୍ଧ ଧର୍ମର ସେ ଥିଲେ ମହାନ ପୃଷ୍ଠପୋଷକ । ୧୯୫୪ ମସିହାରେ ଲଣ୍ଡନରୁ ଏକ ବେତାର ଭାଷଣରେ କହିଥିଲେ ଯେ, ସେ ବୌଦ୍ଧ ଧର୍ମ ପ୍ରତି ଆକୃଷ୍ଟ ହୋଇଛନ୍ତି ତାର ତିନୋଟି ବୈଶିଷ୍ଟ୍ୟ ପାଇଁ । ସେଗୁଡ଼ିକ ହେଉଛି — ସାମ୍ୟ, ପ୍ରଜ୍ଞା ଏବଂ କରୁଣା । ଏହିପରି ଏକ ମହାନ ସଂସ୍କାରକଙ୍କର ମହା ସମାଧି ରଚିତ ହୋଇଥିଲା ୧୯୫୬ ମସିହା ଡିସେମ୍ବର ମାସ ୬ ତାରିଖ ଦିନ । ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା ଅବକାଶରେ ଜବାହରଲାଲ ନେହେରୁ ପାର୍ଲାମେଣ୍ଟରେ କହିଥିଲେ, 'ଡକ୍ଟର ଆମ୍ବେଦକର ଥିଲେ ହିନ୍ଦୁ ସମାଜରେ ରହିଥିବା ବିଭିନ୍ନ ନିଷ୍ଠୁର ପ୍ରଥା ବିରୁଦ୍ଧରେ ପ୍ରବର୍ତ୍ତିତ ବିଦ୍ରୋହର ଜଣେ ମହାନ ପ୍ରତୀକ' । ଏହିଭଳି ଭାବେ ଜୀବନ ବ୍ୟାପୀ ସଂଗ୍ରାମ କରି ଡକ୍ଟର ଆମ୍ବେଦକର ନାଗରିକ ଅଧିକାର, ସମାଜରେ ସାମ୍ୟ ଓ ସାମାଜିକ ବିପ୍ଳବ ପ୍ରବର୍ତ୍ତନ ପାଇଁ ଭାରତ ଇତିହାସରେ ଯଶସ୍ୱୀ ହୋଇ ରହିଛନ୍ତି । ବାସ୍ତବରେ ସେ ଥିଲେ ଗଣଚେତନାର ଜଣେ ଜାଗ୍ରତ ପ୍ରହରୀ ।

---

ପ୍ରଫେସର୍,
ଇତିହାସ ବିଭାଗ,
ଉତ୍କଳ ବିଶ୍ୱବିଦ୍ୟାଳୟ,
ଭୁବନେଶ୍ୱର ।




ମାନ୍ୟବର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଭୁବନେଶ୍ୱରଠାରେ କଳିଙ୍ଗ ହସ୍ପିଟାଲ୍ ଓ ଗବେଷଣା କେନ୍ଦ୍ରର ଶିଳାନ୍ୟାସ କରୁଛନ୍ତି ।

# ଓଡ଼ିଶାର ରପ୍ତାନୀ ବାଣିଜ୍ୟ

ଅଧ୍ୟାପକ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି

ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀ ବେଳକୁ କଳିଙ୍ଗମାନେ ସାତ ସମୁଦ୍ର ତେର ନଈ ପାରି ହୋଇ ଦରିଆ ପାରି ବାଣିଜ୍ୟ କରୁଥିଲେ । ନିଜ ଦେଶର ଖଦୀବସ୍ତ୍ର, ସୂକ୍ଷ୍ମ ପାଟବସ୍ତ୍ର, ମଠା, ମୃଣ୍ମୟ ଦ୍ରବ୍ୟ ସହ ବହୁ ମୂଲ୍ୟବାନ ହୀରା–ନୀଳା–ମୋତି–ମାଣିକ୍ୟ ଖଚିତ ଅଳଙ୍କାର, ସୁଗନ୍ଧପୂର୍ଣ୍ଣ ମସଲା ଦ୍ରବ୍ୟ ସବୁ ନେଇ ସୁଦୂର ବାଲି, ଜାଭା, ସୁମାତ୍ରା, ଚୀନ୍, ଗ୍ରୀସ୍, ଭିଏତ୍‌ନାମ୍, ସୁବର୍ଣ୍ଣଭୂମି ବର୍ମା, ସିଂହଳ, ଆଫ୍ରିକା, ରୋମ, ଗ୍ରୀସ୍ ଆଦି ବହୁ ବିଦେଶୀ ରାଷ୍ଟ୍ର ସହ ବହିର୍ବାଣିଜ୍ୟ ସମ୍ପାଦନ କରିବା ସଙ୍ଗେ ସଙ୍ଗେ ଧର୍ମ ସଂସ୍କୃତି ଓ ବସତି ସ୍ଥାପନ କରି ଆସିଥିବାର ବହୁଳ ପ୍ରମାଣ ରହିଛି । କାର୍ତ୍ତିକ ପୂର୍ଣ୍ଣମୀ ତିଥିରେ ନଦୀ, ସମୁଦ୍ର, ପୁଷ୍କରିଣୀ ଘାଟରେ ବାଲୁକା ପୂଜା, ବୋଇତ ବନ୍ଦାଣ, ଝୋଟି ମୁରୁଜରେ ନୌକାର ଚିତ୍ର, ବୌଦ୍ଧ ଓ ଜୈନ ସଂସ୍କୃତିରେ ଓଡ଼ିଶାର ନୌ–ବାଣିଜ୍ୟ ପରମ୍ପରାର ପ୍ରଭାବ, ସାଧବ କନ୍ୟା ତଅପୋଇର ଖୁଦୁରୁକୁଣୀ ଓଷା, ଦଶକୁମାର ଓ ସୁଦଶାବ୍ରତ କଥା, ଚୀନ୍ ପରିବ୍ରାଜକ ଫାହିୟାନ୍ ଓ ହୁଏନ୍‌ସାଙ୍ଗ ବିବରଣୀ, କୋଣାର୍କ, ଭୁବନେଶ୍ୱରାଦି ମନ୍ଦିର ଗାତ୍ରରେ ଅଙ୍କିତ ଜିରାଫ୍, ନୌ–ଯାତ୍ରା, ହସ୍ତୀ ରପ୍ତାନୀ, ଶିଳାଲିପି, ବାଣିଜ୍ୟ ଦେବୀ ମା' ତାରା, ଭୈରବୀ ଓ ମଙ୍ଗଳାଙ୍କ ବିଭିନ୍ନ କିମ୍ବଦନ୍ତୀ ଓଡ଼ିଶାରେ ସମୃଦ୍ଧ ରପ୍ତାନୀ ବାଣିଜ୍ୟ ଚାଲି ଆସୁଥିବାର ପୌରାଣିକ ଓ ଐତିହାସିକ ପ୍ରମାଣ ଦିଏ । ଓଡ଼ିଆ କବି ଉପେନ୍ଦ୍ରଭଞ୍ଜଙ୍କ "ବୈଦେହୀଶ ବିଳାସ" ଓ "ଲାବଣ୍ୟବତୀ"ରେ ନୌକା ନିର୍ମାଣ, ବାଉଁଶ ନଳୀରେ ସୀତାଙ୍କୁ ବସ୍ତ୍ର ଅର୍ପଣ ଓ ବହିତ୍ର ସିଂହଳ ଦ୍ୱୀପରେ ଲାଗିବାର ସ୍ୱଚ୍ଛଳ ବର୍ଣ୍ଣନା ରହିଛି । ଏହା ବ୍ୟତୀତ ସାରା ଭାରତବର୍ଷରେ କଳିଙ୍ଗ ହିଁ ଥିଲା ଏକମାତ୍ର ସମୃଦ୍ଧ ବହିର୍ବାଣିଜ୍ୟ ଅଞ୍ଚଳ । ଏହାର ତିନିଶତ କ୍ରୋଶ ବ୍ୟାପ୍ତ ବେଳାଭୂମି କୂଳରେ ତାମ୍ରଲିପି, ପିଥୁଣ୍ଡି, ପାଲୁରୁ, ଦନ୍ତପୁର, ଚେଲିତୋଲା, ବାରୁଆ ଆଦି ପୃଥିବୀ ବିଖ୍ୟାତ ବନ୍ଦରମାନ, ସୁନାବ୍ୟା ନଦୀ ସ୍ରୋତ, କୃଷି ଓ ଜଙ୍ଗଲ ସମ୍ପଦ ପୁରାତନ କଳିଙ୍ଗକୁ ଶ୍ରେଷ୍ଠ ବାଣିଜ୍ୟ ରାଜ୍ୟର ଗୌରବ ଆଣି ଦେଇଥିଲା । ବଙ୍ଗୋପସାଗରକୁ କଳିଙ୍ଗ ସାଗର ଏବଂ କଳିଙ୍ଗମାନଙ୍କୁ କାଳନ୍ଦୀ ବାସ୍ତା ମିଳର "ଉତ୍ତମ ବସ୍ତ୍ର" ନାମରେ ନାମିତ କରିଥିଲେ ।

## ପ୍ରାଚୁର୍ଯ୍ୟ ଓ ଦାରିଦ୍ର୍ୟ

ଆମ ରାଜ୍ୟ ଓଡ଼ିଶା ପ୍ରାକୃତିକ ସମ୍ପଦରେ ଭର୍ତ୍ତିହୋଇ ରହିଥିବା ଏକ ଅନଗ୍ରସର ଦରିଦ୍ର ରାଜ୍ୟ । ଦେଶଜାତ ସାମଗ୍ରୀକୁ ବିଦେଶକୁ ବିକ୍ରୟ କରାଇବାକୁ ରପ୍ତାନୀ କୁହାଯାଏ । ଯେଉଁ ଦେଶ ଯେତେ ରପ୍ତାନୀ ବଢ଼ାଇ ଆମଦାନୀ ପରିମାଣ କମାଇ ପାରିଲା, ସେ ଦେଶ ସେତେ ସ୍ୱାବଲମ୍ବୀ, ନଚେତ୍ ବା ବାଣିଜ୍ୟର ନିଅଣ୍ଟିଆ ସ୍ଥିତି (Trade deficity) ଦେଶ/ରାଜ୍ୟ ପକ୍ଷରେ ଅହିତକର । ସ୍ୱାଧୀନତା ପରଠାରୁ ଓଡ଼ିଶା ତା'ର ପ୍ରାକୃତିକ ସମ୍ପଦକୁ ପଶ୍ଚିମବଙ୍ଗର ହଳଦିଆ, ଆନ୍ଧ୍ରର ବିଶାଖାପାଟଣା ଓ କାକିନାଡ଼ା ବନ୍ଦର ଦେଇ ରପ୍ତାନୀ କରୁଥିଲା । ମାତ୍ର ୧୯୬୭ରୁ ପାରାଦ୍ୱୀପ ବନ୍ଦର ପ୍ରତିଷ୍ଠା ପରେ ସିଧାସଳଖ ରପ୍ତାନୀ ବାଣିଜ୍ୟ କାରବାର କଲା । ପରେ ପରେ ଓଡ଼ିଶା ସରକାରଙ୍କ ଦ୍ରୁତ ଶିଳ୍ପାୟନ ନୀତି ଦ୍ୱାରା ପ୍ରତିଷ୍ଠିତ ବୃହତ୍, ମଧ୍ୟମ ଓ କ୍ଷୁଦ୍ର ଶିଳ୍ପ କାରଖାନାରୁ ପ୍ରସ୍ତୁତ ଦ୍ରବ୍ୟ ସମୂହ, ୪୮୦ କିଃ ମିଃ ବ୍ୟାପ୍ତ ଓଡ଼ିଶାର ନିଜସ୍ୱ ସମୁଦ୍ର ସୀମା, ମରାଳମାଳିନୀ ଚିଲିକାର ଜଳ ସମ୍ପଦ, ସବୁଜ ପତ୍ର ପୁଷ୍ପ ଫଳଭରା ନିଘଞ୍ଚ ବନ୍ୟ ସମ୍ପଦ ଓ ଓଡ଼ିଶାର ପାହାଡ଼ ପର୍ବତ ଉପତ୍ୟକାରେ ଭରି ରହିଥିବା ଇନ୍ଦ୍ରନୀଳ ମଣି, ହୀରା, ବୈଦୁର୍ଯ୍ୟାଦି ମୂଲ୍ୟବାନ ପଥର ପରିବ୍ୟାପ୍ତ ଲୁହା, ମାଙ୍ଗାନିଜ୍, କ୍ରୋମାଇଟ୍ ଚୂନ ପଥରର ଭଳି ଖଣିଜ ସମ୍ପଦ ଦେଶର ଚାହିଦା ପୂରଣ କରିବା ସଙ୍ଗେ ସଙ୍ଗେ ବୈଦେଶିକ ବାଣିଜ୍ୟ କରିବା ନେଇ ସଫଳତା ହାସଲ କରିପାରିଛି ।

ଓଡ଼ିଶାର ରପ୍ତାନୀ ବାଣିଜ୍ୟ ସମ୍ପୂର୍ଣ୍ଣ ଭାବେ ଭାରତ ସରକାରଙ୍କ ନିୟନ୍ତ୍ରଣାଧୀନ । ଏଥିରୁ ରାଜ୍ୟ ସରକାରଙ୍କ ପ୍ରୋତ୍ସାହନ କରିବା ବ୍ୟତୀତ ଅନ୍ୟ କିଛି କର୍ତ୍ତବ୍ୟ ରହିନଥାଏ । ୧୯୭୭ର ରପ୍ତାନୀ ନିୟନ୍ତ୍ରଣ ନୀତି ଅନୁଯାୟୀ ମୁଖ୍ୟ ନିୟନ୍ତ୍ରକଙ୍କଠାରୁ ରପ୍ତାନୀ କରିବା ପାଇଁ ଅନୁମତି ପତ୍ର ପ୍ରାପ୍ତ ହେବା ପରେ ରପ୍ତାନୀ କରିବାକୁ ହୋଇଥାଏ । ଭାରତ ସରକାରଙ୍କ ତରଫରୁ ଦେଶ ତଥା ରାଜ୍ୟର ରପ୍ତାନୀ ପରିମାଣ ବୃଦ୍ଧି କରିବା ପାଇଁ ରପ୍ତାନୀ ସଂସ୍ଥାମାନଙ୍କୁ Cash compensatory supp. A, duty draw with import replacement license, sales tax, excise duty ଏବଂ ଅର୍ଜିତ ଆୟ ଉପରୁ ଆୟକର ଛାଡ଼ କରିବା ଆଦି ପ୍ରୋତ୍ସାହନ ଯୋଗାଇ ଦିଆଯାଇଥାଏ ।

## ଖଣିଜ ସମ୍ପଦ ରପ୍ତାନୀ

ଓଡ଼ିଶା ବହୁଳ ଭାବେ ଖଣିଜ ସମ୍ପଦ ଯଥା–ଲୁହା ପଥର, ମାଙ୍ଗାନିଜ୍, କ୍ରୋମାଇଟ୍ ପଥର ସବୁକୁ ଉତ୍ତୋଳନ କରି ବିଦେଶକୁ

ରପ୍ତାନୀ ପାଇଁ ପଠାଇଥାଏ । ମୟୂରଭଞ୍ଜ ଜିଲ୍ଲାର ବାଦାମ ପାହାଡ଼, ସୁଲେଇପାଟ, କେନ୍ଦୁଝର ଟାଲଡ଼ିହ, ବଡ଼ବିଲ୍, କିରିବୁରୁ ବୋଲାନି ଓ ସୁନ୍ଦରଗଡ଼ର ମାଲଙ୍ଗ ଟୋଲିଠାରେ ଦେଶର ଏକ ତୃତୀୟାଂଶ ଲୁହାପଥର ରହିଛି । ସେହିଭଳି ସୁନ୍ଦରଗଡ଼ର ଦମନିକରା, ପାଟମୁଣ୍ଡା, ନାକଟିପାଲି, କଳାହାଣ୍ଡିର ନିଷ୍ଠିଖାଲ, କେନ୍ଦୁଝରର ଭଦ୍ରାସାହି ଓ କୋଇରା, ବଲାଙ୍ଗୀରର ଭାନ୍ଦୁଗୁଣ୍ଡୀ ଓ କୋରାପୁଟର କୁଟିଙ୍ଗାଠାରେ ଦେଶର ପ୍ରାୟ ଅଶୀଭାଗ ମାଙ୍ଗାନିଜ ପଥର ଗଚ୍ଛିତ ରହିଛି । କ୍ରୋମାଇଟ ପଥର ଦେଶର ପ୍ରାୟ ପଞ୍ଚାନବେ ଭାଗ କଟକର ସାରୁଆବିଲ, ଜୁମିଦା, କେନ୍ଦୁଝରର ନୌସାହି, ଢେଙ୍କାନାଳର କଟପାଲଠାରେ ରହିଛି ।

ଲୁହାପଥର, ମାଙ୍ଗାନିଜ ଓ କ୍ରୋମାଇଟ ପଥର ଲୌହଇସ୍ପାତ୍ ବହୁଳ ଆବଶ୍ୟକତା ରହିଥିବା ଯୋଗୁଁ ବିଦେଶରେ ଏହାର ଚାହିଦା ବୃଦ୍ଧି ପାଉବାରେ ଲାଗିଛି । ବକ୍‌ସାଇଟ୍ ପଥର ସମ୍ବଲପୁର ଓ ବଲାଙ୍ଗୀରର ଗନ୍ଧମାର୍ଦନ ଓ କୋରାପୁଟର ପଞ୍ଚପାଟଳୀ ଓ କଳାହାଣ୍ଡିର ଗନ୍ଧଗିରି, କଥକଲ ଓ ମଣ୍ଡମାଲିଠାରେ ଦେଶର ଷାଠିଏଭାଗ ବକ୍‌ସାଇଟ୍ ମିଳେ ଓ ଏହା ଆଲୁମିନିୟମ୍ ତିଆରି କରେ । କଟକର ସୁକିନ୍ଦା ଓ ମୟୂରଭଞ୍ଜର ଶିମିଳିପାଳଠାରେ ନିକେଲ ଖଣି, ସୁନ୍ଦରଗଡ଼ ଓ ସମ୍ବଲପୁରଠାରେ ଚୂନପଥରଖଣି, ତାଳଚେର ଓ ରାମପୁରଠାରେ ପ୍ରଚୁର ରପ୍ତାନୀ ଯୋଗ୍ୟ କୋଇଲା ସମ୍ପଦ ରହିଛି । ଏହାଛଡ଼ା ଆଣବିକ ଇନ୍ଧନ ଭାବେ ଆବଶ୍ୟକ ହେଉଥିବା ଇଲେମିନାଇଟ୍, ମୋନାଜାଇଟ୍ ଓ ବିରଳ ମୃତ୍ତିକା ଓଡ଼ିଶାର ସୁଦୀର୍ଘ ବେଳାଭୂମିରୁ ମିଳିଥାଏ । ଏହିସବୁ ଖଣିଜ ସମ୍ପଦ ଓଡିଶାରେ ଲୌହଇସ୍ପାତ୍ କାରଖାନା, ଆଲୁମିନିୟମ୍ ପ୍ରକଳ୍ପ, ସିମେଣ୍ଟ ଶିଳ୍ପ, କାଚ ଓ ତାପଜ ବିଦ୍ୟୁତ୍ ଶିଳ୍ପ ପ୍ରତିଷ୍ଠା କରିବାର ଭିତ୍ତିଭୂମି ଗଢ଼ି ତୋଳିଛି । ଏହା ବ୍ୟତୀତ କୃଷିଭିତ୍ତିକ ଶିଳ୍ପ ଭାବରେ ଧାନମଞ୍ଚଳର ଚୋଟକଲ, ସୂତାକଲ, ଚିନିକାରଖାନା, କାଗଜକାରଖାନା ଆଦି ଥିବା ସଙ୍ଗେ ସଙ୍ଗେ ଉତ୍ପାଦିତ ସାମଗ୍ରୀ ଗୁଡ଼ିକ ରପ୍ତାନୀ ବୃଦ୍ଧି କରିବାରେ ସାହାଯ୍ୟ କରିଥାଏ ।

## ବୈଦିଶିକ ବଜାର ସମୀକ୍ଷା

ଓଡ଼ିଶାରୁ ରପ୍ତାନୀଦ୍ରବ୍ୟ ସମୂହକୁ ପାରମ୍ପରିକ ଓ ଅଣପାରମ୍ପରିକ ଦ୍ରବ୍ୟଭାବରେ ବିଭାଜନ କରାଯାଇ ଦେଖାଯାଇଛି ଯେ ଅଣପାରମ୍ପରିକ ଦ୍ରବ୍ୟ ରପ୍ତାନୀ ବୈଦେଶିକ ବଜାରକୁ ବେଳୁବେଳ ଅଧିକା କରାୟତ୍ତ କରିବାରେ ଲାଗିଛି । ଓଡ଼ିଶାର ରପ୍ତାନୀ ଦ୍ରବ୍ୟଗୁଡ଼ିକୁ ଜାତୀୟ ବିଭାଜନ ନୀତି ଅନୁଯାୟୀ ଆଠଟି ଭାଗରେ ବିଭକ୍ତ କରାଯାଇଛି, ସେଗୁଡ଼ିକ ହେଲା ମେଟାଲର୍ଜିକାଲ ଦ୍ରବ୍ୟ ସମୂହ, ଇଞ୍ଜିନିୟରିଂ ଓ ରାସାୟନିକ ଦ୍ରବ୍ୟ ସମୂହ, ଖଣିଜ ଦ୍ରବ୍ୟ, କୃଷି ଓ ଜଙ୍ଗଲଜାତ ଦ୍ରବ୍ୟ, ସାମୁଦ୍ରିକ ଦ୍ରବ୍ୟ,ହସ୍ତତନ୍ତ ଦ୍ରବ୍ୟ, ହସ୍ତଶିଳ୍ପ ପ୍ରଭୃତି ସାମଗ୍ରୀ ଓ ଖଦୀ ବା ବସ୍ତଶିଳ୍ପ ।

(୧) ମେଟାଲର୍ଜିକାଲ (ଧାତବ) ଦ୍ରବ୍ୟ ମଧ୍ୟରେ ସ୍ପଞ୍ଜଆଇରନ, ଫେରୋସିଲିକନ୍, ଆଲୁମିନା ଆଦିଦ୍ରବ୍ୟ ବିଶେଷତଃ ଓଡ଼ିଶାରୁ ରପ୍ତାନୀ ହୋଇ ଜାପାନ, ପଶ୍ଚିମ ଜର୍ମାନୀ, କୋରିଆ, ଯୁକ୍ତରାଜ୍ୟଲ୍ୟାଣ୍ଡ, ଇଟାଲୀ, ଫ୍ରାନ୍ସ, ତାଇୱାନ୍ ଆଦି ରାଷ୍ଟ୍ରକୁ ଯାଇଥାଏ । ଏହି ରପ୍ତାନୀ ଅନେକ ଗୁଣିତଙ୍କ ଭାବେ ବୃଦ୍ଧି ପାଉବାରେ ଲାଗିଛି । ୧୯୮୯-୯୦ ବର୍ଷ ୫୦୨ କୋଟି ଟଙ୍କାର ଦ୍ରବ୍ୟ ରପ୍ତାନୀ ହୋଇଛି ।

(୨) ଇଞ୍ଜିନିୟରି ଓ ରାସାୟନିକ ଦ୍ରବ୍ୟ ମଧ୍ୟରେ ଓଡ଼ିଶାରୁ କଳ, କଳ ମେସିନ୍‌ପାର୍ଟ, ମୋଟର, ବୈଦ୍ୟୁତିକ ଉପକରଣ, ସିମେଣ୍ଟ, ଟିଣଟଦର ପାଇପ୍, ରିଫ୍ରେକ୍ଟରସ୍ ଦ୍ରବ୍ୟ, ଅଗ୍ନି ନିରୋଧ ଇଟା ଏବଂ କୃଷି ପାଇଁ ଔଷଧ, ସାର ଆଦି ପଶ୍ଚିମ ଜର୍ମାନୀ, ଶ୍ରୀଲଙ୍କା, ବଙ୍ଗଳାଦେଶ, ନେପାଳ, କେନିଆ, ଆରବ, ଆମେରିକା, ଗୁଇନା, ଇରାନ୍ ଆଦି ଦେଶକୁ ରପ୍ତାନୀ ହୋଇଥାଏ । ଗଲାବର୍ଷ ସାଢ଼େ ସାତ କୋଟି ଟଙ୍କାର ରପ୍ତାନୀ କରିଛି ।

(୩) ଖଣିଜ ଦ୍ରବ୍ୟ ମଧ୍ୟରେ ବିଶେଷ କରି ଲୁହାପଥର, ହେମପଥରକୋଇଲା, ମାଙ୍ଗାନିଜ୍ ପଥର ଜାପାନ, ରୁମାନିଆ, ବୁଲ୍‌ଗେରିଆ, ଗୁଇନା,ୟୁଃକେଃ, ଫିଲିପାଇନସ୍, ହଂକଂ, ମାଲେସିଆ, ନେପାଳ, କୋରିଆ, ସ୍ପେନ୍, ହଙ୍ଗେରୀ, ୟୁରୋପ, ଆରବ ଦେଶ ସମୂହ ଚେକୋସ୍ଲୋଭାକିଆ, ପୋଲାଣ୍ଡ, କୁଏତ୍ ଆଦି ଦେଶ ଆମଦାନୀ କରିଥାନ୍ତି । ଗଲାବର୍ଷ ୧୬୫ କୋଟି ଟଙ୍କାର ରପ୍ତାନୀ ହୋଇଛି ।

(୪) କୃଷିଜ ଓ ଜଙ୍ଗଲଜାତ ଦ୍ରବ୍ୟ ସମୂହ କେନ୍ଦୁପତ୍ର, ଚିନାବାଦାମ୍‌ଦାନା, ଶାଳତେଲ, ଶାଳ ମଞ୍ଜି, କାଜୁଦାନା, ବସ୍ମତୀ ଚାଉଳ, ଝୋଟ, ହଳଦୀ, ତେନ୍ତୁଳି, ମସଲାଦ୍ରବ୍ୟ ଆଦି ବହୁଳଭାବେ ଜର୍ମାନୀ, ରୁମାନିଆ, ଜାପାନ, ତାଇୱାନ୍, ସ୍ୱିଡେନ୍, ହଲାଣ୍ଡ, ଶ୍ରୀଲଙ୍କା, ସୋଭିଏତ୍ ରୁଷ୍, ଗ୍ରେଟ୍‌ବ୍ରିଟେନ୍‌କୁ ରପ୍ତାନୀ କରାଯାଇଥାଏ। ଗଲାବର୍ଷ ୬ କୋଟି ଟଙ୍କା ମୂଲ୍ୟର ରପ୍ତାନୀ ହୋଇଛି ।

(୫) ସାମୁଦ୍ରିକ ଦ୍ରବ୍ୟରେ ମାଛ, ଚିଙ୍ଗୁଡ଼ି, କଇଁଚ ମାଂସ, ମୁଖ୍ୟତଃ ଜାପାନକୁ ରପ୍ତାନୀ ହୋଇଥାଏ । ଏଥିସହ ନେଦରଲ୍ୟାଣ୍ଡ, ମାଲେସିଆ, ହଲାଣ୍ଡ, ୟୁକେ, ୟୁଃ ଏସ୍ଃ ଏଃକୁ ମଧ୍ୟ ବେଳେବେଳେ ଯାଏ । ବିଦେଶରେ ଏହାର ପ୍ରଚୁର ଚାହିଦା ରହିଥିବା ଜଣାଯାଏ । "ଭାରତର ତିନିଶତାଂଶ ରପ୍ତାନୀ କରିଥାଏ ।

(୬) ହସ୍ତତନ୍ତ ବସ୍ତ୍ର ଦ୍ରବ୍ୟ ଭାବରେ ବିଛଣା ଚଦର, ତକିଆଖୋଳ, ତଉଲିଆ, ସାର୍ଟିଂ, ରଙ୍ଗୀନ୍ କନା, ଟାଇ ଇତ୍ୟାଦିର ଚାହିଦା ବହୁମାତ୍ରାରେ ବିଦେଶରେ ରହିଆସିଛି । ଏହିସବୁ ଦ୍ରବ୍ୟ ବିଶେଷକରି ୟୁକେ, ୟୁଃ ଏସ୍ଃ ଏଃ, ଜିଃ ଡ଼ିଃ ଆରଃ, ଇଟାଲି, କାନାଡ଼ା, ସିଙ୍ଗାପୁର, ଜାପାନ, ପଶ୍ଚି· ଜର୍ମାନୀ, ଅଷ୍ଟ୍ରେଲିଆ, ୟୁଗୋସ୍ଲୋଭିଆ ଓ ଦକ୍ଷିଣପୂର୍ବ ଏସିଆର ଦେଶ ସମୂହବେଲଜିଅମ, ହଂକଂ ଆଦିକୁ ରପ୍ତାନୀ ହୁଏ । ଗଲାବର୍ଷ ୧୮ କୋଟି ଟଙ୍କାର ଦ୍ରବ୍ୟ ରପ୍ତାନୀ ହୋଇଛି ।

(୭) ହସ୍ତଶିଳ୍ପ ସାମଗ୍ରୀ : ଓଡ଼ିଶାର ଶିଳ୍ପୀମାନଙ୍କର ରାଜ୍ୟ ଶିଳ୍ପକଳାର ଐଶ୍ୱର୍ଯ୍ୟ ଯୋଗୁଁ ଏହି ରାଜ୍ୟର ନାଆଁ କଳିଙ୍ଗ ରହିଥିଲା । ପିପିଲିର ଚାନ୍ଦୁଆ ଶିଳ୍ପ, ପାରଳାର ଶିଙ୍ଗଶିଳ୍ପ, କଟକର ତାରକସୀ, ପୁରୀର ପଥର ଖୋଦେଇ ଶିଳ୍ପ, ପଟ୍ଟଚିତ୍ର, ପେଣ୍ଟିଂ, ତାଳପତ୍ର ଆର୍ଟ, ମୁଖା, ସବେଇ ଘାସ ପ୍ରସ୍ତୁତ ଦ୍ରବ୍ୟ ସବୁର କଳାତ୍ମକ ଆଦର ବିଦେଶୀମାନଙ୍କର ରହିଛି । ସେ ଦୃଷ୍ଟିରୁ ଏହି କଳାପୂର୍ଣ୍ଣ ଶିଳ୍ପ ସବୁ ଫ୍ରାନ୍ସ, ଲଣ୍ଡନ୍, ହଂକଂ, ପଶ୍ଚିମ ଜର୍ମାନୀ, ଆମେରିକା, ଜାପାନ, ଡେନ୍‌ମାର୍କ, ଅଷ୍ଟ୍ରେଲିଆ,କାନାଡ଼ା ଆଦି ଦେଶକୁ ରପ୍ତାନୀ ହୋଇଥାଏ । ପ୍ରାୟ ସାତକୋଟି ଟଙ୍କାର ରପ୍ତାନୀ ହୋଇଛି ।

(୮) ଖଦୀବସ୍ତ୍ର ବା ଟେକ୍ସଟାଇଲ୍ ଦ୍ରବ୍ୟ ସମୂହରେ ସାଧାରଣତଃ କାର୍ପାସ ବସ୍ତ୍ର, ସୂତା, ବିଭିନ୍ନ ଡିଜାଇନ୍‌ର ଶାଢ଼ୀ, ସମ୍ବଲପୁରୀ, ମାଣିଆବନ୍ଧ, ବ୍ରହ୍ମପୁର ପାଟ, ସିଲ୍କ, ଟସର, ଶାଢ଼ୀ, ୟୁରୋପ, ବଙ୍ଗଳାଦେଶ, ସୋଭିଏତ୍ ରୁଷ୍, ୟୁ.କେ., ଆମେରିକା ଇଟାଲି, କାନାଡ଼ା, ହଙ୍ଗେରୀ ଆଦି ଦେଶକୁ ରପ୍ତାନୀ ହୋଇଥାଏ । ଗଲା ୧୯୮୯–୯୦ରେ ଏଥିରୁ ପ୍ରାୟ ତିନିକୋଟି ମୂଲ୍ୟର ଦ୍ରବ୍ୟ ରପ୍ତାନୀ ହୋଇପାରିଛି ।

ଓଡ଼ିଶା ପୂର୍ବଭଳି ଆଜି ତାର ବାଣିଜ୍ୟ କାରବାର ମଧ୍ୟରେ ସାରା ପୃଥିବୀର ଅଧିକାଂଶ ରାଷ୍ଟ୍ରଙ୍କ ସହ ସମ୍ପର୍କ ରକ୍ଷା କରିବା ସଙ୍ଗେ ସଙ୍ଗେ ରପ୍ତାନୀ ସୂତ୍ରରେ ବହୁ ଦେଶୀୟ ମୁଦ୍ରା ଉପାର୍ଜନ କରି ବାଣିଜ୍ୟର ଭାରସାମ୍ୟ ରକ୍ଷା କରି ଦେଶର ଅର୍ଥନୀତିକୁ ସୁଦୃଢ଼ କରିବାରେ ସାହାଯ୍ୟ କରିଛି ।

ସଂଗ୍ରହୀତ କେତେକ ପରିସଂଖ୍ୟାନ ତଥ୍ୟାବଳୀରୁ ଜଣାଯାଏ ଯେ, ୧୯୮୪–୮୫ ବର୍ଷଠାରୁ ରପ୍ତାନୀ ଦ୍ରୁତ ଗତିରେ ବୃଦ୍ଧି ପାଇବାରେ ଲାଗିଛି । ୧୯୮୪–୮୫ ବର୍ଷରେ ମୋଟ୍ ରପ୍ତାନୀ ଏକଶହ ବାରକୋଟି ଥିଲାବେଳେ ତା'ପର ବର୍ଷ ୧୧୫ କୋଟି ଏବଂ ୧୯୮୬–୮୭ ବର୍ଷକୁ ରପ୍ତାନୀ ମୂଲ୍ୟ ୧୧୭ କୋଟି ଟଙ୍କାକୁ ବୃଦ୍ଧି ପାଇଥିଲା । ୧୯୮୭–୮୮ ବର୍ଷ ବହି ବିକ୍ରୟ ଆହୁରି ୩୫ କୋଟି ଟଙ୍କାକୁ ବୃଦ୍ଧି ପାଇ ଏକଶହ ବାଉନ କୋଟି ଟଙ୍କାରେ ପହଞ୍ଚି ପୂର୍ବବର୍ଷ ତୁଳନାରେ ରେକର୍ଡ଼ କରିଥିଲା । ଏହି ବୃଦ୍ଧି ମୁଖ୍ୟତଃ ମେଟାଲଜିକାଲ୍ ଏବଂ ଇଞ୍ଜିନିୟରିଂ ଦ୍ରବ୍ୟ ରପ୍ତାନୀର ବୃଦ୍ଧିରୁ ସଙ୍ଘଟିତ ହୋଇଥିଲା । କିନ୍ତୁ ୧୯୮୮–୮୯ ବର୍ଷ ରପ୍ତାନୀ ଆଶ୍ଚର୍ଯ୍ୟଜନକ ଭାବେ ୬୪୫ କୋଟି ଟଙ୍କାରୁ କିଛି ଅଧିକାର ପହଞ୍ଚି ପ୍ରାୟତଃ ଏକା ବର୍ଷରେ ୧୯୮୪–୮୫ ବର୍ଷ ତୁଳନାରେ ସାଢ଼େ ତିନିଗୁଣ ରପ୍ତାନୀ ହୋଇଥିଲା । ଏହି ବୃଦ୍ଧି ପୂର୍ବ ବର୍ଷରେ ମେଟାଲଜିକାଲ୍ ଦ୍ରବ୍ୟରେ ସାତଗୁଣ ବୃଦ୍ଧି ଏବଂ ଖଣିଜ ପଦାର୍ଥର ତିନିଗୁଣ ବୃଦ୍ଧି ସହ, ସାମୁଦ୍ରିକ ଦ୍ରବ୍ୟର ରପ୍ତାନୀରେ ସ୍ୱ' ଦେଢ଼ଗୁଣ ବୃଦ୍ଧି ହୋଇଥିଲା । ଏହି ପ୍ରକ୍ରିୟାରୁ ଜଣାଯାଉଛି ଯେ, ବିଦେଶରେ ଆମ ଦେଶ ତିଆରି ଧାତବ ଦ୍ରବ୍ୟ, କଳକବ୍ଜା, ବିଦ୍ୟୁତ୍ ଉପକରଣ, ମାଛ ଓ ଚିଙ୍ଗୁଡ଼ି ଦ୍ରବ୍ୟ ସମୂହର ଚାହିଦା ବହୁ ଗୁଣରେ ଗୁଣିତ ହୋଇଛି । ଏହା ଅବଶ୍ୟ ଆମ ରାଜ୍ୟ ରପ୍ତାନୀ ପାଇଁ ଏକ ଶୁଭ ସୂଚନା । ଏ ପର୍ଯ୍ୟନ୍ତ ପ୍ରାପ୍ତ ୧୯୮୯–୯୦ ବର୍ଷର ଅପୂର୍ଣ୍ଣାଙ୍ଗ ତଥ୍ୟରୁ ଦେଖାଯାଇଛି ଯେ, ରପ୍ତାନୀ ପ୍ରାୟ ୭୦୦ କୋଟି ଟଙ୍କାରେ ପହଞ୍ଚିଯାଇଛି । ଏହା ପୂର୍ବ ବର୍ଷଠାରୁ ଏକଶହ ସତାଇଶ ଭାଗ ଅଧିକ । ହୁଏତ ପୂର୍ଣ୍ଣାଙ୍ଗ ତଥ୍ୟ ନିଶ୍ଚିତ ଭାବେ ୮୦୦ କୋଟି ଟଙ୍କାରେ ପହଞ୍ଚିଯାଇପାରେ । ଏ ବର୍ଷ ମଧ୍ୟ ମେଟାଲଜିକାଲ୍, ଇଞ୍ଜିନିୟରିଂ ଦ୍ରବ୍ୟର ବୈଦେଶିକ ବିକ୍ରି ବହୁଳ ଭାବେ ବୃଦ୍ଧି ଘଟିଛି ।

୧୯୮୮–୮୯ ଭାରତୀୟ ରପ୍ତାନୀର ସର୍ବମୋଟ ପରିମାଣ ଥିଲା ୨୦,୨୯୫ କୋଟି ତା' ତୁଳନାରେ ଓଡ଼ିଶା କେବଳ ୬୪୫.୭୦ କୋଟି ଟଙ୍କାର ବ୍ୟବସାୟ କରି ଜାତୀୟ ହାରର ଶତକଡ଼ା ୨.୬ ଭାଗ ପୂରଣ କରିବାରେ ସମର୍ଥ ହୋଇଛି । ସେ ଯାହାହେଉ, ଓଡ଼ିଶାର ରପ୍ତାନୀ ଭବିଷ୍ୟତ ଏକ ସୁସ୍ଥ ସୁଦୃଢ଼ ପ୍ରଗତି ରେଖା ଗଣନା କରି ଜାତୀୟ ହାରରେ ଅନ୍ୟୂନ ତିନି ଶତାଂଶ ଭାଗ ନେବାରେ ସଫଳ ହୋଇଛି ।

ଓଡ଼ିଶାର ରପ୍ତାନୀ ବ୍ୟବସାୟକୁ ତ୍ୱରାନ୍ୱିତ କରିବା ପାଇଁ ଏ ଯାବତ୍ ଏକଶହ ବାରଟି ରପ୍ତାନୀ ସଂସ୍ଥା ମୁଖ୍ୟ ନିୟନ୍ତ୍ରକଙ୍କଠାରେ ତାଲିକାଭୁକ୍ତ ହୋଇଛନ୍ତି । ସେଥି ମଧ୍ୟରୁ କୃଷି ଓ ବନଜ ଦ୍ରବ୍ୟ ରପ୍ତାନୀରେ ୯ଟି, ଇଞ୍ଜିନିୟରିଂ ଦ୍ରବ୍ୟ ପାଇଁ ୩୮ଟି, ହସ୍ତ ଶିଳ୍ପ ପାଇଁ ୬ଟି, ହସ୍ତ ତନ୍ତ ଦ୍ରବ୍ୟର ରପ୍ତାନୀ ପାଇଁ ୯ଟି, ସାମୁଦ୍ରିକ ଦ୍ରବ୍ୟ ପାଇଁ ୩୩ଟି, ଖଣିଜ ଦ୍ରବ୍ୟ ପାଇଁ ୩ଟି ଏବଂ ବସ୍ତ୍ର ଶିଳ୍ପରେ ୫ଟି, ମେଟାଲଜିକାଲ ଦ୍ରବ୍ୟ ପାଇଁ ୯ଟି ସଂସ୍ଥା ରପ୍ତାନୀ କରୁଛନ୍ତି । ଏହି ରପ୍ତାନୀ ସଂସ୍ଥାଗୁଡ଼ିକ ସରକାରୀ, ବେସରକାରୀ, କମ୍ପାନୀ ବା କର୍ପୋରେସନ୍ ଭାବେ ଗଠନ କରାଯାଇଛି । ଓଡ଼ିଶାର ପ୍ରମୁଖ ରପ୍ତାନୀ ମୁଖ୍ୟ ନିଗମଗୁଡ଼ିକ ହେଲା :

(୧) ଓଡ଼ିଶା କାଜୁ ଉନ୍ନୟନ ନିଗମ ।

(୨) ଓଡ଼ିଶା ରାଜ୍ୟ ବନ ନିଗମ ।

(୩) Tribal Development Co-operative Corporation.

(୪) ଓଡ଼ିଶା ରାଜ୍ୟ ଶିଳ୍ପ ଉନ୍ନୟନ ନିଗମ ।

(୫) ଓଡ଼ିଶା କ୍ଷୁଦ୍ର ଶିଳ୍ପ ନିଗମ ।

(୬) ଓଡ଼ିଶା ରାଜ୍ୟ ହସ୍ତ ତନ୍ତ ଉନ୍ନୟନ ନିଗମ ।

(୭) ଓଡ଼ିଶା ମେରିଟାଇମ୍ ଆଣ୍ଡ୍ ଚିଲିକା ଏରିଆ ଉନ୍ନୟନ ନିଗମ ।

(୮) ଓଡ଼ିଶା ଖଣି ନିଗମ ସହ ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟ୍ ।

ରାଜଗାଙ୍ଗପୁର ଓ ବରଗଡ଼ର ସିମେଣ୍ଟ କାରଖାନା, ତିବତୀୟ ହସ୍ତ ଶିଳ୍ପ ସମବାୟ ସମିତି, ଚନ୍ଦ୍ରଗିରି (ଗଞ୍ଜାମ), ନାଲ୍‌କୋ, ଓ: ଟି: ଏମ୍:, ଟେକ୍ସଟାଇଲ ନିର୍ଦ୍ଦେଶାଳୟ, ଆସିକା ଓ ଜୟପୁର ଚିନି କାରଖାନା, କାଗଜ କଳ, ରାୟଗଡ଼ା, ତେଲ ଶିଳ୍ପ କାରଖାନା ଇତ୍ୟାଦି ରପ୍ତାନୀକାରୀ ସଂସ୍ଥା ଭାବେ ରହିଛନ୍ତି ।

ଓଡ଼ିଶା ଶିଳ୍ପ ଉନ୍ନୟନ ନିଗମର କଳିଙ୍ଗ ଆଇରନ୍ ୱାର୍କସ, ହୀରାକୁଦ ଇଣ୍ଡଷ୍ଟ୍ରିଆଲ୍ ୱାର୍କସ୍, ହୀରା କେବଲ୍, ରି–ରୋଲିଂ ମିଲ୍, ହୀରା ସିମେଣ୍ଟ ୱାର୍କସ୍, ଫେରୋକ୍ରୋମ୍ ପ୍ଲାଣ୍ଟ, କଳିଙ୍ଗ ଆଇରନ୍ ୱାର୍କସ୍ ଜରିଆରେ ୧୯୬୮–୬୯ରୁ ଜାପାନ, ଅଷ୍ଟ୍ରେଲିଆ, ଫିଲିପାଇନ୍‌ସ । କୋରିଆ, ରୁମାନିଆ, ଇରାକ୍, ବଙ୍ଗଳାଦେଶକୁ ରପ୍ତାନୀ କରି ୨୨ କୋଟି ଟଙ୍କାରୁ ଊର୍ଦ୍ଧ୍ୱ ବୈଦେଶିକ ମୁଦ୍ରା ଅର୍ଜନ କରିପାରିଛି । ସେହିଭଳି ଓଡ଼ିଶା ହସ୍ତତନ୍ତ ନିଗମ ମାତ୍ର ଏକଲକ୍ଷ ଟଙ୍କାର ଦ୍ରବ୍ୟ ସ୍ପେନ୍ ଓ ଜାପାନକୁ ୧୯୮୭–୮୮ରେ ରପ୍ତାନୀ କରିଛି ।

ଓଡ଼ିଶାରେ ରପ୍ତାନୀ ବାଣିଜ୍ୟର ବିକାଶ ପାଇଁ ଉପଯୁକ୍ତ ଓ ସକ୍ରିୟ ପୃଷ୍ଠଭୂମି ରହିଥିଲେ ମଧ୍ୟ ଆବଶ୍ୟକୀୟ ଭିତ୍ତିଭୂମି (Infrastructure)ର ଅଭାବ ଯୋଗୁଁ ପୂର୍ଣ୍ଣ ବିକଶିତ ହେବାରେ ବାଧା ଆସୁଛି । କିନ୍ତୁ ରାଜ୍ୟ ସରକାର ଓ **Export Promotion Marketing** ନିର୍ଦ୍ଦେଶାଳୟର ପ୍ରଚେଷ୍ଟା ଫଳରେ ରପ୍ତାନୀ ଭିତ୍ତିକ ପରିବହନ ବ୍ୟବସ୍ଥାର ଉନ୍ନତି ପାଇଁ ଭୁବନେଶ୍ୱର ବିମାନ ବନ୍ଦରକୁ ଆନ୍ତର୍ଦେଶୀୟ ବିମାନ ବନ୍ଦର ଭାବେ ୧୯୮୯ରୁ ଘୋଷଣା, ରେଳପଥ ଓ ସ୍ଥଳପଥ ଜରିଆରେ ପାରାଦ୍ୱୀପ

ଓ ଗୋପାଳପୁର ବନ୍ଦର ଦ୍ୱାରା ସଂଯୋଗର ପ୍ରଚେଷ୍ଟା, ଅଧୁନା ପଣ୍ୟ ବସ୍ତୁ ନିର୍ମାଣ, ରପ୍ତାନୀ ସହାୟକ ବିଭିନ୍ନ କାଗଜପତ୍ର ଦଲିଲ (Document) ଯୋଗାଣର ସୁବିଧା, ବିଦେଶ ବଜାରର ସୁବିଧା ସର୍ବେକ୍ଷଣ ଓ ଯୋଗାଣ, F. O. B., C. I. F. ଇତ୍ୟାଦି ମୂଲ୍ୟ ନିରୂପଣ ଓ ରପ୍ତାନୀ ଦ୍ରବ୍ୟ ପ୍ୟାକିଂ ଓ ପ୍ରେରଣରେ ସହାୟତା, ବିଦେଶ ଓ ଦେଶରେ ଅନୁଷ୍ଠିତ ବିଭିନ୍ନ ବାଣିଜ୍ୟ ମେଳା, ପ୍ରଦର୍ଶନୀର ସମ୍ବାଦ ଓ ଯୋଗ ଦେବା ପାଇଁ ସାହାଯ୍ୟ ପ୍ରଦାନ, ରପ୍ତାନୀ ଆଗ୍ରହୀ ବ୍ୟକ୍ତି ବା ସଂସ୍ଥାକୁ ତାଲିମ ଦେବା, ରପ୍ତାନୀ ନୀତି ନିୟମର ପର୍ଯ୍ୟାଲୋଚନା ସହ ରାଜ୍ୟର ରପ୍ତାନୀଯୋଗ୍ୟ ଦ୍ରବ୍ୟର ରପ୍ତାନୀ ଆଗ୍ରହ ସୃଷ୍ଟି କରିବାଦି କାର୍ଯ୍ୟ କରିଥାଏ । ଏହା ସହ ପ୍ରତିବର୍ଷ ରାଜ୍ୟର ବିଭିନ୍ନ ଦ୍ରବ୍ୟ ରପ୍ତାନୀ କ୍ଷେତ୍ରରେ ଶ୍ରେଷ୍ଠ ରପ୍ତାନୀ ସଂସ୍ଥାକୁ ପୁରସ୍କୃତ କରିବାର ଧାରା ଚାଲିଆସୁଛି । ଏହି ନିର୍ଦ୍ଦେଶାଳୟ ଓ ରାଜ୍ୟ ସରକାରଙ୍କ ଚେଷ୍ଟା ଫଳରେ ୧୯୭୮-୭୯ରୁ କଟକଠାରେ :

(୧) ଏକ Assistant Chief Controller of Imports and Exports କାର୍ଯ୍ୟାଳୟ ।

(୨) Marine Products Export Development Authority କୋଚିନ୍‌ଙ୍କ ଏକ ଶାଖା ଅଫିସ୍ ।

(୩) Export Credit Guarenteeଙ୍କ ଏକ ଉପଆଞ୍ଚଳିକ ଶାଖା ଅଫିସ୍ ଖୋଲାଯାଇଛି ।

(୪) Trade Development Authority and Engineering Export Promotion Councilର ଏକ ଶାଖା ଅଫିସ୍ ଓଡ଼ିଶାରେ ଖୋଲିବା ପାଇଁ ସ୍ୱୀକୃତି ମିଳିସାରିଛି । ଏହା ବ୍ୟତୀତ ଅନ୍ୟ ସମସ୍ତ Export Promotion Council and Commodity Boardର ଶାଖା ଅଫିସ୍‌ମାନ ଖୋଲିବା ପାଇଁ ଭାରତ ସରକାରଙ୍କଠାରେ ଦାବୀ କରାଯାଇଛି ।

ମନେହୁଏ ଆମ ରାଜ୍ୟ ଓଡ଼ିଶା ଆଗାମୀ ଦିନମାନଙ୍କରେ ପର୍ଯ୍ୟାପ୍ତ ରପ୍ତାନୀ ବୃଦ୍ଧି କରି ତା'ର ଅର୍ଥନୈତିକ ସ୍ଥିତିକୁ ଦୃଢ଼ କରିବା ସଙ୍ଗେ ସଙ୍ଗେ ପ୍ରାଚୀନ କଳିଙ୍ଗର ଲୁପ୍ତ ବହି ବାଣିଜ୍ୟ ପରମ୍ପରାର ଗୌରବ ଓ ସମୃଦ୍ଧିକୁ ଅଚିରେ ଫେରାଇ ଆଣିପାରିବ ।



ପୁରୀ ଜିଲ୍ଲା କ୍ରୀଡ଼ା ପ୍ରତିଯୋଗିତା ଅବସରରେ ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନଙ୍କ ଅଭିବାଦନ ଗ୍ରହଣ ।



ଥାଣ୍ଡା ନିକଟବର୍ତ୍ତୀ କୋଟିନାଡ଼ାଠାରେ ଆୟୋଜିତ ଏକ ସାଧାରଣ ସଭାରେ ପ୍ରଧାନମନ୍ତ୍ରୀ ଶ୍ରୀ ଚନ୍ଦ୍ରଶେଖରଙ୍କ ଉଦ୍‌ବୋଧନ ।



କଳାହାଣ୍ଡି ଜିଲାର ଜିଲାସ୍ତରୀୟ ଅଧିକାରୀମାନଙ୍କ ସମୀକ୍ଷା ସଭାରେ ବିଭିନ୍ନ ଅସୁବିଧା ଓ ପ୍ରତିବନ୍ଧକ ବିଷୟମାନ ଜିଲ୍ଲାପାଳ ଏମ୍‌. ରାଜାମଣି ମୁଖ୍ୟମନ୍ତ୍ରୀଙ୍କ ନିକଟରେ ଉପସ୍ଥାପନ କରୁଛନ୍ତି ।



ଶିକ୍ଷା ମନ୍ତ୍ରୀ ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀ ସୁଭଦ୍ରା ମହତାବ ବାଳିକା ଉଚ୍ଚ ବିଦ୍ୟାଳୟର ରୌପ୍ୟ ଜୟନ୍ତୀ ଉତ୍ସବରେ ଉଦ୍‌ବୋଧନ ଦେଉଛନ୍ତି । ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ମଞ୍ଚାସୀନ ।




ମତ୍ସ୍ୟ ଓ ପଶୁପାଳନ ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର ଓ. ଏସ୍. ଏ. ପି. ସପ୍ତମ ପୋଲିସ୍ ବାହିନୀର ବାର୍ଷିକ ଉତ୍ସବରେ ଉଦ୍‌ବୋଧନ ଦେଉଛନ୍ତି ।



ଦକ୍ଷିଣ ପୂର୍ବାଞ୍ଚଳ କୋଲ୍ ଫିଲଡ୍ ବିଲାସପୁର୍‌ର ମୁଖ୍ୟ ପରିଚାଳନା ନିର୍ଦ୍ଦେଶକଙ୍କ ସହ ମୁଖ୍ୟମନ୍ତ୍ରୀଙ୍କ ଆଲୋଚନା । ଆଲୋଚନାରେ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ଓ ଅର୍ଥ ମନ୍ତ୍ରୀ ଶ୍ରୀ ବେଦପ୍ରକାଶ ଅଗ୍ରୱାଲ୍ ଉପସ୍ଥିତ ଥିଲେ ।



ସେଚ ଓ ସଂସଦୀୟ ମନ୍ତ୍ରୀ ଶ୍ରୀ ବିଜୟ ମହାପାତ୍ର ସଚିବାଳୟରେ ସାମ୍ବାଦିକ ସମ୍ମିଳନୀରେ ଉଦ୍‌ବୋଧନ ଦେଉଛନ୍ତି ।



ସୂଚନା ଓ ଲୋକ ସମ୍ପର୍କ ବିଭାଗର ଯନ୍ତ୍ରୋପଯୁକ୍ତିକ ପରାମର୍ଶଦାତା କମିଟିର ଏକ ବୈଠକରେ ମନ୍ତ୍ରୀ ଶ୍ରୀ ଶରତ କୁମାର କରଙ୍କ ଅଧ୍ୟକ୍ଷତା ।



ଉଠା ଜଳସେଚନ ପ୍ରକଳ୍ପ ଉଦ୍‌ଘାଟନ କରିବା ନିମନ୍ତେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଆଗମନ । ନିକଟରେ ସ୍ଥାନୀୟ ବିଧାୟକ ଶ୍ରୀ ତଥାଗତ ଶତପଥୀ ଓ କାମାକ୍ଷାନଗରର ବିଧାୟକ ଶ୍ରୀ ପ୍ରସନ୍ନ ପଟ୍ଟନାୟକ ।




ଢେଙ୍କାନାଳ ଜିଲ୍ଲା ବେଗୁନିଆପାଳଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଠା ଜଳସେଚନ ପ୍ରକଳ୍ପ ଉଦ୍‌ଘାଟନ କରୁଛନ୍ତି ।




ରାଜ୍ୟପାଳ ମାନ୍ୟବର ଶ୍ରୀ ଯଜ୍ଞଦତ୍ତ ଶର୍ମା କଳାହାଣ୍ଡି ଜିଲ୍ଲା ଭବାନୀପାଟଣାଠାରେ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥାର ନୂତନ କାର୍ଯ୍ୟାଳୟ ଗୃହ ଶୁଭ ଉଦ୍‌ଘାଟନ କରୁଛନ୍ତି ।




ରାଜ୍ୟପାଳ ମାନ୍ୟବର ଶ୍ରୀ ଶର୍ମା କଳାହାଣ୍ଡି ଜିଲ୍ଲା ଥୁଆମୂଳ-ରାମପୁର ପାର୍ବତ୍ୟାଞ୍ଚଳରେ ପୋଡୁ ଚାଷ ନିରାକରଣ ଯୋଜନାରେ ଆଦିବାସୀ ଚାଷୀଙ୍କ ପାଇଁ ଉଠା ଜଳସେଚନ ଯୋଜନାର ଶୁଭ ଉଦ୍‌ଘାଟନ କରୁଛନ୍ତି ।

ଢେଙ୍କାନାଳ ଜିଲ୍ଲା ବଣିହାଠାରେ ଅନୁଷ୍ଠିତ ଏକ ସାଧାରଣ ସଭାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଉଦ୍‌ବୋଧନ ।

ଲଳିତଗିରିଠାରେ ବୈଷ୍ଣବ ପାଣି ଜୟନ୍ତୀ ଉଦ୍‌ଯାପନ ଉତ୍ସବର ସମାବେଶରେ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କରଙ୍କ ଉଦ୍‌ବୋଧନ ।

# ସମ୍ପ୍ରସାରିତ ମନ୍ତ୍ରିମଣ୍ଡଳର ନୂତନ ସଦସ୍ୟବୃନ୍ଦ

ଶ୍ରୀ ପ୍ରସନ୍ନ ଆଚାର୍ଯ୍ୟ

ଶ୍ରୀ ଯଜ୍ଞଦତ୍ତ ଶର୍ମା, ରାଜ୍ୟପାଳ

ଶ୍ରୀ ବିଜୁ ପଟ୍ଟନାୟକ, ମୁଖ୍ୟମନ୍ତ୍ରୀ

ଶ୍ରୀ ଅନଙ୍ଗ ଉଦୟ ସିଂହଦେଓ

ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର

ସୟଦ୍ ମୁସ୍ତାଫିଜ୍ ଅହମ୍ମଦ

ଶ୍ରୀ ଦିଲ୍ଲୀପ ରାୟ୍

ଶ୍ରୀ କିରଣ ଚନ୍ଦ୍ର ସିଂହଦେଓ

ଶ୍ରୀ ପଦ୍ମନାଭ ବେହେରା

ଶ୍ରୀ ବୈରାଗୀ ଜେନା

ଶ୍ରୀ ପ୍ରସନ୍ନ କୁମାର ପାଟଶାଣୀ

ଶ୍ରୀ ବେଦପ୍ରକାଶ ଅଗ୍ରୱାଲା

ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼େଇ

ଶ୍ରୀ କାଳିନ୍ଦୀ ଚରଣ ବେହେରା

ଶ୍ରୀ ତ୍ରିନାଥ ନାୟକ

ଶ୍ରୀ ରଘୁନାଥ ହେମ୍ବ୍ରମ୍

ଶ୍ରୀ ବସନ୍ତ କୁମାର ମହାନନ୍ଦ



'କଟକ ସହର ବରଷ ହଜାର' ଉତ୍ସବ ଉପଲକ୍ଷେ ମୁଦ୍ରିତ ଡାକ ଟିକଟମାନ କଳା ବିକାଶ କେନ୍ଦ୍ରରେ ଆୟୋଜିତ ଏକ ସମାରୋହରେ
ମାନ୍ୟବର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଉନ୍ମୋଚନ କରୁଛନ୍ତି । ଭାରତର ପ୍ରଧାନ ବିଚାରପତି ମାନ୍ୟବର ଶ୍ରୀ ରଙ୍ଗନାଥ ମିଶ୍ର,
ସ୍ୱାସ୍ଥ୍ୟ ମନ୍ତ୍ରୀ ସଇଦ୍ ମୁସ୍ତାଫିଜ୍ ଅହମ୍ମଦ, ଅବସରପ୍ରାପ୍ତ ବିଚାରପତି ଶ୍ରୀ ହରିହର ମହାପାତ୍ର ଏବଂ
ଡକ୍ଟର ସଦାଶିବ ମିଶ୍ର ମଞ୍ଚରେ ଉପସ୍ଥିତ ।



ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଢେଙ୍କାନାଳ ମହିଳା ମହାବିଦ୍ୟାଳୟର ୟୁନିୟନ ଉତ୍ସବ ପ୍ରଦୀପ ଜାଳି
ଉଦ୍‌ଘାଟନ କରୁଛନ୍ତି ।

# ମଧୁବାବୁଙ୍କ ଜୀବନାଦର୍ଶରୁ ଏକ ଝଲକ

ଶ୍ରୀ କ୍ଷୀରୋଦ ପ୍ରସାଦ ମହାନ୍ତି

ପୁଣ୍ୟପ୍ରାଣ ଉତ୍କଳଗୌରବ ମଧୁସୂଦନଙ୍କ ବିଷୟରେ ଆମେ ଅନେକ କଥା ପଢ଼ି ଆସୁଛୁ, ଅନେକ ବିଷୟ ଲେଖି ଆସୁଛୁ ଓ ସଭା ସମିତିମାନଙ୍କରେ ଓଜସ୍ୱୀ ବକ୍ତୃତାମାନ ଦେଇ ତାଙ୍କ ଜୀବନ ଚରିତ ଉପରେ ଆଲୋକପାତ କରିବା ସଙ୍ଗେ ସଙ୍ଗେ ତାଙ୍କ ଜୀବନାଦର୍ଶ କିପରି ଅନ୍ୟମାନଙ୍କୁ ପ୍ରଭାବିତ କରିପାରିବ ସେଥିପାଇଁ ନାନାଭାବେ ଉଦ୍ୟମ କରୁଛୁ । ପ୍ରଥମ ଓଡ଼ିଆ ସ୍ନାତକ, ପ୍ରଥମ ଓଡ଼ିଆ ଏମ୍‌: ଏ:, ବି: ଏଲ୍‌: ପାଶ୍ କରିଥିବା ଓକିଲ, ବିହାର ଓଡ଼ିଶା ପ୍ରଦେଶର ପ୍ରଥମ ଓଡ଼ିଆ ମନ୍ତ୍ରୀ, ପ୍ରଥମ ଓଡ଼ିଆ ବିଲାତ ଯାତ୍ରୀ, ପ୍ରଥମ ଓଡ଼ିଆ ଶିଳ୍ପୋଦ୍ୟୋଗୀ, ପ୍ରଥମ ଓଡ଼ିଆ ସି: ଆଇ: ଇ: ଉପାଧିଧାରୀ, ଉତ୍କଳ ସମ୍ମିଳନୀର ପ୍ରାଣ ପ୍ରତିଷ୍ଠାତା ଇତ୍ୟାଦି ହିସାବରେ ମଧୁବାବୁଙ୍କୁ ସମ୍ମାନ ପ୍ରଦର୍ଶନ କରି ଆସୁଛୁ । କିନ୍ତୁ କଥାଟି ହେଲା ଆମେ ତାଙ୍କର ଜୀବନାଦର୍ଶ, ସଦ୍‌ଗୁଣଗୁଡ଼ିକୁ କେତେ ପରିମାଣରେ ଆମର ବ୍ୟକ୍ତିଗତ ତଥା ସାମୁହିକ ଜୀବନରେ ପରିପ୍ରକାଶ କରିପାରିଛେ । ଏ ପ୍ରଶ୍ନ ଏକାଧାରରେ କୌଣସି ଏକ ବ୍ୟକ୍ତି ବିଶେଷଙ୍କୁ ନୁହେଁ, ସମସ୍ତ ଓଡ଼ିଆ ଭାଇମାନଙ୍କୁ ସମୂହ ଭାବରେ ପଚରାଯାଏ ।

ସେହି ମହାମାନବଙ୍କ ଜୀବନ ସହ ସଂଶ୍ଳିଷ୍ଟ ଘଟଣା ପ୍ରବାହ ମଧ୍ୟରୁ ଗୋଟିକର ଝଲକ ଏଠାରେ ଦର୍ଶାଯାଇଛି, ଯାହା ତାଙ୍କର ବଦାନ୍ୟ ଓ ପରୋପକାର ଧର୍ମର ସ୍ପଷ୍ଟ ଚିତ୍ର ପ୍ରଦାନ କରିଥାଏ । ୧୯୦୭ ମସିହା କଥା । ସେ ବର୍ଷ ଅଗଷ୍ଟ ମାସରେ ପ୍ରବଳ ଧରଣର ବର୍ଷା ହେଲା । ଏହା ଦୀର୍ଘ ୯ଟି ଦିନ ପର୍ଯ୍ୟନ୍ତ ଅନବରତ ଲାଗି ରହିବା ଫଳରେ ଓଡ଼ିଶାର ମହାନଦୀ, ବ୍ରାହ୍ମଣୀ, ବୈତରଣୀ ପ୍ରଭୃତି ବଡ଼ ବଡ଼ ନଦୀମାନଙ୍କରେ ଭୀଷଣ ବନ୍ୟା ଦେଖାଦେଲା । ଏକ ସଙ୍ଗରେ ଏ ସବୁ ନଦୀ ବୃଦ୍ଧି ପାଇବାରୁ ଆଶଙ୍କାଜନକ ପରିସ୍ଥିତି ଉପୁଜିଲା । ବନ୍ୟା ଫଳରେ ବହୁ ଘରଦ୍ୱାର ଭାଙ୍ଗିଗଲା । ବହୁ ମନୁଷ୍ୟ, ଗୋରୁ, ଘୋଡ଼ା, ପଶୁପକ୍ଷୀ ନଷ୍ଟ ହେଲେ । ସରକାରୀ ପ୍ରତିବେଦନ ଅନୁଯାୟୀ ୪୬୦ ବର୍ଗ ମାଇଲ ଅଞ୍ଚଳ ଓ ୩ ଲକ୍ଷ ପର୍ଯ୍ୟନ୍ତ ଲୋକ ହଇଜାରେ ମୃତ୍ୟୁବରଣ କଲେ । ବନ୍ୟା ପରେ ଆଉ ବର୍ଷା ନହେବାରୁ ଫସଲ ଏକାବେଳକେ ନଷ୍ଟ ହୋଇଗଲା । ଅକ୍ଟୋବର ମାସ ଭିତରେ ଯେଉଁ ୦·୭୬ ଇଞ୍ଚ ବର୍ଷା ହେଲା ତାହା ମଧ୍ୟ ଫସଲ ପାଇଁ ଅନୁକୂଳ ହେଲା ନାହିଁ । ତେଣୁ ବନ୍ୟା ପରେ କଟକ ଓ ବାଲେଶ୍ୱର ଜିଲ୍ଲାରେ ଭୀଷଣ ଦୁର୍ଭିକ୍ଷ ଦେଖାଦେଲା । ଏହି ଦୁର୍ଭିକ୍ଷର ମର୍ମନ୍ତୁଦ ଦୃଶ୍ୟକୁ ସ୍ୱଚକ୍ଷୁରେ ଦେଖିଯିବା ପାଇଁ, ବିଲାତ ଜନସାଧାରଣ ଓ ସରକାରଙ୍କ ଦୃଷ୍ଟି ଆକର୍ଷଣ ପାଇଁ ବିଲାତ ପାର୍ଲାମେଣ୍ଟର ସଭ୍ୟ ରୁଥରଫୋର୍ଡ଼ (Rutherford) ଓ ବିଶିଷ୍ଟ ଇଂରେଜ ସମ୍ବାଦପତ୍ର ଗ୍ଲାସ୍‌ଗୋ ହେରାଲ୍‌ଡ (Glasgow Herald)ର ସାମ୍ବାଦିକ ହେନେରୀ ଡବ୍ଲ୍ୟୁ ନେଭିନ୍‌ସନ୍ (Henry W. Nevinson)ଙ୍କୁ ମଧୁବାବୁ ଅନୁରୋଧ କଲେ । ତାଙ୍କ ଅନୁରୋଧ ରକ୍ଷା କରି ସେ (ନେଭିନ୍‌ସନ୍) ୧୯୦୭ ମସିହାରେ ଶରତ ଋତୁରେ ଓଡ଼ିଶାରେ ପଦାର୍ପଣ କଲେ । ବିଭିନ୍ନ ସ୍ଥାନ ଭ୍ରମଣ କରି ଦୁର୍ଭିକ୍ଷର ଯେଉଁ କରାଳ ଚିତ୍ର ଅଙ୍କନ କଲେ ତାହା ତାଙ୍କର 'The New Spirit in India' ନାମକ ପୁସ୍ତକରେ ଆସ ପ୍ରକାଶ କଲା । ମଧୁବାବୁଙ୍କ ବଳିଷ୍ଠ ବ୍ୟକ୍ତିତ୍ୱ ସମ୍ପର୍କରେ ସେ ଲେଖିଥିଲେ :

"ମୁଁ ନିଜେ ମଧୁବାବୁଙ୍କ ସହ ବୁଲିଥିଲି । ସେ ଜଣେ କଟକର ବାସିନ୍ଦା, ୟୁରୋପୀୟ ଶିକ୍ଷା ପ୍ରଣାଳୀରେ ଉଚ୍ଚ ଶିକ୍ଷିତ, କଲିକତାର ଏକମାତ୍ର ଓଡ଼ିଆ ସ୍ନାତକ ଓ ନିଜର ଅସୀମ ବଦାନ୍ୟତା ଓ ନିଜ ଲୋକଙ୍କ ପ୍ରତି ଅଶେଷ ଅନୁରାଗ ପାଇଁ ସେ ସାରା ଭାରତରେ ଜଣାଶୁଣା ବ୍ୟକ୍ତି । ତାଙ୍କର ଯୁବକ ଅବସ୍ଥାଠାରୁ ସେ ଜଣେ ଖ୍ରୀଷ୍ଟିଆନ ଥିଲେ । ଯଦିଓ ସେ ବେଶୀ ସ୍ୱମତପୋଷକ (Dogmatic) ଏବଂ ଯାଜକୀୟ (Ecclesiastical) ଖ୍ରୀଷ୍ଟିଆନ ନଥିଲେ ତଥାପି ଖ୍ରୀଷ୍ଟଙ୍କ ପ୍ରାର୍ଥନା "ପିତା ସେମାନଙ୍କୁ କ୍ଷମା କର, କାରଣ ସେମାନେ କ'ଣ କରୁଛନ୍ତି ଜାଣିପାରୁନାହାନ୍ତି" — ଏଥିରେ ତାଙ୍କର ଆନ୍ତରିକ ପ୍ରଶଂସା ଥିଲା ଓ ଏହାରି ଉପରେ ତାଙ୍କର ବିଶ୍ୱାସ ସମ୍ପୂର୍ଣ୍ଣ ରୂପେ ପ୍ରତିଷ୍ଠିତ ହେଉଥିଲା । ମଧୁବାବୁ ଅନେକବାର କହୁଥିଲେ "ଯେଉଁ ବ୍ୟକ୍ତି ଯନ୍ତ୍ରଣାରେ ମରିଯାଉଥିବ ସେ ଯଦି ଏହି ପ୍ରାର୍ଥନା ଗାନ କରିବ ତାହାହେଲେ ସେ ପବିତ୍ର ହୋଇଯିବ ।" ଯେଉଁ ମୁହୂର୍ତ୍ତରେ ମୁଁ ଏହି ପ୍ରାର୍ଥନା ଶୁଣିବାକୁ ପାଇଲି ମୁଁ ସେହି ସତ୍ୟକୁ ସ୍ୱୀକାର କଲି ଓ ସେହିଠାରୁ ଏହାକୁ କେବେହେଲେ ସନ୍ଦେହ କରିନାହିଁ ।

× × × ×

ତାଙ୍କ ଦେଶର ଗରୀବମାନଙ୍କ ଦ୍ୱାରା ସେ ଜଣେ ସନ୍ନ୍ୟାସୀ ରୂପେ ପୂଜା ପାଉଥିଲେ । ମୁଁ ନିଜେ ଦେଖିଛି ଜଣେ ଅତି ଦୁରାରୋଧ୍ୟ ବ୍ରଣ ପୀଡ଼ିତ ଲୋକ ତାଙ୍କୁ ଅତି ବିନୟରେ ପ୍ରାର୍ଥନା କରିଥିଲା, "ମୋତେ

ଅଧିକାଂଶ ଦିଅନ୍ତୁ, ମୁଁ ତାକୁ ନେଇ ମୋ ଦ୍ରୁଣରେ ଛୁଆଁଇ ଦେଲେ ମୋ ଦ୍ରୁଣ ଭଲ ହୋଇଯିବ ।" ଆଉଜଣେ ଲୋକ ପିତଳ ପାତ୍ରଟିଏ ଧରି ତାଙ୍କୁ ଆସି ମିନତି କଲା, "ଏ ପାତ୍ରର ପାଣିରେ ଆପଣ ଆଙ୍ଗୁଠି ବୁଡ଼ାଇ ଦିଅନ୍ତୁ । ମୋ ସ୍ତ୍ରୀ ଅତ୍ୟନ୍ତ ଗର୍ଭକଷ୍ଟ ପାଉଛି । ସେ ସୁଖ ପ୍ରସବ କରିବ । ମଧୁବାବୁ ଯେଉଁ ମୁହୂର୍ତ୍ତରେ ସେ ପାଣି ଭିତରେ ଆଙ୍ଗୁଠି ବୁଡ଼ାଇଛନ୍ତି ସେ ସମୟରେ ସେ ଲୋକର ସ୍ତ୍ରୀ ସୁଖ ପ୍ରସବ କରିଛି ।(୧)

ଏଭଳି ଏକ ଲୋକର ଅଙ୍ଗ ସଙ୍ଗ ଲାଭ କରିବା ଅର୍ଥ ଅତ୍ୟନ୍ତ ବାଞ୍ଛନୀୟ ମଧ୍ୟଯୁଗକୁ ଫେରିଯିବା ସଙ୍ଗେ ସମାନ କାରଣ ସେତେବେଳେ ପ୍ରକୃତିର ନିୟମ ଏତେ କଠୋର ଓ ଅନମନୀୟ ନଥିଲା ଯାହା ପବିତ୍ରତା କାମନା ସମ୍ପତ୍ତିକୁ ପ୍ରତ୍ୟାଖାନ କରୁନଥିଲା ।(୨)

ଏହିଭଳି ଅନେକ ଘଟଣା ତାଙ୍କ ଜୀବନରେ ସଙ୍ଘଟିତ ହୋଇଛି । ପ୍ରତି ଘଟଣାରେ ଏ ଜାତିର ଉତ୍ତୋରତ୍ତର ଉନ୍ନତି, ଦରିଦ୍ର ଜନତାର ସେବା, ନ୍ୟାୟ ପାଉନଥିବା ଲୋକଙ୍କୁ ଉପଯୁକ୍ତ ନ୍ୟାୟ ପ୍ରଦାନ ଦିଗରେ ତାଙ୍କ ଦରଦୀ ପ୍ରାଣ ସର୍ବଦା ବ୍ୟ... ଉଠୁଥିଲା । ତାଙ୍କ ବିଚକ୍ଷଣ ବୁଦ୍ଧି ଓ ପ୍ରଖର ବାକ୍‌ଶକ୍ତି ନିକଟ... ବହୁ ଶିକ୍ଷିତ ଓ ପ୍ରତିଷ୍ଠିତ ଲୋକେ ସମ୍ମୁଖୀନ ହେବାପାଇଁ ... କରୁଥିବା ବେଳେ ସମାଜର ଅତି ନିମ୍ନ ଶ୍ରେଣୀର ଲୋକେ ତାଙ୍କ... ସାନିଧ୍ୟ ଲାଭରୁ ବଞ୍ଚିତ ହେଉନଥିଲେ । ଏହାଠାରୁ ବଳି ... ଗୌରବର ବିଷୟ କ'ଣ ହୋଇପାରେ । ତାଙ୍କରି ପ୍ରଚେଷ୍ଟାର ଫ... ସ୍ୱରୂପ ଆମେ ନିଜକୁ ଏକ ସ୍ୱତନ୍ତ୍ର ଜାତି ବୋଲାଇବା ସଙ୍ଗେ ସ... ମହାଭାରତୀୟ ସ୍ରୋତରେ ନିଜକୁ ସାମିଲ୍ କରିପାରିଛେ । ଏ... ପୁଣ୍ୟ ପ୍ରାଣଙ୍କର ସଦ୍‌ଗୁଣକୁ ଗ୍ରହଣ କରିବାରେ ଆମେ ଗୌ... ହେବା ।

1. The New Spirit in India – By H. W. Nevinson
2. Marvellous and Saintly Man – By H. W Nevins... published in Life of Madhusudan Das as seen by m... eyes -Compiled by Shaila Bala Das. Page 182

ଓଡ଼ିଶା ରାଜ୍ୟ ଅଭିଲେଖାଗାର,
ଭୁବନେଶ୍ୱର ।



ପର୍ଯ୍ୟଟନ, କ୍ରୀଡ଼ା ଓ ସଂସ୍କୃତି ଏବଂ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କରଙ୍କ ଓଡ଼ିଶା ଶିଶୁ କଳା ପ୍ରଦର୍ଶନୀ ଉଦ୍‌ଘାଟନ ।

# ପ୍ରାଚୀନ ଓଡ଼ିଶାର ଶିଳ୍ପ ପରମ୍ପରା

ପ୍ରଫେସର ପ୍ରହ୍ଲାଦ ପଣ୍ଡା

ରାଜ ପୃଷ୍ଠପୋଷକତା ଦ୍ୱାରା ଅତୀତ ଭାରତରେ ଶିଳ୍ପ ପରମ୍ପରା ଯେ ଉଜ୍ଜୀବିତ ହୋଇଥିଲା ତାହା ସର୍ବଦା ସ୍ୱୀକାର୍ଯ୍ୟ । ସମାଜର ନିର୍ଦ୍ଦିଷ୍ଟ କେତେକ ଶ୍ରେଣୀ ପ୍ରାଚୀନ କାଳରେ ଶିଳ୍ପ ପରିଚାଳନା କ୍ଷେତ୍ରରେ ଦକ୍ଷତା ଅର୍ଜନ କରିଥିଲେ ଓ ଆବଶ୍ୟକ ସ୍ଥଳେ ସମବାୟ ସଂସ୍ଥା ଗଠନ କରୁଥିଲେ । ମନୁ, ଯାଜ୍ଞବାଲ୍କ୍ୟ ଓ କୌଟିଲ୍ୟଙ୍କ ଭଳି ସମାଜ ବିଜ୍ଞାନୀମାନେ ସେମାନଙ୍କର କାରବାର ପ୍ରଣାଳୀକୁ ସୁନିୟନ୍ତ୍ରିତ କରିବା ଲାଗି କେତେକ ସାମାଜିକ ନିୟମ ପ୍ରଣୟନ ମଧ୍ୟ କରିଥିଲେ । ପ୍ରାଚୀନ ଭାରତର ମଗଧ, କାଶୀ, ମଥୁରା, ଅବନ୍ତୀ, କଳିଙ୍ଗ ଓ ଦକ୍ଷିଣ ଭାରତର କେତେକ ସ୍ଥାନରେ ବିଭିନ୍ନ ପ୍ରକାର ଶିଳ୍ପ ମୁଣ୍ଡ ଟେକିଥିବା କଥା ଇତିହାସ ଅନୁଶୀଳନରୁ ପ୍ରମାଣିତ ହୁଏ । କଳିଙ୍ଗ ରାଜ୍ୟରେ ପରିପୁଷ୍ଟ ଶିଳ୍ପ ମଧ୍ୟରେ ଧାତୁ, ଖଣିଜ ଦ୍ରବ୍ୟ, କାର୍ପାସ, ଅଳଙ୍କାର, ତୈଳ, ହାତୀ ଦାନ୍ତ, ପ୍ରତିରକ୍ଷା ସାମଗ୍ରୀ, ଇଞ୍ଜକ ଓ ଜାହାଜ ନିର୍ମାଣ ଥିଲା ଅନ୍ୟତମ । ଦୁର୍ଗ ଓ ପ୍ରାସାଦ ନିର୍ମାଣ ତଥା ଲବଣ ଉତ୍ପାଦନ ମଧ୍ୟ କଳିଙ୍ଗରେ ଅତ୍ୟନ୍ତ ଲୋକପ୍ରିୟ ଥିଲା । ନିମ୍ନରେ ଉପରଲିଖିତ କେତେକ ଶିଳ୍ପର ସଂକ୍ଷିପ୍ତ ବିବରଣୀ ପ୍ରଦାନ କରାଗଲା ।

## ଧାତବ ଶିଳ୍ପ :

କଳିଙ୍ଗର ପୁରପଲ୍ଲୀରେ ସ୍ୱର୍ଣ୍ଣକାରମାନେ ବିଭିନ୍ନ ପରିପାଟୀର ଅଳଙ୍କାର ଓ କମାରମାନେ କୃଷି ଯନ୍ତ୍ରପାତି ନିର୍ମାଣ କ୍ଷେତ୍ରରେ ପାରଦର୍ଶିତା ଲାଭ କରିଥିଲେ । ରାଜକୀୟ ଉତ୍ସବ ଓ ପ୍ରଦର୍ଶନୀଗୁଡ଼ିକରେ ବିଭିନ୍ନ ଧାତୁର ପାତ୍ର ସଜ୍ଜିତ କରି ରଖାଯାଉଥିଲା । ଧାତୁଗୁଡ଼ିକର ବିଶୋଧନ ଲାଗି କେତେକ ବୃକ୍ଷରୁ ଭସ୍ମ ଓ ପଶୁମାନଙ୍କର ମୂତ୍ର ସମ୍ମିଶ୍ରଣରେ ରସାୟନିକ ପଦାର୍ଥ ପ୍ରସ୍ତୁତ କରାଯାଉଥିଲା । ବିଶୋଧନ ପ୍ରକ୍ରିୟାରେ ତ୍ରୁଟି ପରିଲକ୍ଷିତ ହେଲେ ରାଷ୍ଟ୍ର ପକ୍ଷରୁ କଠୋର ଦଣ୍ଡର ବ୍ୟବସ୍ଥା ରହୁଥିଲା । ଅର୍କ କ୍ଷେତ୍ରସ୍ଥ କୋଣାର୍କ ମନ୍ଦିରରେ ବ୍ୟବହୃତ ଲୌହକଡ଼ିଗୁଡ଼ିକୁ ଅନୁଶୀଳନ କଲେ ତତ୍କାଳୀନ ଲୌହ ଶିଳ୍ପର ସ୍ଥିତି ସମ୍ପର୍କରେ ନୂତନ ଦିଗନ୍ତର ଆଭାସ ମିଳେ । ବ୍ୟବହୃତ କଡ଼ିଗୁଡ଼ିକର ଦୀର୍ଘତା ୨୦ ଫୁଟ ୧୦ ଇଞ୍ଚରୁ ଆରମ୍ଭ କରି ୩୫ ଫୁଟ ୯ ଇଞ୍ଚ ପର୍ଯ୍ୟନ୍ତ ଥିଲାବେଳେ ପ୍ରସ୍ଥ ଥିଲା ୧ ଫୁଟ ୬ ଇଞ୍ଚ । ଶ୍ରୀମନ୍ଦିର ଶିଖରରେ ସ୍ଥାପିତ ନୀଳଚକ୍ର ଅଷ୍ଟଧାତୁ ସମ୍ମିଶ୍ରିତ । ଏହାର ଅର୍ଦ୍ଧେକ ଭାଗ ଲୌହ, ଏକ ଚତୁର୍ଥାଂଶ ତମ୍ବା ଓ ଅବଶିଷ୍ଟ ସୁବର୍ଣ୍ଣ, ରୌପ୍ୟ, ଦସ୍ତା ଓ ପାରଦରେ ନିର୍ମିତ । ବର୍ତ୍ତମାନର ନୀଳଚକ୍ର ଅଷ୍ଟାଦଶ ଶତାବ୍ଦୀରେ ଗୋବିନ୍ଦ ମହାରଣା ଓ ପରମାନନ୍ଦ ମହାରଣା ନିର୍ମାଣ କରିଥିବା ଘଟଣା ଗବେଷକମାନେ ବଖାଣ କରନ୍ତି । ଅଳଙ୍କାର ପରିଧାନ ସାମାଜିକ ପ୍ରତିପତ୍ତିର ପରିମାପକ ରୂପେ ଗୃହୀତ ହେଉଥିବା ଫଳରେ ପ୍ରାଚୀନ କଳିଙ୍ଗର ସର୍ବତ୍ର ଅଳଙ୍କାର ଶିଳ୍ପ ପ୍ରସାରିତ ହୋଇଥିଲା । ରାଜବଂଶୀୟ ଓ ଅନ୍ୟ ସ୍ୱଚ୍ଛଳ ଓ ବଦାନ୍ୟ ବ୍ୟକ୍ତିମାନେ ମନ୍ଦିରର ରାଜକୋଷକୁ ବହୁ ମୂଲ୍ୟ ଅଳଙ୍କାର ଦାନ କରି ଏହି ଶିଳ୍ପର ପୃଷ୍ଠପୋଷକତା କରି ଆସୁଥିଲେ । ପାଶ୍ଚାତ୍ୟ ଜଗତରେ ଯେତେବେଳେ ଧାତୁ ନିର୍ମିତ ଯନ୍ତ୍ରପାତି କୃଷି ଉପକରଣ ମଧ୍ୟରେ ସୀମିତ ଥିଲା, କଳିଙ୍ଗରେ ମନ୍ଦିର ଓ ରାଜପ୍ରାସାଦ ନିର୍ମାଣରେ ସେଗୁଡ଼ିକର ବହୁଳ ବ୍ୟବହାର ଲକ୍ଷ୍ୟକରି ଜନ୍ ଆଣ୍ଡେରସନ୍ ୧୮୭୨ ସାଲରେ ବିସ୍ମୟାଭିଭୂତ ହୋଇପଡ଼ିଥିଲେ ।

## ପ୍ରତିରକ୍ଷା ଶିଳ୍ପ :

କଳିଙ୍ଗ ସମେତ ଭାରତର ପ୍ରତ୍ୟେକ ରାଜ୍ୟରେ ପ୍ରତିରକ୍ଷା ବ୍ୟବସ୍ଥାକୁ ଉନ୍ନତ କରିବା ଲାଗି ରାଜାମାନେ ଆଗ୍ରହୀ ହୋଇ ଉଠିଥିଲେ ଏବଂ ସେହି ଉଦ୍ଦେଶ୍ୟରେ ସ୍ଥିତିଶୀଳ ଓ ଗତିଶୀଳ ଉଭୟ ପ୍ରକାରର ବିବିଧ ଅସ୍ତ୍ରଶସ୍ତ୍ର ଉତ୍ପାଦନକୁ ପ୍ରୋତ୍ସାହନ କରୁଥିଲେ । ଖଡ୍ଗ, ସର୍ବତୋଭଦ୍ର, ବହୁମୁଖ, ପଞ୍ଚାଳିକା, ଦେବଦଣ୍ଡ, ମୁସଳ, ମୁଦ୍ଗର, ଗଦା, ଚକ୍ର, ଶକ୍ତି, ଶୂଳ, ତ୍ରିଶୂଳ ପ୍ରଭୃତିର ବ୍ୟବହାର ଲୋକପ୍ରିୟ ଥିଲା । ଅସ୍ତ୍ରଗୁଡ଼ିକୁ ଧରିବା ଲାଗି ବାଉଁଶ, ମଇଁଷି ଶିଙ୍ଗ ଓ ସ୍ଥାନ ବିଶେଷରେ ହାତୀ ଦାନ୍ତ ବ୍ୟବହାର କରାଯାଉଥିଲା । କାର୍ମୁକ, କୋଦଣ୍ଡ, ଧନୁଷ ପ୍ରଭୃତି ଧନୁଶରର ନିର୍ମାଣ ଲାଗି ଅର୍କ, ଶାଳ ପ୍ରଭୃତି କେତେକ ବୃକ୍ଷକୁ ନିର୍ଦ୍ଦିଷ୍ଟ କରାଯାଇଥିଲା । ଓଡ଼ିଶାର ପ୍ରତିରକ୍ଷା ସମ୍ପର୍କୀୟ ତଥ୍ୟାବଳୀ ପରିବେଷଣ କରି ଐତିହାସିକ ହଣ୍ଟର୍ ଲେଖିଥିଲେ, "Under the Hindu Princes, it (Orissa) supported a peasant militia of 3,00,000 men and a

regular army of 50,000 foot, 10,000 horse and 2,500 elephants'' ଆବୁଲ୍ ଫଜିଲ୍‌ଙ୍କ ସମୟରେ ଓଡ଼ିଶାରେ ସକ୍ରିୟ ସୈନ୍ୟଙ୍କ ସଂଖ୍ୟା ଥିଲା ଏକଲକ୍ଷ । ଅନଙ୍ଗ ଭୀମଙ୍କ ଶାସନ କାଳରେ ହସ୍ତୀ ବାହିନୀ ଅତ୍ୟନ୍ତ ଶକ୍ତିଶାଳୀ ଥିଲା । "ଗଙ୍ଗ ବଂଶାନୁଚରିତଂ" ଗ୍ରନ୍ଥରେ ଗଙ୍ଗବଂଶୀ ଶାସକମାନଙ୍କର ପ୍ରତିରକ୍ଷା ଶକ୍ତି ସମ୍ପର୍କରେ ଏକ ବିସ୍ତୃତ ବିବରଣୀ ପ୍ରଦାନ କରାଯାଇଅଛି ।

## ପ୍ରସ୍ତର ଶିଳ୍ପ :

ସାଞ୍ଚି, ସାରନାଥ ସ୍ତୂପ ଓ ଚୈତ୍ୟ; ନାଗାର୍ଜୁନ ପର୍ବତ, ଖଣ୍ଡଗିରି ଓ ଉଦୟଗିରିର ଗୁମ୍ଫା ଗବେଷକମାନଙ୍କ ଲାଗି ଆଜି ଗୋଟିଏ ଗୋଟିଏ ବିସ୍ମୟ । ଅଶୋକଙ୍କ ଶାସନରେ ସଂସ୍ଥାପିତ ଧଉଳିଗିରି ଓ ଜଉଗଡ଼ର ଶିଳାଲିପି ମଧ୍ୟ ପ୍ରାଚୀନ ପ୍ରସ୍ତର ଶିଳ୍ପୀଙ୍କର ଏକ ମହାର୍ଘ ସୃଷ୍ଟି । ଓଡ଼ିଶାର ପଥୁରିଆ ବିଶ୍ୱକର୍ମା ମଧ୍ୟଯୁଗୀୟ ଭାସ୍କର୍ଯ୍ୟ ଶିଳ୍ପକୁ ଯେପରି ପରିପୁଷ୍ଟ କରିଥିଲେ ଭାରତର ଅନ୍ୟତ୍ର ତାହା କ୍ୱଚିତ୍ ପରିଲକ୍ଷିତ ହୋଇଥିଲା । ପୁରାଣ ପ୍ରସିଦ୍ଧ ମହେନ୍ଦ୍ର ଶିଖରରେ ସ୍ଥାପିତ ମନ୍ଦିରଗୁଡ଼ିକ ହୁଏତ ଓଡ଼ିଶାର ପ୍ରାଚୀନତମ ପ୍ରସ୍ତରକୃତି ରୂପେ ଗୃହୀତ ହୋଇପାରେ । ବୌଦ୍ଧ–ଜୈନକାଳୀନ ଖଣ୍ଡଗିରି ଓ ଉଦୟଗିରିର ଗୁମ୍ଫା ତଥା ଅନୁଶାସନ ସାରା ଭାରତରେ ପ୍ରାଚୀନତମ ଗୁମ୍ଫା ବୋଲି ପ୍ରମାଣିତ ହେଲାଣି । ଦ୍ୱିତଳ ବିଶିଷ୍ଟ ରାଣୀ ଗୁମ୍ଫା, ଗଣେଶ ଗୁମ୍ଫା ଓ ଜୟବିଜୟ ଗୁମ୍ଫାର ନିର୍ମାଣ ପରିପାଟୀ ଓ ଗୁମ୍ଫାଗୁଡ଼ିକର କ୍ରମଶଃ ନିମ୍ନଗାମୀ ଛାତର ପରିକଳ୍ପନା ଅତ୍ୟନ୍ତ ବିଜ୍ଞାନ ସମ୍ମତ । ସାର୍ ଏଡ୍‌ୱାର୍ଡ଼ଙ୍କ ମତରେ ଉଦୟଗିରି ଓ ଖଣ୍ଡଗିରି ଗୁମ୍ଫା ତଥା ଗ୍ରୀସ୍ ଓ ରୋମ୍ ସାମ୍ରାଜ୍ୟକାଳୀନ ଗୁମ୍ଫା ମଧ୍ୟରେ ବହୁ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ସୁତରାଂ ଦୁଇ ସାମ୍ରାଜ୍ୟ ଭିତରେ ଭାସ୍କରମାନଙ୍କର ଆଦାନ ପ୍ରଦାନ ଘଟିଥିବା ଅସ୍ୱାଭାବିକ ନୁହେଁ । କିନ୍ତୁ କନିଂହାମ୍‌ଙ୍କ ମତରେ ପ୍ରାଚୀନ କଳିଙ୍ଗରେ ପ୍ରସ୍ତର ଶିଳ୍ପର ଅଗ୍ରଗତି ଯେପରି ପରିପୂର୍ଣ୍ଣତା ଲାଭ କରିଥିଲା ଗ୍ରୀସ୍ ସାମ୍ରାଜ୍ୟରେ ତାହା ସମ୍ଭବପର ହୋଇପାରି ନଥିଲା ।

## ନିର୍ମାଣ ଶିଳ୍ପ :

ପ୍ରାଚୀନ ଓଡ଼ିଶାରେ ମନ୍ଦିର, ଦୁର୍ଗ ଓ ରାଜପ୍ରାସାଦ ନିର୍ମାଣ କ୍ଷେତ୍ରରେ ଯେପରି ଅଗ୍ରଗତି ଘଟିଥିଲା ସାଧାରଣ ଜନତାର ଗୃହ ନିର୍ମାଣ କ୍ଷେତ୍ରରେ ତାହା ପରିଲକ୍ଷିତ ହୋଇନଥିଲା । ତେବେ ନିର୍ମାଣ ସମୟରେ କାରିଗରମାନେ ଶିଳ୍ପୀଶାସ୍ତ୍ର ପ୍ରଦତ୍ତ ନିୟମାବଳୀ ଅବଲମ୍ବନ କରୁଥିଲେ । ପ୍ରାଚୀନ କଳିଙ୍ଗର ଶ୍ରୀକ୍ଷେତ୍ର, ଶ୍ରୀକୂର୍ମ, ଏକାମ୍ରକ୍ଷେତ୍ର,ଯାଜପୁର, ଅର୍କକ୍ଷେତ୍ର ମୁଖଲିଙ୍ଗ ଓ ସିମାଞ୍ଚଳ ଠାରେ ମନ୍ଦିରଗୁଡ଼ିକ ମୁଣ୍ଡ ଟେକିଥିଲା । ଏହାଛଡ଼ା ପ୍ରତ୍ୟେକ ଗ୍ରାମରେ ବିଭିନ୍ନ ଦେବଦେବୀଙ୍କ ମନ୍ଦିର ଗଢ଼ି ଉଠିଥିବାରୁ ମନ୍ଦିର ନିର୍ମାଣ ଲାଗି ସ୍ୱତନ୍ତ୍ର ପଥୁରିଆ ବିଶ୍ୱକର୍ମା ଶ୍ରେଣୀ ସୃଷ୍ଟି ହୋଇଥିଲେ । ଏକାମ୍ରକ୍ଷେତ୍ରରେ ନିର୍ମିତ ଶତାଧିକ ମନ୍ଦିର ତିନୋଟି ସରୋବର ଓ ତିନୋଟି କୁଣ୍ଡ ଉନ୍ନତ ଭାସ୍କର୍ଯ୍ୟର ପ୍ରତିନିଧି ଭାବରେ ଆଜି ବିରାଜମାନ । ଶ୍ରୀମନ୍ଦିର ବହୁର୍ବେଢ଼ରେ ଗଜପତି ରାଜାମାନଙ୍କ ଦ୍ୱାରା ନିର୍ମିତ ଦେବାଳୟ ଗୁଡ଼ିକ ରାଜ୍ୟର ଦ୍ୱିତୀୟ ବୃହତ୍ତମ ମନ୍ଦିରପୁଞ୍ଜ ରୂପେ ଗଣ୍ୟ ହୁଏ । ଶ୍ରୀମନ୍ଦିରକୁ ଘେରି ରହିଥିବା ମେଘନାଦ ପ୍ରାଚୀରର ଉଚ୍ଚ ୨୦ ଫୁଟରୁ ୨୪ ଫୁଟ, ଦୀର୍ଘ ୬୬୫ ଫୁଟ ଓ ଓସାର ୬୪୦ ଫୁଟ । ମନ୍ଦିର ସମ୍ମୁଖସ୍ଥ ଅରୁଣ ସ୍ତମ୍ଭ ଉଚ୍ଚତା ହେଉଛି ୩୪ ଫୁଟ । ବଡ଼ଦାଣ୍ଡରୁ ଶ୍ରୀମନ୍ଦିରର ଉଚ୍ଚ ହେଲା ୨୧୪ ଫୁଟ । ଶ୍ରୀକ୍ଷେତ୍ର ସାରା ଭାରତର ଏକ ଅଦ୍ୱିତୀୟ ଧର୍ମପୀଠ ଓ ପର୍ଯ୍ୟଟନ କେନ୍ଦ୍ର । ଆ... ରାଜ୍ୟର ତୃତୀୟ ବୃହତ୍ତ ମନ୍ଦିର ହେଉଛି କୋଣାର୍କସ୍ଥ ସୂର୍ଯ୍ୟମନ୍ଦିର । ଚବିଶ ଗୋଟି ଚକ୍ର ସଂଯୁକ୍ତ ଏହି ମନ୍ଦିର ଶକ୍ତିଶାଳୀ ପ୍ରସ୍ତୁନି ପଥରରେ ନିର୍ମିତ ହୋଇଥି ଏବଂ ଭାସ୍କର୍ଯ୍ୟମାନଙ୍କ ଦ୍ୱାରା ... ଖୋଦିତ ଅପୂର୍ବ ପ୍ରସ୍ତର କାରୁକାର୍ଯ୍ୟ ମନ୍ଦିରର ଚତୁର୍ଦ୍ଦିଗରେ ... । ୧୯ ଫୁଟ ୨୦ ଲମ୍ବର ପ୍ରକାଣ୍ଡ ନବଗ୍ରହ ପ୍ରସ୍ତରର ଓଜନ ହେଉଛି ୨୬-୫ ଟ ଏବଂ ଏହାର ଏକ କ୍ଷୁଦ୍ର ... ୧୮୯୩ ସାଲରେ ବହୁ କଷ୍ଟ କଲିକତାସ୍ଥ ଜାତୀୟ ସଂଗ୍ରହାଳୟକୁ ସ୍ଥାନାନ୍ତରିତ ହୋଇ ଥିଲା ଏଭଳି ପ୍ରକାଣ୍ଡକାୟ ପ୍ରସ୍ତର ଖଣ୍ଡକୁ ମନ୍ଦିର ଉପରକୁ ଟେ ଯଥାସ୍ଥାନରେ ସ୍ଥାପିତ କରିବା ଘଟଣା ଯେ ଏକ ଅଦ୍ୱିତୀ ଇଞ୍ଜିନିୟରିଂ ସଫଳତା, ଏହା ନିଃସନ୍ଦେହ । କୋଣାର୍କ ଗାତ୍ର ଖୋଦିତ ବାଦ୍ୟ ଯନ୍ତ୍ର ଓ ଗୃହ ଉପକରଣଗୁଡ଼ିକୁ ଅନୁଧ୍ୟାନ କଲେ ତତ୍‌କାଳୀନ ଉତ୍କଳର ସାମାଜିକ ଚଳଣି ସମ୍ପର୍କରେ ସମ୍ୟକ୍ ଜ୍ଞାନ ଆହରଣ କରିହୁଏ । ମଧ୍ୟଯୁଗୀୟ ଉତ୍କଳର ନିର୍ମାଣଶି ସମ୍ପର୍କରେ ସ୍ୱକୀୟ ମତାମତ ଦେଇ ହଣ୍ଟର୍ ଲେଖିଥିଲେ, "The public works of the Hindu dynasty attest the magnitude of their resources in a way that admits no dispute. Thirty or forty thousand pounds were not considered extravagant for an ordinary temple. The accumulation of Anang Bhim Deb are stated at £ 1,296,750 and from this he set apart £ 406,250 for the holy edifice of Jagannath''. ଏହି ଧର୍ମ କ୍ଷେତ୍ର କେନ୍ଦ୍ର କରି ଯେଉଁ ପର୍ଯ୍ୟଟନ ବ୍ୟବସାୟ ଉନ୍ନତି ଲାଭ କଲା ତଦ୍ୱାରା ଈର୍ଷାନ୍ୱିତ ହୋଇ ମୋଗଲ ଓ ବ୍ରିଟିଶ୍ ଶାସକମାନେ ପର୍ଯ୍ୟଟ ଟିକସ ବସାଇବା ଲାଗି ଆଗଭର ହୋଇଥିଲେ । ଆକବର ମନ୍ତ୍ରୀ ମାନସିଂହ ଏହି ଟିକସରୁ ବର୍ଷକୁ ୯ ଲକ୍ଷ ଟଙ୍କା ସଂଗ୍ର କରିପାରିଥିଲେ । ନିର୍ମାଣ ଶିଳ୍ପର ଅନ୍ୟ ଏକ ଅଙ୍ଗ ହେ ସହରାଞ୍ଚଳର ବିକାଶ । ପ୍ରାଚୀନ କଳିଙ୍ଗ ସାମ୍ରାଜ୍ୟର ବିଶି ନଗରୀଗୁଡ଼ିକ ହେଲା ବିରାଜାସୀ କଟକ, ଶିଶୁପାଳଗଡ଼, ଗଙ୍ଗବାଡ଼ି କଳିଙ୍ଗପାଟଣା ଓ ରାଜପୁର । ଖାରବେଳ ନିଜ ଉଦ୍‌ବୃତ୍ତ ରାଜସ୍ୱ ୩୮ ଲକ୍ଷ ବ୍ୟୟ କରି ବିଜୟ ଭବନ ନିର୍ମାଣ କରିଥିଲେ ମୁକୁନ୍ଦଦେବଙ୍କ ସମୟରେ ନବତଳ ପ୍ରାସାଦ ଯୋଜନା ରୂପାୟି ହୋଇଥିବା ଇତିହାସରୁ ସ୍ପଷ୍ଟ ହୋଇଥାଏ । ଶ୍ୱେତଗଙ୍ଗର ପ୍ରଥ ରାଜଧାନୀ ମହେନ୍ଦ୍ରସ୍ଥ ଗଙ୍ଗବାଡ଼ି ସମ୍ପର୍କରେ ତାମ୍ର ଫଳକରେ ଉଲ୍ଲେଖ ଅଛି :

'ଧନ ଜନଙ୍କ ସମୃଦ୍ଧେ, ଗଙ୍ଗବାଡ଼ି ପ୍ରସିଦ୍ଧ,<br>
ସକଳ ବିଷୟ ଭୂତଃ ସ୍ୱର୍ଗ ବର୍ଗୋପଭୋଗ୍ୟ ।<br>
ତଦଧିପତି ରେଖ୍ୟାଦ୍ୟୋନନ୍ତବର୍ମା ନୃପେନ୍ଦ୍ରଃ,<br>
ସମଭବ ଦିତି ଭୂପ ଗଙ୍ଗାନିମ୍ନା ତଦାଦ୍ୟାଃ ।

ଏହି ରାଜଧାନୀ ଅତ୍ୟନ୍ତ ମନୋଜ୍ଞ ଯୋଜନାବଦ୍ଧ ନଗରୀ ରୂପେ ନିର୍ମିତ ହୋଇଥିଲା ଏବଂ ଏହାର ସମୃଦ୍ଧ ଲକ୍ଷ୍ୟ କ

ପୁରାଣକାରମାନେ ଏହାକୁ ଭୁସ୍ୱର୍ଗ ବୋଲି ବର୍ଣ୍ଣନା କରୁଥିଲେ । ରାମାନନ୍ଦ ପଟ୍ଟନାୟକଙ୍କ ପ୍ରଧାନ କାର୍ଯ୍ୟାଳୟ ବିଦ୍ୟାନଗରୀ ଓ ହୁଏନ୍‌ସାଂ ଭ୍ରମଣ କରିଥିବା ଗଞ୍ଜୁଡୋ (ଗଞ୍ଜାମ) ସହର ମଧ୍ୟ ଏକ ସମୟରେ ସମୃଦ୍ଧି ସାଂସ୍କୃତିକ ଓ ବାଣିଜ୍ୟ କେନ୍ଦ୍ର ରୂପେ ପରିଗଣିତ ହେଉଥିଲା ।

## ଜାହାଜ ନିର୍ମାଣ :

କଳିଙ୍ଗର ସାଧବମାନେ ବୈଦେଶିକ ବାଣିଜ୍ୟ କାରବାର ପୂର୍ବ ଦିଗରେ ଜାଭା, ବାଲି, ସୁମାତ୍ରା, ଶ୍ୟାମ, ବ୍ରହ୍ମଦେଶ ଓ ପଶ୍ଚିମରେ ଗ୍ରୀକ୍ ଓ ରୋମାନ୍ ସାମ୍ରାଜ୍ୟ ପର୍ଯ୍ୟନ୍ତ ବିସ୍ତାର କରିଥିଲେ । ତତ୍କାଳୀନ ଭାରତର ସାମୁଦ୍ରିକ ବନ୍ଦରଗୁଡ଼ିକ ମଧ୍ୟରେ କଳିଙ୍ଗର ଦନ୍ତପୁର, ତାମ୍ରଲିପ୍ତ, କଳିଙ୍ଗପଟ୍ଟନ, ମଣ୍ଡୀଡ଼ି ପ୍ରଭୃତି ପ୍ରସିଦ୍ଧି ଲାଭ କରିଥିଲା । ଚିଲିକା ହ୍ରଦ ସେ ସମୟରେ ଏକ ବୃହତ୍ ବନ୍ଦର ଭଳି କାର୍ଯ୍ୟ କରୁଥିଲା । 'ନାମବ୍ରହ୍ମାଣ୍ଡ' ପୁରାଣରେ ଉଲ୍ଲେଖ ଅଛି :

"ଚିଲ୍କା ହ୍ରଦେ ସହସ୍ରଂତୁ
ଜଳଗାମୀ ସୁବୋଇତଃ
ବହୁ ରତ୍ନାନ୍ୱୀତା ଶୀଘ୍ରୋ
ଯନ୍ତ୍ରଗା ସ୍ତଳକାଶ୍ରିତାଃ
ବାଣିଜ୍ୟ କରଣେ ଶକ୍ତାଃ
ଦ୍ୱିପଞ୍ଚ ଶିଖରାକ୍ରୁତାଃ
ଦ୍ୱିପାନ୍ତର ଗତାସ୍ତାତାଃ
ଜାବା ମଳୟ ସିଂହଳେ ।"

ଉପରୋକ୍ତ ପୁରାଣ ପଂକ୍ତିରୁ ସ୍ପଷ୍ଟତଃ ପ୍ରମାଣିତ ହୁଏ ଯେ କଳିଙ୍ଗର କ୍ଷୀପ୍ରଗାମୀ ବୋଇତଗୁଡ଼ିକୁ ଜାଭା, ମାଳୟ ଓ ସିଂହଳ ଦ୍ୱୀପକୁ ବହିର୍ବାଣିଜ୍ୟ ଲାଗି ପ୍ରେରଣ କରାଯାଉଥିଲା ଓ ଜଳଯାତ୍ରାକୁ ସୁଗମ ଓ ସଫଳ କରିବା ଲାଗି ସେଥିରେ ଆବଶ୍ୟକୀୟ ଯନ୍ତ୍ରପାତି ସଂଯୋଗ କରାଯାଉଥିଲା ।

ଉପରୋକ୍ତ ବିବରଣୀ ଅନୁଧ୍ୟାନରୁ ପ୍ରତୀୟମାନ ହୁଏ ଯେ ଅତୀତରେ ସାରା ବିଶ୍ୱରେ ଏକ ଆଦର୍ଶ ସ୍ଥାନୀୟ ରାଷ୍ଟ୍ର ରୂପେ ବିବେଚିତ ହୋଇଥିଲା । ଘଟଣାକ୍ରମେ ମୋଗଲ ଓ ବ୍ରିଟୀଶ୍ ଶାସନ କାଳରେ ତାର ଅବସାନ ଘଟିଲା । ସେହି ଋଦ୍ଧିମନ୍ତ ପରମ୍ପରାକୁ ପୁନର୍ଜୀବିତ କରିବା ଲାଗି ଆଜିର ସମାଜ ଜାଗ୍ରତ ହେବା ଉଚିତ । ଏଭଳି ପୁନର୍ଜାଗରଣ ସ୍ୱପ୍ନ ଦେଖୁଥିବା ଜଣେ ସାହସୀ ବ୍ୟକ୍ତି ଆଜି ରାଜ୍ୟର ଶାସନମୁଖ୍ୟ ହୋଇଥିବାରୁ ତାଙ୍କଠାରୁ ଆମ୍ଭେମାନେ ବହୁତ କିଛି ଆଶା କରୁଛୁ ।





ବଲାଙ୍ଗୀରଠାରେ ଏକ ବିଶାଳ ଜନ ସମାବେଶରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଅଭିଭାଷଣ ।

# ଉତ୍କଳୀୟ ପରମ୍ପରା : ପୁଷ୍ୟାଭିଷେକ

ଇଞ୍ଜିନିୟର ରଘୁନାଥ ପାତ୍ର

ଉତ୍କଳର ସମସ୍ତ ଯାନିଯାତ୍ରା, ପର୍ବ ପର୍ବାଣି ସାଂସ୍କୃତିକ ସ୍ୱାଭିମାନ, ଜାତୀୟତା, ଅର୍ଥନୈତିକ ତଥା ଆଧ୍ୟାତ୍ମିକ ବୈଶିଷ୍ଟ୍ୟ ଉପରେ ପରିକଳ୍ପିତ ଆଧାରିତ । ସଂଖ୍ୟାଧିକ ପର୍ବ ପର୍ବାଣି ମଧ୍ୟରୁ କେତେକ କୃଷିଭିତ୍ତିକ, କେତେକ ଧର୍ମଭିତ୍ତିକ ଓ ଅନ୍ୟ କେତେକ ସାମାଜିକ ଜୀବନର ପ୍ରତିଫଳିତ ।

ପ୍ରାଚୁର୍ଯ୍ୟ ଓ ସମୃଦ୍ଧିର ସଙ୍କେତ ବହନ କରି "ପୌଷ ପୂର୍ଣ୍ଣମୀ" ଶୀତ ସ୍ନିଗ୍ଧ ମୁହୂର୍ତ୍ତରେ ଆଣିଦିଏ ସାରା ବର୍ଷର ପରିଶ୍ରମ ଲବ୍ଧ ସୁନାର ଫସଲ, ଅଫୁରନ୍ତ ଆନନ୍ଦ, ବିବିଧ ସ୍ୱାଦାସ୍ୱାଦନ ଓ ହର୍ଷୋତ୍ଫୁଲ୍ଲ ପରିପ୍ଲାବନ । ପଶ୍ଚିମ ଓଡ଼ିଶାରେ ପୁଷ୍ ପୁନି ବା ଛେର୍‌ଛେରା ପର୍ବରେ ଅପୂର୍ବ ଖୁସି ଓ ଆବେଗ ପ୍ରତିଫଳିତ ହେବା ସମୟରେ ଶ୍ରୀମନ୍ଦିରରେ ନୀଳାଦ୍ରିନାଥ ଓ ଲିଙ୍ଗରାଜ ମନ୍ଦିରରେ ଭଗବାନ ଭୁବନେଶ୍ୱରଙ୍କ ପୁଷ୍ୟାଭିଷେକ ପାଳିତ ହୁଏ । ମହାଭାରତରେ ଉଲ୍ଲେଖ ଅଛି, "ହେ କୌନ୍ତେୟ ! ଯେଉଁ ବ୍ୟକ୍ତି ପୌଷ ମାସରେ ପ୍ରତ୍ୟହ ଥରେ ମାତ୍ର ଭୋଜନ କରି ଦେବଦେବୀ ଦର୍ଶନ କରେ ସେ ସଂସାରରେ ଯଶସ୍ୱୀ ହୁଏ ।"

"ପୌଷ ମାସେତୁ କୌନ୍ତେୟ ଭକ୍ତେନୈକେନ ଯଃ କ୍ଷିପେତ୍ ।
ସୁଭଗୋ ଦର୍ଶନୀୟଶ୍ଚ ଯଶୋଭାଗୀ ଚ ଜାୟତେ ।"

## ପୁଷ୍ୟାଭିଷେକର କାଳ ନିର୍ଣ୍ଣୟ :

ମହାପ୍ରଭୁ ନୀଳାଦ୍ରିନାଥଙ୍କ ଦ୍ୱାଦଶ ଯାତ୍ରା ଓ ଲିଙ୍ଗରାଜଙ୍କ ଚତୁର୍ଦ୍ଦଶ ଯାତ୍ରା ମଧ୍ୟରେ ପୁଷ୍ୟାଭିଷେକ ଅନ୍ୟତମ ଯାତ୍ରା । ନୀଳାଦ୍ରିନାଥଙ୍କ ଚତୁର୍ବର୍ଗ ଫଳ ପ୍ରଦାୟକ ପୁଷ୍ୟାଭିଷେକ ଯାତ୍ରା ଭାଗବତ, ସ୍କନ୍ଦ ପୁରାଣ, ବାମଦେବ ସଂହିତା ଓ ନୀଳାଦ୍ରି ମହୋଦୟରେ ବର୍ଣ୍ଣିତ । ମହାପ୍ରଭୁ ଲିଙ୍ଗରାଜଙ୍କ ପୁଷ୍ୟାଭିଷେକ ଏକାମ୍ର ପୁରାଣ, ଶିବ ପୁରାଣ, ସ୍ୱର୍ଣ୍ଣାଦ୍ରି ମହୋଦୟ ଓ ଏକାମ୍ର ଚନ୍ଦ୍ରିକାରେ ପରିକୀର୍ତ୍ତିତ ।

"ପୁଷ୍ୟର୍କେଣ ଚ ସଂଯୁକ୍ତା ପୌର୍ଣ୍ଣମାସୀ ଯଦା ଭବେତ୍ ।
ପୌଷେ ମାସି ତଥା କୁର୍ଯ୍ୟାତ୍ ପୁଷ୍ୟ ସ୍ନାନୋତ୍ସବଂ ହରେଃ ।।"
(ସ୍କନ୍ଦ ପୁରାଣ ୪୦/୧-୨)

"ପୌଷ ମାସି ସିତେ ପକ୍ଷେ ପୌର୍ଣ୍ଣମ୍ୟାଂ ଉକ୍ଳିଣୀ ପତେଃ ।
ପୁଷ୍ୟାଭିଷେକଂ କୁର୍ବୀତ ସର୍ବକାମାର୍ଥ ସିଦ୍ଧୟେ ।।"
(ଯୋଗୀ ଭାଗବତ)

ପୌଷ ପୂର୍ଣ୍ଣମୀ ଦିନ ନବ ବସ୍ତ୍ର ପରିଧାନ ପୂର୍ବକ ଘୃତ ପକ୍ୱ ମିଷ୍ଟାନ୍ନ (କାନିକା) ଓ ପୁଷ୍ଟିକର ଦ୍ରବ୍ୟ ଭକ୍ଷଣ କରିବା ବିଧେୟ । ପୌଷ ପୂର୍ଣ୍ଣମୀ ତିଥିରେ ଶ୍ରୀଜଗନ୍ନାଥ ଓ ଶ୍ରୀଲିଙ୍ଗରାଜ ମହାପ୍ରଭୁଙ୍କ ପୁଷ୍ୟାଭିଷେକ ହୁଏ । ଏହା ଦେବାଭିଷେକ ନାମରେ ଅଭିହିତ । ପୁଷ୍ୟା ନକ୍ଷତ୍ରରେ ରାଜାମାନଙ୍କର ପୁଷ୍ୟାଭିଷେକ ପାଳନ କରାଯାଏ, କାରଣ ରାଜାମାନଙ୍କୁ ଚଳନ୍ତି ବିଷ୍ଣୁଙ୍କ ମାନ୍ୟତା ପ୍ରଦାନ କରାଯାଇଥାଏ । ଯଦି ପୌଷ ପୂର୍ଣ୍ଣମୀ ପୁଷ୍ୟା ନକ୍ଷତ୍ର ସଂଯୁକ୍ତ ହୁଏ ତେବେ ଏହା ଅତୀବ ପୁଣ୍ୟପ୍ରଦ ଓ ଗରୀୟସୀ । ସୂର୍ଯ୍ୟୋଦୟ କାଳରେ ନକ୍ଷତ୍ର ତ୍ରିମୁହୂର୍ତ୍ତ ହିଁ ପ୍ରଶସ୍ତ । ନକ୍ଷତ୍ର ଦୁଇଦିନ ଉଦୟ କାଳରେ ରହିଲେ ପୂର୍ବ ଦିନ ଗ୍ରାହ୍ୟ ।

"ଧନୈର୍ବିପ୍ରାନ୍ତୁ ସନ୍ତର୍ପ୍ୟ ନବୈର୍ବସ୍ତ୍ରେଣ ଶୋଭିତାନ୍ ।
ତତଃ ପୁଷ୍ଟିକରଂ ଭୋକ୍ତବ୍ୟଂ ଘୃତ ପାୟସ ।
ପୁଷ୍ୟା ଯୋଗେନ କର୍ତ୍ତବ୍ୟଂ ରାଜ୍ଞା ସ୍ନାନଂ ଚ ସର୍ବଦା ।।
× × × ×
ଉଦୟେ ତ୍ରିମୁହୂର୍ତ୍ତାଙ୍ଗଂ ନକ୍ଷତ୍ରଂ ବ୍ରତ ଦୀନୟୋଃ ।
ଦିନ ଦ୍ୱୟେ ତଥାତ୍ୱେତୁ ପୂର୍ବଂ ସ୍ୟାଦ୍‌ବଳବତ୍ତରଂ ।"
(ପୁଷ୍ୟାବନ୍ଦନା, ପୃ–୧୯୬)

ଅତଏବ୍ ଦେବତାମାନଙ୍କ ଅଭିଷେକ ପାଇଁ ପୂର୍ଣ୍ଣମୀ ପ୍ରଶସ୍ତ ଅର୍ଥାତ୍ ତିଥି ମୁଖ୍ୟ ଓ ରାଜାମାନଙ୍କ ଅଭିଷେକ ପାଇଁ ନକ୍ଷତ୍ର ପ୍ରଶସ୍ତ । ତେଣୁ ପୁଷ୍ୟା ନକ୍ଷତ୍ର ସଂଯୁକ୍ତ ନଥିଲେ ମଧ୍ୟ ଶ୍ରୀଜଗନ୍ନାଥ ଓ ଶ୍ରୀଲିଙ୍ଗରାଜ ମହାପ୍ରଭୁଙ୍କ ପୁଷ୍ୟାଭିଷେକ ପୌଷ ପୂର୍ଣ୍ଣିମା ଦିନ ଅନୁଷ୍ଠିତ ହୋଇଥାଏ ।

## ପୌରାଣିକ ପୃଷ୍ଠଭୂମି :

ଭଗବାନ ରାଜୀବ ଲୋଚନ ଶ୍ରୀରାମଚନ୍ଦ୍ର ମର୍ତ୍ତ୍ୟଲୀଳା ସମାପନ କରି ବୈକୁଣ୍ଠ ଗମନ ପାଇଁ ଉଦ୍ୟତ ହେବା ସମୟରେ ଭକ୍ତଶ୍ରେଷ୍ଠ

ବିଭୀଷଣ ଯୋଡ଼ ହସ୍ତରେ ସବିନୟ ପ୍ରାର୍ଥନା କରିଥିଲେ, "ହେ ଶରଣାଗତ ବତ୍ସଳ ଦୀନାର୍ତ୍ତିନାଶନ ହରି ! ଆପଣଙ୍କ ବୈକୁଣ୍ଠ ପ୍ରତ୍ୟାବର୍ତ୍ତନ ପରେ ଏ ଦୀନାକିଞ୍ଚନ, ଶରଣାଗତ କେଉଁ ଦେବତାଙ୍କୁ ଆରାଧନା କରିବ ?" ବାଞ୍ଛା କଳ୍ପତରୁ ସର୍ବାନ୍ତର୍ଯ୍ୟାମୀ ରାଘବେନ୍ଦ୍ର କହିଥିଲେ, "ହେ ଭକ୍ତଶ୍ରେଷ୍ଠ ବିଭୀଷଣ ! ମୋ ଅନୁପସ୍ଥିତିରେ ଆମର (ସୂର୍ଯ୍ୟବଂଶର) କୁଳଦେବତା ଶ୍ରୀଜଗନ୍ନାଥଙ୍କୁ ଆରାଧନା କରିବ ।"

"ଆରାଧୟ ଜଗନ୍ନାଥ ଇକ୍ଷ୍ୱାକୁ କୁଳଦୈବତମ୍ ।"
(ବାଲ୍ମୀକି ରାମାୟଣ, ଉତ୍ତରାକାଣ୍ଡ)

ଅବତାରୀ ଶ୍ରୀଜଗନ୍ନାଥ ରାମକୃଷ୍ଣାଦି ବହୁ ଅବତାର ଲୀଳା ବିଳାସ ପ୍ରଦର୍ଶନ କରିଥାଆନ୍ତି । ପୁଷ୍ୟାଭିଷେକ ଶ୍ରୀରାମ ରୂପୀ ଶ୍ରୀଜଗନ୍ନାଥଙ୍କ ରାଜେନ୍ଦ୍ରାଭିଷେକ । ଯେପରି ଜ୍ୟେଷ୍ଠ ଶୁକ୍ଳ ଦଶମୀ ତିଥିରେ ଦ୍ୱାରକାଧିପତି ଶ୍ରୀକୃଷ୍ଣ ଅଭିଷିକ୍ତ ହୋଇଥିଲେ, ସେହିପରି ପୌଷ ପୂର୍ଣ୍ଣମୀରେ ରାଜୀବ ଲୋଚନ ଅଯୋଧ୍ୟାଧିପତି ଶ୍ରୀରାମଚନ୍ଦ୍ରଙ୍କ ରାଜେନ୍ଦ୍ରାଭିଷେକ ।

ଅଷ୍ଟ ବସୁ ଦେବାଧିରାଜ ଇନ୍ଦ୍ରଦେବଙ୍କ ଅଭିଷେକ କଲାପରି ବଶିଷ୍ଠ, ବାମଦେବ, ଜାବାଳି, କାଶ୍ୟପ, କାତ୍ୟାୟନ, ସୁଯଜ୍ଞ, ଗୌତମ ଓ ବିଜୟାଦି ସୁଧୀବର୍ଗ ସ୍ୱଚ୍ଛ ସୁଗନ୍ଧିତ ଜଳରେ ସୀତା ସହିତ ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ରଙ୍କୁ ଅଭିଷେକ କରିଥିଲେ ।

"ବଶିଷ୍ଠୋ ବାମଦେବଶ୍ଚ ଜାବାଳି ରଥ କାଶ୍ୟପଃ ।
କାତ୍ୟାୟନଃ ସୁଯଜ୍ଞଶ୍ଚ ଗୌତମୋ ବିଜୟସ୍ତଥା ।।
ଅଭ୍ୟଷିଞ୍ଚନ୍ନରବ୍ୟାଘ୍ରଂ ପ୍ରସନ୍ନେନ ସୁଗନ୍ଧିନା ।
ସଲିଳେନ ସହସ୍ରାକ୍ଷଂ ବସବୋ ବାସବଂ ଯଥା ।।"
(ବାଲ୍ମୀକି ରାମାୟଣ, ଉତ୍ତରାକାଣ୍ଡ)

ସନ୍ଥ ତୁଳସୀଙ୍କ ଶ୍ରୀରାମଚରିତ ମାନସ (ଉତ୍ତରା କାଣ୍ଡ)ରେ ନବୀନ ନବଘନ ସୂର୍ଯ୍ୟବଂଶ ଭୂଷଣ ଶ୍ରୀରାମଚନ୍ଦ୍ରଙ୍କ ଅଭିଷେକକାଳୀନ ସୌନ୍ଦର୍ଯ୍ୟ ବର୍ଣ୍ଣନ ଅତୀବ ଚିତ୍ତାକର୍ଷକ ।

"ଶ୍ରୀସହିତ ଦିନକର ବଂସଭୂଷଣ କାମ ବହୁଛ ବି ସୋହଇ ।
ନବ ଅମ୍ବୁଧର ବର ଗାତ ଅମ୍ବର ପୀତ ସୁର ମନ
ମୋହଇ ।।
ମୁକୁଟାଂ ଗଦାଦି ବିଚିତ୍ର ଭୂଷଣ ଅଙ୍ଗ ଅଙ୍ଗନ୍ହି ପ୍ରତି ସଜେ ।
ଅମ୍ଭୋଜ ନୟନ ବିଶାଳ ଉରଭୁଜ ଧନ୍ୟ ନର ନିରଖନ୍ତି
ଯେ ।।"

## ଶ୍ରୀମନ୍ଦିରରେ ପୁଷ୍ୟାଭିଷେକ :

ପୁଷ୍ୟାଭିଷେକ ଉତ୍ସବ ପୌଷ ପୂର୍ଣ୍ଣିମା ତିଥିରେ ପାଳିତ ହେଉଥିଲେ ମଧ୍ୟ ଉକ୍ତ ଉତ୍ସବର ଆନୁଷଙ୍ଗିକ ଅଙ୍କୁରାରୋପଣ କର୍ମ ପୌଷମାସ ଶୁକ୍ଳ ଏକାଦଶୀ ଦିନ ଜୀଉଙ୍କ ସନ୍ଧ୍ୟା ଧୂପ ପରେ ଦେଉଳ ପୁରୋହିତଙ୍କ ଦ୍ୱାରା ଶ୍ରୀମନ୍ଦିର ଐଶାନ୍ୟ କୋଣରେ ସ୍ନାନ ମଣ୍ଡପ ନିକଟରେ ପ୍ରତାହାରୀ ନିଯୋଗ ସମ୍ମୁଖରେ ଅନୁଷ୍ଠିତ ହୋଇଥାଏ । ଶାସ୍ତ୍ରୀୟ ମତରେ ସୁରମ୍ୟ ବିତାନ ଓ ପତାକା ପରିଶୋଭିତ ଚତୁର୍ଦ୍ୱାର ବିଶିଷ୍ଟ ଚତୁଷ୍କୋଣୀ ଯଜ୍ଞ ମଣ୍ଡପ (ଯଜ୍ଞଶାଳା)ରେ ଆଚାର୍ଯ୍ୟଙ୍କ ଦ୍ୱାରା ଅଙ୍କୁରାରୋପଣ କାର୍ଯ୍ୟାନୁଷ୍ଠିତ ହେବା ବିଧେୟ । (କିଛି ବର୍ଷ ତଳେ ଛଣ ଛପର ଗୃହ ଯଜ୍ଞଶାଳା ରୂପେ ବ୍ୟବହୃତ ହେଉଥିଲା । ଅଧୁନା ବାଉଁଶ ତାଟିରେ ନିର୍ମାଣ କରି ଗହୁଆ ଟଣା ଯାଉଛି ।)

"ଏକାଦଶ୍ୟାଂ ପ୍ରକୁର୍ବୀତ ଐଶାନ୍ୟାମଂ କୁରାର୍ପଣମ୍ ।"
(ସ୍କନ୍ଦ ପୁରାଣ ୪୧/୨)

"ଅଥ ପୁଷ୍ୟାଭିଷେକସ୍ୟ କଥୟାମି ବିଧିନ୍ନୃପ
ପ୍ରାସାଦ ସ୍ୟୈଶାନ କୋଣେ ମଣ୍ଡପଂ ରଚୟେନ୍ନୃପଂ ।
ଚତୁରସ୍ରଂ ଚତୁର୍ଦ୍ୱାରଂ ବିତାନୋତ୍ତମ ମଣ୍ଡିତଂ
ପତାକା ବଳିଭି ର୍ୟାପ୍ତମଙ୍କୁରା ରୋପଣାୟ ବୈ ।।"
(ନୀଳାଦ୍ରି ମହୋଦୟ ୩୨ ଅଧ୍ୟାୟ)

"ଏକାଦଶ୍ୟାଂ ତୁ ପୌଷସ୍ୟ ପ୍ରାସାଦସ୍ୟେଶ କୋଣକେ ।
ଚତୁରସ୍ରଂ ଚତୁର୍ଦ୍ୱାରଂ ବିତାନୋତ୍ତମ ମଣ୍ଡିତମ୍ ।
ମଣ୍ଡପଂ ରଚୟେତ୍ତତ୍ର ପତାକାବଳିଭିର୍ଯୁତମ୍ ।।
ଅଙ୍କୁରାରୋପଣଂ କୁର୍ଯ୍ୟାତ୍ ଯଥା ବିଧିତସ୍ମୋ ପ୍ରିୟେ ।
ତୃତୀୟାର୍ଚ୍ଚା ବସାନେଽପି ଆଚାର୍ଯ୍ୟ ବରଣଂ ଚରେତ୍ ।"
(ବାମଦେବ ସଂହିତା ୨୦/୨୧–୨୩)

ପୌଷ ପୂର୍ଣ୍ଣମୀ ପୂର୍ବଦିନ ଅର୍ଥାତ୍ ଶୁକ୍ଳ ଚତୁର୍ଦ୍ଦଶୀ ରାତିରେ ଜୀଉଙ୍କ ଚନ୍ଦନ ଲାଗି ପରେ ମନ୍ଦିର ପୁରୋହିତ ଅଧିବାସ କାର୍ଯ୍ୟାନୁଷ୍ଠାନ କରନ୍ତି । ଭୋଗ ମଣ୍ଡପ ଗୃହ ପୂର୍ବରୁ ଧୋପଖାଳ (ଜଳରେ ପରିଷ୍କାର) ହୋଇ ସୁରମ୍ୟ ଗହୁଆ ଟଣା ଯାଇଥାଏ । ପର୍ବ ଯାତ୍ରା ଯୋଗଣିଆ କୋଠ ଭୋଗ ଯୋଗଣିଆଠାରୁ ଏକ ହାଣ୍ଡି ଘିଅ (ଗୁଆ ଘିଅ) ଓ ନୂତନ ହାଣ୍ଡିରେ ରୋଷ କୂପରୁ ହାଣ୍ଡିଏ ଜଳ ଆଣି ପରଖମାନଙ୍କରେ ରଖନ୍ତି । ପର୍ବ ଯାତ୍ରା ଯୋଗଣିଆ ରଙ୍ଗ ବିରଙ୍ଗ ଗହୁଆ ତଳେ ୮୭ ତାମ୍ର ଗରା ଜଳ ଓ ୨୧ ଗରା ଘିଅ ମୁରୁଜ ପକାଇ ଧାଡ଼ି ପଂକ୍ତି କରି ରଖନ୍ତି । ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କ ପାଇଁ ପ୍ରତ୍ୟେକ ପଂକ୍ତିରେ ୨୫ ଗରା (ସମୁଦାୟ ୨୫×୩=୭୫ ଗରା) ଓ ସୁଦର୍ଶନ–ବାଡ଼ ପାଇଁ ୧୨ ଗରା; ଏହିପରି ୮୭ ଗରା ଜଳ ଏବଂ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କ ବାଡ଼ ପାଇଁ ପ୍ରତ୍ୟେକ ବାଡ଼ରେ ୬ ଗରା ଘୃତ (ସମୁଦାୟ ୧୮ ଗରା) ଓ ସୁଦର୍ଶନଙ୍କ ପାଇଁ ୩ ଗରା ଘୃତ; ଏହିପରି ୨୧ ଗରା ଘୃତ ରଖାଯାଏ । (ଅଧୁନା ଘୃତ ମୂଲ୍ୟ ବୃଦ୍ଧି ହେତୁ ଗରାମାନଙ୍କରେ ଅଳ୍ପ ଘୃତ ବ୍ୟବହୃତ ହୋଇଥାଏ) । ଜଳରେ ଚନ୍ଦନ, କର୍ପୂର ଓ ଅଗୁରୁ ଆଦି ସୁବାସିତ ଦ୍ରବ୍ୟ ବ୍ୟବହୃତ ହୁଏ । ଦେଉଳ ପୁରୋହିତ ଗରାମାନଙ୍କୁ ବେମେଡ଼ି ପଟନି ଯୋଡ଼େଇ ଫୁଲ ଚନ୍ଦନ ଦେଇ ମନ୍ତ୍ର ପାଠ ପୂର୍ବକ ଅଧିବାସ କରନ୍ତି । ଭୋଗ ମଣ୍ଡପ ଦ୍ୱାର ଦେଶରେ ମୁଦ ଦିଆଯାଏ (ବନ୍ଦ କରାଯାଏ) ।

(୧) "ଚତୁର୍ଦ୍ଦଶୀ ନିଶାୟାଂ ତୁ କୁମ୍ଭାନାମଧି ବାସନମ୍ ।
ଏକାଶୀତି ପ୍ରମାଣାନାଂ ତଥା ସ୍ୱର୍ଣ୍ଣମୟାନ୍ ଶୁଭାନ୍ ।
ଗବ୍ୟସର୍ପିଃ ପ୍ରପୂର୍ଣ୍ଣାଂଶ୍ଚ ସ୍ଥାପୟେଦେକ ବିଂଶତିମ୍ ।"
(ସ୍କନ୍ଦ ପୁରାଣ ୪୦/୪–୬)

(୨) "ଚତୁର୍ଦ୍ଦଶ୍ୟାଂ ତତୋ ବିପ୍ରୋଶ୍ଚତୁରର୍ଚ୍ଚାବସାନତଃ ।
ମଣ୍ଡପେଽପି ଚତୁଃ ପଂକ୍ତୀର୍ଲିଖେତ୍ତଣ୍ଡୁଳ ଚୂର୍ଣ୍ଣକୈଃ ।
ସୌବର୍ଣ୍ଣାନ୍ ରୌପ୍ୟକାନ୍ କୁମ୍ଭାନଥବା ତାମ୍ର ସମ୍ଭବାନ୍ ।।
ନିର୍ମଳୋଦକ ସମ୍ପୂର୍ଣ୍ଣା ନଷ୍ଟୋତ୍ତର ଶତଂ ଚ ତାନ୍ ।
ଚନ୍ଦନା ଗୁରୁ କର୍ପୂରୈର୍ଯୁତାନ୍ ପଂକ୍ତିଷୁ ଯୋଜୟେତ୍ ।।
ପଞ୍ଚ ବିଂଶତି ସଂଖ୍ୟାତାନ୍ ତ୍ରିପଂକ୍ତିଷୁ ଚ ଯୋଜୟେତ୍ ।

ସୁଦର୍ଶନସ୍ୟ ପଂକ୍ତ୍ୟା ଚ ନ୍ୟସେତ୍ ଦ୍ୱାଦଶ ସଂଖ୍ୟକାନ୍ ॥
ପଂକ୍ତ୍ୟା-ପଂକ୍ତ୍ୟାଂ ପ୍ରତେିଃ ପୂର୍ଣ୍ଣାନ୍-ନ୍ୟସେତ୍ତୁଦ୍ଧିମିତାଂଶ୍ଚ-ତାନ୍ ।
ସୁଦର୍ଶନସ୍ୟ ପଂକ୍ତ୍ୟା ବୈ ଘୃତପୂର୍ଣ୍ଣଂ ଘଟ ଦ୍ୱୟମ୍ ॥
କୃତ୍ୱା ତେଷ୍ଠଂ ଘଟାନାଂ ବାପ୍ୟ ଷ୍ଟୋତ୍ତର ଶତଂ ଭବେତ୍ ।
ଗନ୍ଧ ପୁଷ୍ପାଦିକଂ ଚୈବ ପ୍ରକ୍ଷିପେଚ୍ଚ ନଗାଧିପେ ॥"
(ବାମଦେବ ସଂହିତା ୨୦/୨୪-୨୯)

(ଗ) "ଚତୁର୍ଦ୍ଦଶ୍ୟାଂ ତତୋ ବିଶ୍ୱୋକ୍ତଚତୁର୍ଥାର୍ଣ୍ଣବ ସାନତଃ ।
ଦେବାଗ୍ରେପି ଚତୁଷ୍ପଂକ୍ତି ଲିଖେତ୍ସ୍ଥୂଳ ଚୂର୍ଣ୍ଣକୈଃ ॥
ସୌବର୍ଣ୍ଣ ରୌପ୍ୟକାନ୍ କୁମ୍ଭାନଥବା ତାମ୍ର ସମ୍[illegible] ।
ନିର୍ମଳୋଦକ ସମ୍ପୂର୍ଣ୍ଣ ନଷ୍ଟୋତ୍ତର ଶତାଂସ୍ତାତାନ୍ ॥
ଚନ୍ଦନାଗୁରୁ କର୍ପୂରେ ର୍ୟୁତାନ୍ ପଂକ୍ତିଷୁ ଯୋଜୟେତ୍ ।
ପଞ୍ଚ ବିଂଶତି ସଂଖ୍ୟାତାନ୍ ତିଷୁ ପଂକ୍ତିଷୁ ଯୋଜୟେତ୍ ॥
ସୁଦର୍ଶନସ୍ୟ ପଂକ୍ତ୍ୟା ଚ ଦ୍ୱାଦଶ ପ୍ରମିତାନ୍ନ୍ୟସେତ୍ ।
ପଂକ୍ତ୍ୟା ପଂକ୍ତ୍ୟା ପ୍ରତେିଃ ପୂର୍ଣ୍ଣାନ୍ ଋତୁ ସଂଖ୍ୟାନ୍ନ୍ୟସେତ୍ତଥା ।
ସୁଦର୍ଶନସ୍ୟ ପଂକ୍ତ୍ୟା ବୈ ଘୃତଂ ପୂର୍ଣ୍ଣଂ ଘଟଦ୍ୱୟଂ ।
କୃତ୍ୱାତେଷ୍ଟଂ ଘଟାନାଂ ବା ଅଷ୍ଟୋତ୍ତରି ଶତଂ ନ୍ୟସେତ୍ ॥
ଘଟାନସ୍ମେତି ମନ୍ତ୍ରେଣ ତାପସା ସାଦୟେତ୍ପୁନଃ ।
ଗନ୍ଧ ଦ୍ୱାରେତି ମନ୍ତ୍ରନା ଗନ୍ଧଂ କ୍ଷିପ୍ତା ତତଃ ପରଂ ॥
ଶ୍ରୀଶ୍ଚତ୍ ଇତି ପୁଷ୍ପାଣି କ୍ଷିପେତ୍ତଷ ପରଂତପ ।
କୁମ୍ଭାଧିବାସନଂ କୁର୍ଯ୍ୟାଦେବଂ ଦେବାଗ୍ରତଂ ପୁନଃ ॥"
(ନୀଳାଦ୍ରି ମହୋଦୟ ୩୨ ଅଧ୍ୟାୟ)

ଏହାପରେ ଭିତରେ ଅର୍ଥାତ୍ ଜୀଉଙ୍କ ମନ୍ଦିରରେ ପାଣି ପଡ଼େ ଓ ରତ୍ନ ସିଂହାର ଭୋଗ ପାଇଁ ରୋଷ ଗୃହକୁ ଡକାଯାଏ । ଛେକ ଆସିଲେ ପଞ୍ଚୋପଚାର ପୂଜା ହୁଏ । ପାଣି ପଡ଼ି ଧୋ ପଖାଳ ହେବା ପରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ କୋଠ ସୁଆଁସିଆ ପ୍ରଦତ୍ତ ଭଦ୍ରାସନ ଉପରେ ପାହାଡ଼ା ପଡ଼ି ଧାତବ ଦର୍ପଣ ରଖାଯାଏ ଓ ପୁଷ୍ପ ଚନ୍ଦନାଦି ଦେଇ ପୁରୋହିତ ଅଧିବାସ କରନ୍ତି । ଭଦ୍ରାସନର ଚତୁର୍ଦ୍ଦିଗରେ ଟିକିଟା ମାଟିରେ ବନ୍ଧ ଦିଆଯାଇ ସରନ୍ତୁ ନଦୀର ପରିକଳ୍ପନା କରାଯାଏ । ଏହାପରେ ତିନି ବାଡ଼ରେ ଜୀଉଙ୍କୁ ପଇଡ଼ ବିଡ଼ିଆ ଘସା ମଣୋହି ହୋଇ ପହୁଡ଼ ହୁଏ । (ରାତିର ଅବଶିଷ୍ଟ ସମୟ ଜାଗରଣ ପୂର୍ବକ ନୃତ୍ୟଗୀତାଦି ମଧ୍ୟରେ କଟାଇବା ବିଧେୟ କିନ୍ତୁ ଅଧୁନା ଏ ସମସ୍ତ କର୍ମ ସରିବା ବେଳକୁ ରାତି ପାହି ଯାଉଥିବାରୁ ନୃତ୍ୟଗୀତାଦି ପ୍ରାୟତଃ ବିରଳ) ।

"କାରୟେତ୍ ସର୍ବତୋଭଦ୍ରଂ ମଣ୍ଡଳଂ ପୁରତୋ ହରେଃ ।
ତନ୍ମଧ୍ୟେ କୁମ୍ଭଦାଧାରଂ ସ୍ଥାପୟେର୍ଦ୍ଦର୍ପଣଂ ଶୁଭମ୍ ।
ରାତ୍ରୌ ଜାଗରଣଂ କୁର୍ଯ୍ୟାତ୍ ଗୀତ ନୃତ୍ୟାଦି ବିସ୍ତରୈ ॥"
(ସ୍କନ୍ଦପୁରାଣ ୪୦/୫-୭)

"ସର୍ବତୋ ଭଦ୍ରନାମାନଂ ମଣ୍ଡଳଂ ବିଲିଖେତ୍ ସୁଧୀଃ ।
ତତ୍ର ଭଦ୍ରାସନେ ରକ୍ଷେତ୍ ମୁକୁରଂ ସ୍ୱଚ୍ଛ ନିର୍ମଳଂ ॥
ଗନ୍ଧ ପୁଷ୍ପୈର୍ଭୂଷୟିତ୍ୱା ବାସ ପ୍ରାସାଦୟେତ୍ପୁନଃ ।
ରାତ୍ରୌ । ଜାଗରଣଂ କୁର୍ଯ୍ୟାତ୍ ଗୀତ ନୃତ୍ୟାଦିଭିଃ ସହୈଃ ।
ବୀଣା ମୃଦଙ୍ଗ ପଟହୈର୍ମହୋକ୍ଷବତସ୍ତ୍ରା ନୃପ ।
ଦକ୍ଷତସ୍ତ୍ରା ବିଶିଷ୍ଟାଶ୍ଚ୍ୟଂ ଉତ୍ତମ୍ୟା ପ୍ରଭବୋତ୍ତମୈଃ ॥"
(ନୀଳାଦ୍ରି ମହୋଦୟ ୩୨ ଅଧ୍ୟାୟ)

ଶୋଳ ପୂର୍ଣ୍ଣିମା ପ୍ରଭାତରେ ପ୍ରତିହାରୀ ନିଯୋଗ ସମ୍ମୁଖରେ କୋଠ ସୁଆଁସିଆ ନର୍ମିତ ଯଜ୍ଞଶାଳାରେ (ଶ୍ରୀଜଗନ୍ନାଥଙ୍କ ସକାଳ ଧୂପ ସମୟରେ) ଦେଉଳ ପୁରୋହିତ ଅନ୍ୟ କେତେକ ଆଚାର୍ଯ୍ୟ ଉପସ୍ଥିତିରେ ପର୍ବ ଯୋଗ ଯୋଗଣିଆ ପ୍ରଦତ୍ତ ଘୃତ ଓ ହୋ ସାମଗ୍ରୀରେ, ହୋମ କାର୍ଯ୍ୟ ସମାପନ କରନ୍ତି । ହୋମ କା ସମାପନ ପରେ ବ୍ରାହ୍ମଣମାନଙ୍କୁ ଭୋଜନ ଓ ଦକ୍ଷିଣା ଦେ ବିଧେୟ ।

"ପଞ୍ଚୋପଚାର ବିଧିନା କୃତ୍ୱା ହୋମମଥାଚରେତ୍ ।
ପ୍ରଥମଂ ସଂହୁନେଦ୍‌ଭୂପ ଶ୍ଚଘୋରସ୍ୟ ଚତୁଷ୍ଟୟମ୍ ॥
ପୁଣ୍ୟାହବାଚନଂ କୃତ୍ୱା ଭୂଭାଜିକନବାହୁତିମ୍ ।
କୁର୍ଯ୍ୟାଦ୍ଧୋମ ମହୀପାଳ ଭାରାଦିକନବାହୁତିମ୍ ॥"
(ନୀଳାଦ୍ରି ମହୋଦୟ ୩୨ ଅଧ୍ୟାୟ)

ଜୀଉଙ୍କ ସକାଳ ଧୂପ ସରିବା ପରେ ଭିତରେ ପାଣି ପଡ଼େ ମହାପ୍ରଭୁଙ୍କ (ଜଗନ୍ନାଥଙ୍କ) ବାଡ଼ରେ ମୈଲମ ହୋଇ ତଡ଼ଉ ଉତ୍ତରୀ ଲାଗି ହୁଏ । ଏହାପରେ ପାଣି ପଡ଼ି ମହାସ୍ନାନ ପୂଜା ହୁଏ । ମୁଦ ଦିଆ ହୋଇଥିବା ଭୋଗ ମଣ୍ଡପ ଦ୍ୱାରା ଉନ୍ମୋଚି ହୁଏ । ଗତ ଦିନ ଅଧିବାସ ହୋଇଥିବା ଘୃତକୁ ତତାଇବା ପା ସୁହୁ ସୁଆର ରୋଷ ଶାଳାରୁ ଲୌହ ତଙ୍କି ସାହାଯ୍ୟରେ ତାତ ଅଗ୍ନି ଆଣନ୍ତି । ଅଗ୍ନିରେ ଘୃତ ଗରମ କରି କୁମ୍ଭସ୍ଥିତ ଜଳ ମିଶାନ୍ତି । ପାଳିଆ ପ୍ରତିହାରୀ ଭିତରେ ଓ ବାହାର ଟେରା ଅଧିବାସ ହୋଇଥିବା ଜଳଛେକ ଭୋଗ ମଣ୍ଡପରୁ ରତ୍ନ ସିଂହାସ ନିକଟକୁ ଆଣିବା ପାଇଁ ଡାକି ଯାଆନ୍ତି । ଗରାବଡୁମା ବାଘମୁହିଁ ବାନ୍ଧି (ମୁଖ ବସ୍ତ୍ରାଚ୍ଛାଦାନ କରି) ଘୃତ ମିଶ୍ରିତ ଗରାମାନଙ୍କୁ ହାତରେ ଧରି ଘଣ୍ଟା, ଛତା ଓ କାହାଳୀ ସହ ମହାପାତ୍ର ଓ ପ୍ରଧାନିଙ୍କ ହକ୍‌ପେଠ ପଟୁଆରରେ ଭିତରକୁ ସିଂହାସନ ସମ୍ମୁଖକୁ) ଯାଆନ୍ତି ଓ ଉକ୍ତ ଅଧିବାସ ଜଳ ଗରା ଥରରେ ଭିତରକୁ ଯାଏ ଓ ଗ୍ରୀରି ପଣ୍ଡିରେ ସ ରଖାଯାଏ ।

"ପରିଧାନୋତ୍ତରୀୟୋଽଥ ଦଦ୍ୟାତ୍ତସ୍ମୈ ମୁରାରୟେ ।
ତତଃ କାହାଳ ଛତ୍ରୋଦ୍ୟାଦ୍ ଘଣ୍ଟାଦ୍ୟୁହବ ସଂଯୁତଃ ॥
କଳଶାଂ ସ୍ତାନ୍ ହରେରଗ୍ରେ ଆନୀୟ ପଂକ୍ତିତୋ ନ୍ୟସେତ୍ ।"
(ନୀଳାଦ୍ରି ମହୋଦୟ ୩୨ ମଧ୍ୟାୟ)

"ପ୍ରାତଃ ପୂଜାଦ୍ୱସତ୍ୟାନ୍ତେ ଘଟାନାନୀୟ ଭୃତ୍ୟଵୈଃ ।
କଳଶାନ୍ ତାନ୍ ପ୍ରଭୋରଗ୍ରେ ନ୍ୟସେତ୍ ପଂକ୍ତି ତସ୍ମା ଦ୍ୱିଜଃ ॥"
(ବାମଦେବ ସଂହିତା ୨୦/୩୬)

ପାଳିଆ ପ୍ରତିହାରୀ ଶୀତଳ ଭୋଗ ପାଇଁ ଡାକି ଯାଆ ଛେକ ଆସିଲା ପରେ ମୁଦିରସ୍ତଙ୍କ ଦ୍ୱାରା ପ୍ରସାଦ ଲାଗି ହୁ ଏହାପରେ ଦେଉଳ ପୁରୋହିତ ସିଂହାସନ ତଳକୁ ଯାଇ ପଟି ଆଲୋକିତ ପୂଜା ଠାଁ ପିଢ଼ାରେ ବସି ପଞ୍ଚୋପଚାର ପୂଜାରେ ଓ ଦୀପ ପ୍ରଦାନ କରନ୍ତି । ପୂଜା ପଣ୍ଡା ଓ ପୁରୋହିତ ଅଧିବା ଦର୍ପଣ ହସ୍ତରେ ଧରିଥିବା ବେଳେ ଗରାବଡୁ ଓ ଜଳ ଆଣିଥିବା ସେବକମାନେ ଜୀଉଙ୍କ ପ୍ରତିବିମ୍ବିତ ଦର୍ପଣୋ (କେବଳ ଜଗନ୍ନାଥଙ୍କ ବାଡ଼ରେ) ଘୃତ ମିଶ୍ରିତ ଅଧିବାସ ଜଳ ଗରା ଲାଗି କରନ୍ତି । ଶ୍ରୀଜଗନ୍ନାଥଙ୍କୁ ରାବଣାନ୍ତକ ବା ରାବ ଶ୍ରୀରାମଚନ୍ଦ୍ର ରୂପେ ପ୍ରାର୍ଥନା କରି ପୁରୁଷ ସୂକ୍ତ, ଦେବୀ ସୂକ୍ତ ଗାୟତ୍ରୀ ଉଚ୍ଚାରଣ ପୂର୍ବକ ଜଳାଭିଷେକ କରିବା ବିଧେ (ସୀତାରାମ ଉଭୟ ଅଭିଷିକ୍ତ ହେଉଥିବାରୁ ପୁରୁଷ ସୂକ୍ତ ଓ ଦେ

ସୂକ୍ତ ପାଠ କରାଯାଏ । ଶ୍ରୀରାମଚନ୍ଦ୍ର ସୂର୍ଯ୍ୟବଂଶ ସମ୍ଭୂତ ହୋଇଥିବାରୁ ଓ ବିଶ୍ୱାମିତ୍ର ଗାୟତ୍ରୀ ମନ୍ତ୍ରର ମନ୍ତ୍ରଦ୍ରଷ୍ଟା ଋଷି ହୋଇଥିବାରୁ ଗାୟତ୍ରୀ ମନ୍ତ୍ର ପାଠ କରାଯାଏ ।।

"ଜଗନ୍ନାଥ ନମସ୍ତେଽସ୍ତୁ ନମସ୍ତେ ରାବଣାନ୍ତକ ।
ନାନାବତାର ଲୀଳାଭୂର୍ନୀଳଶୈଳପତେ ପ୍ରଭୋ ॥
ଦିବ୍ୟେଽସ୍ମିନ୍ ପ୍ରତିବିମ୍ବେ ତ୍ୱାଂ ତତ୍କୁମ୍ଭ ଜଲତୋଽଧୁନା ।
ସ୍ନାପୟାମି ସୁରାଧୀଶ ଅପରାଧଂ କ୍ଷମସ୍ୱମେ ॥
ଇତ୍ୟୁକ୍ତ୍ୱା ତତ୍ଜଲୈରେବଂ ପୁରୁଷ ସୂକ୍ତେନ ସେଚୟେତ୍ ।
ଶ୍ରୀସୂକ୍ତେନ ମହୀନାଥ ପାବମାନୀତି ସୁବ୍ରତଃ ॥
ଦେବୀ ସୂକ୍ତେନ ଚ ପୁନଃ ସ୍ନାପୟେତ୍ତଂ ଶନୈଃ ।
ଗାୟତ୍ରୀଂ ଚ ସହସ୍ରାକ୍ଷ ପଠନ୍ନାଗ୍ରୁର୍ଯ୍ୟ ସତ୍ତମଃ ॥
ଗାୟତ୍ରୀଂ ଚ ସହସ୍ରାକ୍ଷଂ ପଠନ୍ନାଗ୍ରୁର୍ଯ୍ୟ ସତ୍ତମଃ ।
ଘୃତେନ ସ୍ନାପୟେଦ୍ଦେବୀରୋ ମନ୍ଦମନ୍ଦଂ ମୁଦାନ୍ୱିତଃ ॥"
(ନୀଳାଦ୍ରି ମହୋଦୟ ୩୨ ଅଧ୍ୟାୟ)

ଏହାପରେ ଭିତରେ ପାଣି ପଡ଼େ ଓ ପଶୁପାଳକ ସେବକମାନେ ମେଲମ କରି ନବ ବସ୍ତ୍ର ପରିଧାନ କରନ୍ତି । ଘଟୁଆରୀଠାରୁ ପଣ୍ଡା, ପତି ଓ ମୁଦିରଥ ରୁପା ପିଙ୍ଗାଣରେ ଚନ୍ଦନ ବିଜେ କରାଇ ଆଣି ଜୀଉଙ୍କୁ ସର୍ବାଙ୍ଗ କରନ୍ତି ।

"ବସ୍ତ୍ରାଦିକଂ ବିହିଷ୍କୃତ୍ୟ ଚନ୍ଦନଂ ଲୋପୟେ ତତଃ ।"
(ବାମଦେବ ସଂହିତା ୨୦/୪୩)

"ତତସ୍ତତ୍ ପ୍ରୋଞ୍ଛନଂ କୃତ୍ୱା ଦେବାଙ୍ଗୀଚ ତତୋନୃପ ।
ବସ୍ତ୍ର ମାଲ୍ୟାଦିକଂ ତାବତ୍ ବହିଷ୍କୁର୍ଯ୍ୟାତ୍ ଶନୈଃ ଶନୈଃ ॥
ସର୍ବାଙ୍ଗ ବିଲେପନଂ କୃତ୍ୱା ତତୋ ନବ୍ୟାସରାର୍ପଣଂ ।
ଅଲଙ୍କାରୈଶ୍ଚ ମାଲ୍ୟୈଶ୍ଚ ଭୂଷୟେ କ୍ତ ବସ୍ତ୍ରକଂ ॥"
(ନୀଳାଦ୍ରି ମହୋଦୟ ୩୨ ଅଧ୍ୟାୟ)

ଏହାପରେ ଶ୍ରୀଦେବୀ ଆଜ୍ଞାମାଳ ପାଇ ମହାଜନଙ୍କ ହସ୍ତରେ ବିଜେ ହୋଇ ସାତ ପାହାଚ ସମ୍ମୁଖରେ ଥିବା ପାଲିଙ୍କିରେ ବିଜେ ହୁଅନ୍ତି । ବିମାନ ବଡୁମାନେ ପାଲିଙ୍କିରେ ଶ୍ରୀଦେବୀଙ୍କୁ ମହାଲକ୍ଷ୍ମୀଙ୍କ ମନ୍ଦିରକୁ ନେଇଯାଆନ୍ତି । ଶ୍ରୀଦେବୀ ମହାଲକ୍ଷ୍ମୀ ମନ୍ଦିର ଜଗମୋହନସ୍ଥିତ ଖଟ ଉପରେ ବିଜେ ହେଲେ ମାଜଣା ଓ ବନକ ଲାଗି ବେଶ ହୁଏ । ରତ୍ନ ସିଂହାସନରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଅଭିଷେକ ବେଶରେ ସୁବର୍ଣ୍ଣ ଅଳଙ୍କାର, ପୁଷ୍ପ ମାଲ୍ୟ ଓ କର୍ପୂର ଲାଗି ହୁଏ । ପାଣି ପଡ଼ିବା ପରେ ପାଲିଆ ପ୍ରତିହାରୀ ଭିତର ଓ ବାହାର ବେରା ବାନ୍ଧି ପୁଷ୍ପାଭିଷେକ ଯାବାଜି ଭୋଗ ପାଇଁ ରୋଷକୁ ଡ଼ାକି ଯାଆନ୍ତି । ରୋଷରୁ ତଳିଚ୍ଛୁ ମହାପାତ୍ରଙ୍କ ପଟୁଆରରେ ଘଣ୍ଟ, ଛତା ଓ କାହାଳି ସହ ଭୋଗ ଜୀଉଙ୍କ ଛାମୁକୁ ଆସେ । ଏହାପରେ ବାହୁଡ଼ା ବିଜେ ହୋଇ ପାଲିଙ୍କିରେ ଶ୍ରୀଦେବୀ ପ୍ରତ୍ୟାବର୍ତ୍ତନ କରନ୍ତି ଓ ରତ୍ନ ସିଂହାସନରେ ଜୀଉଙ୍କ ଶ୍ରୀଅଙ୍ଗ ଲାଗି ହୁଅନ୍ତି । ଏହାପରେ ମୁଦିରସ୍ତ ପ୍ରସାଦ ଲାଗି କରନ୍ତି । ସେବକ ଭିତରଛୁ ମହାପାତ୍ର ରତ୍ନ ସିଂହାସନ ଉପରକୁ ଉଠି ଲକ୍ଷ୍ମଣ ରୂପରେ ମୁଦିରସ୍ତଙ୍କ ଦ୍ୱାରା ସଂସ୍କୃତ ଦଣ୍ଡଛତ୍ର ଧାରଣ କରନ୍ତି । ପାଲିଆ ଭଣ୍ଡାର ମେକାପ ଦଣ୍ଡଛତ୍ର ମୂଳକୁ ଉଚ୍ଚ ହନୁମାନ ରୂପେ ଧାରଣ କରନ୍ତି । ଏହାପରେ ପୂଜାପଣ୍ଡାଙ୍କ ଦ୍ୱାରା ଷୋଡ଼ଶୋପଚାରରେ ନୈବେଦ୍ୟ ପୂଜା ହୁଏ । ପୂଜା ସାରି ପାଣି ପଡ଼ିଲେ ପଣ୍ଡା, ପତି ଓ ମୁଦିରସ୍ତ ତିନି ବାଡ଼ରେ ବନ୍ଦାପନା କରନ୍ତି । ମୁଦିରସ୍ତ ପୁଷ୍ପ ଶର ଓ ଆୟୁଧ ଜୀଉଙ୍କ ହସ୍ତରେ ଲାଗି କରନ୍ତି । ସିଂହାସନ ଉପରେ ଚାମର ଆଲଟ କରି ସିଂହାସନରୁ ଓହ୍ଲାଇ ତଳେ ଚାମର ଆଲଟ କରନ୍ତି ଓ ଘଣ୍ଟା ବିଡ଼ିଆ ମଣୋହି କରନ୍ତି ।

"ବସ୍ତ୍ରାଲଙ୍କାର ମାଲ୍ୟୈଶ୍ଚ ଭୂଷୟେତ୍ ପରମେଶ୍ୱର ।
ଛତ୍ରଂ କାହାଳ ଘଣ୍ଟାଦି ନାଦଂ କୁର୍ଯ୍ୟାତ୍ ସୁସଂଯତଃ ॥
ଆନୀୟ ପାକଶାଳାୟାଷ୍ଟାରୁ ନୈବେଦ୍ୟକଂ ପ୍ରିୟେ ।
ପଞ୍ଚପଂକ୍ତିତୟା ରକ୍ଷେତ୍ ଦେବାଗ୍ରେ ଶ୍ୱେତ ଛତ୍ରକମ୍ ॥
ସଂସ୍କୃତ୍ୟାଽପ୍ୟଗ୍ନି ଶର୍ମାପି ପୀତବସ୍ତ୍ର ଦ୍ୱୟଂ ତଥା ।
ମାଲ୍ୟ ଦାମନକଂ ପୀତବସ୍ତ୍ରଂ ଦେବାୟ ଦାପୟେତ୍ ॥
ବନ୍ଦାପୟେତ୍ତୁ ନମତୋ ଭକ୍ତିଭାବ ସମନ୍ୱିତାଃ ।"
(ବାମଦେବ ସଂହିତା ୨୦/୪୪-୪୮)

"କାହାଳ ଛତ୍ର ଘଣ୍ଟାଦି ସଫୁରତ୍ ଅଗ୍ରତସ୍ତା ଶନୈଃ ।
ଆନିୟେକାରୁ ନୈବେଦ୍ୟଂ ପାକଶାଳାନ୍ତରାତ୍ ବହୁ ॥
ପଞ୍ଚ ପଂକ୍ତିସ୍ତୋ ରକ୍ଷେତ୍ ଦେବାଗ୍ରେ ତନୁହୀପତେ ।
ଅଗ୍ନିଶର୍ମା ଚନ୍ଦନଂ ଚ ପୀତବସ୍ତ୍ରଂ ଦ୍ୱୟ ତଥା ॥
ଦାମ ଦାମନକଂ ଦିବ୍ୟଂ ଦେବଦେବାୟ ଦାପୟେତ ।
ଶ୍ୱେ ଛତ୍ରଂ ଚ ସଂସ୍କୃତ୍ୟ ସମର୍ପୟତି ସାଦରଂ ॥
ବନ୍ଦାପୟେୟୁଃ ନମତୋ ଭକ୍ତିଭାବ ସମନ୍ୱିତାଃ ।"
(ନୀଳାଦ୍ରି ମହୋଦୟ ୩୨ ଅଧ୍ୟାୟ)

ଏହି ସମୟରେ ଅଖଣ୍ଡ ମେକାପ ବଇଠା ହାତରେ ଧରି ମହାପ୍ରଭୁଙ୍କ ବାଡ଼ରେ ଛିଡ଼ା ହୋଇଥାଆନ୍ତି । ପାଳିଆ ଖୁଣ୍ଟିଆ ବେତ ଧରି ମଣିମା, ମଣିମା ଡାକ ପାରୁଥାଆନ୍ତି । ରାଜନୀତି ଓ ବନ୍ଦାପନା ସରିବା ପରେ ମୁଦିରସ୍ତ ସିଂହାସନ ଉପରେ ଉଠି ପୁଷ୍ପ ଧନୁଶର ଓ ଗଦି ପ୍ରସାଦ ମେଲମ କରନ୍ତି ଓ ଭିତରଛୁ ଦଣ୍ଡଛତ୍ର ମେଲମ କରି ସିଂହାସନ ତଳକୁ ଦିଅନ୍ତି । ଦକ୍ଷିଣ ଗୃହ ଭୋଗ ସରିଲେ ମହାଜନଙ୍କ ହସ୍ତରେ ରଘୁନାଥ (ପିତ୍ତଳ ପ୍ରତିମା) ରତ୍ନ ସିଂହାସନରେ ବିଜେ ହୁଅନ୍ତି ଓ ଶ୍ରୀଜଗନ୍ନାଥଙ୍କ ଆଜ୍ଞାମାଳ ପାଇବା ପରେ ମହାଜନଙ୍କ ହସ୍ତରେ ସାତ ପାହାଚସ୍ଥିତ ପାଲିଙ୍କିରେ ବିଜେ ହୋଇ ବିମାନବଡୁଙ୍କ କାନ୍ଧରେ ବାହାର ଅଭିଷେକ ପାଇଁ ମହାଲକ୍ଷ୍ମୀଙ୍କ ମନ୍ଦିରରେ ବିଜେ ହୁଅନ୍ତି । ମୁଳିଆ ସୁଆଁସିଆ ପ୍ରଦତ୍ତ କାଷ୍ଠ ଉଦ୍ୱାସନ ଉପରେ ରଘୁନାଥ ବିଜେ ହୋଇ ମହାସ୍ନାନ କରନ୍ତି । ତାପରେ ଆସ୍ଥାନ ପ୍ରତିହାରୀ ସର ଗୃହକୁ ଭୋଗ ଡାକି ଯାଆନ୍ତି । ଭୋଗ ଓ ବନ୍ଦାପନା ପରେ ପାଲିଙ୍କିରେ ବାହୁଡ଼ା ବିଜେ ହୋଇ ରଘୁନାଥ ଦକ୍ଷିଣ ଗୃହକୁ ପ୍ରତ୍ୟାବର୍ତ୍ତନ କରନ୍ତି ।

ରଘୁନାଥଙ୍କ ଦକ୍ଷିଣ ଗୃହକୁ ବାହୁଡ଼ା ବିଜେ ପରେ ଅଣସର ପିଣ୍ଡିରେ ମୁଦିରସ୍ତ ନିଜ ମସ୍ତକରେ ବର୍ଣ୍ଣ ପଡ଼ି ଶାଢ଼ୀ ବାନ୍ଧନ୍ତି । ଶାଢ଼ୀ ବନ୍ଧା ପରେ ମୁଦିରସ୍ତ ଆସ୍ଥାନ ପ୍ରତିହାରୀ ଓ ପାଳିଆ ଖୁଣ୍ଟିଆଙ୍କ ସଙ୍ଗେ ସିଂହଦ୍ୱାର ଦେଇ ଜମେଶ୍ୱରଙ୍କ ନିକଟକୁ ବିଜେ କରନ୍ତି ଓ ସେଠାରୁ ଫେରି ମଙ୍ଗଳାର୍ପଣ ବଢ଼ିବା ପରେ ଶାଢ଼ୀ ଉତାରି ସ୍ୱଗୃହରେ ଅବସ୍ଥାନ କରନ୍ତି ଏବଂ ଆସ୍ଥାନ ପ୍ରତିହାରୀ ଓ ପାଳିଆ ଖୁଣ୍ଟିଆ ସ୍ୱଗୃହ ପ୍ରତ୍ୟାବର୍ତ୍ତନ କରନ୍ତି ।

ତ୍ରୈଲୋକ୍ୟ ଚିନ୍ତାମଣି ପରଂବ୍ରହ୍ମ ଶ୍ରୀଜଗନ୍ନାଥ କଳ୍ପକଳ୍ପାନ୍ତର, ଯୁଗଯୁଗାନ୍ତର ରାମକୃଷ୍ଣାଦି ବିବିଧ ରୂପରେ ଅବତାର ଗ୍ରହଣ କରି

ବହୁ ଲୀଳାବିଳାସ ପ୍ରଦର୍ଶନ କରିଥାଆନ୍ତି । ମହାପ୍ରଭୁ ନୀଳାଦ୍ରିନାଥଙ୍କ ପୁଷ୍ପାଭିଷେକ ସର୍ବ ପାପ ନାଶକାରୀ, ଅତୀବ ପୁଣ୍ୟପ୍ରଦ ଓ ଦର୍ଶନକୁ ଚତୁର୍ବର୍ଗ ଫଳ ପ୍ରଦାନ କରେ । ଏହା ପ୍ରାମାଣିକ ଗ୍ରନ୍ଥ ସ୍କନ୍ଦ ପୁରାଣ, ବାମଦେବ ସଂହିତା, ନୀଳାଦ୍ରି ମହୋଦୟ ଓ ଯାତ୍ରା ଭାଗବତ ସମର୍ଥିତ । ଶ୍ରୀଭୁବନେଶ୍ୱରଙ୍କ ଚତୁର୍ଦ୍ଦଶ ଯାତ୍ରା ମଧ୍ୟରେ ପୁଷ୍ୟ ପୂଜା ଅନ୍ୟତମ ଓ ପୁଣ୍ୟପ୍ରଦ ।

"ପୁଷ୍ପ ସ୍ନାନୋତ୍ସବ ପୁଣ୍ୟଂ ଯେ ପଶ୍ୟନ୍ତି ମୁଦାନ୍ୱିତାଃ ।
ସମ୍ପୂର୍ଣ୍ଣ ସର୍ବ କାମାସ୍ତେ ବ୍ରଜେୟୁର୍ବୈଷ୍ଣବଂ ପଦମ୍ ॥"
(ସ୍କନ୍ଦ ପୁରାଣ ୪୧/୨୧

"ପୁଷ୍ପାଭିଷେକଂ ଯେବେ ତେ ପଶ୍ୟନ୍ତି ଭୁବିମାନବାଃ ।
ସର୍ବ ପାପବିନିର୍ମୁକ୍ତା ବିଷ୍ଣୁଲୋକଂ ବ୍ରଜନ୍ତି ଚ ॥"
(ବାମଦେବ ସଂହିତା ୨୦/୪୮–୪୯)

"ଅଭିଷେକୋତ୍ସବଂ ଯେବେ ପଶ୍ୟନ୍ତି ଭୁବିମାନବାଃ ।
ସର୍ବ ପାପବିନିର୍ମୁକ୍ତା ଶମୀକ୍ଷିଳଂ ପରଂ ॥
ସର୍ବାନ୍ କାମାନ୍ ପରଂ ଲବ୍ଧ୍ୱା ବିଷ୍ଣୁଲୋକଂ ବ୍ରଜନ୍ତି ତେ ।"
(ନୀଳାଦ୍ରି ମହୋଦୟ ୩୨ ଅଧ୍ୟାୟ)

"ଯଃ ପୁଷ୍ୟ ପୌର୍ଣ୍ଣମାସ୍ୟାଂ ତୁ ଲିଙ୍ଗଂ ନିରାଜିତଂ ମୁନେ ।
ଯକ୍ଷେଶ୍ୱଯାତି ଭାବନମିନ୍ଦ୍ରସ୍ୟ ତ୍ରିଦଶାର୍ଚ୍ଚିତଂ ॥"
(ଏକାମ୍ର ପୁରାଣ)

---

ସମ୍ପାଦକ, "ମହାପ୍ରଭୁ",
ବୃନ୍ଦାବନ ଧାମ,
ଲୋକନାଥ ରୋଡ୍,
ପୁରୀ–୭୫୨୦୦୧ ।




ଭବାନୀପାଟଣାଠାରେ ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଶିଶୁ ପ୍ରସୂତି ୱାର୍ଡ ଓ ଚକ୍ଷୁ ୱାର୍ଡର ଶିଳାନ୍ୟାସ କରୁଛନ୍ତି ।

# ଜାତୀୟ ଯୁବନୀତି

ଶ୍ରୀ ବରଦା ପ୍ରସନ୍ନ ଦାସ

ବିଶ୍ୱ ବରେଣ୍ୟ ସ୍ୱାମୀ ବିବେକାନନ୍ଦଙ୍କ ଜନ୍ମ ଦିବସକୁ ଆଖି ଆଗରେ ରଖି ୧୯୮୫ ମସିହାଠାରୁ ଜାନୁୟାରୀ ୧୨ ତାରିଖ ଦିନଟିକୁ ଜାତୀୟ ଯୁବ ଦିବସ ରୂପେ ଅଭିହିତ କରାଯାଇଛି ଏବଂ ସରକାରୀ ଓ ବେସରକାରୀ ସ୍ତରରେ ବିଭିନ୍ନ ଯୁବ ସମାରୋହ, ସଭା, ଶୋଭାଯାତ୍ରା ଆଦି ଜରିଆରେ ଯୁବ ଦିବସ ପାଳନ କରାଯାଉଛି । ଯୁବ ବୟସରେ ଧର୍ମ ଓ ଆଧ୍ୟାତ୍ମିକ କ୍ଷେତ୍ରରେ ବିଶ୍ୱାକୁ ନୂତନ ଦିଗ୍‌ଦର୍ଶନ, ପ୍ରେରଣା ଓ ଆଲୋକ ଦେବାରେ ସକ୍ଷମ ହୋଇପାରିଥିଲେ ସ୍ୱାମୀ ବିବେକାନନ୍ଦ । ସ୍ୱାମୀଜୀ ଦେଶର ଯୁବ ସମାଜ ଶକ୍ତିର ଉତ୍ସ ବୋଲି ଭାବି ସେହିମାନଙ୍କ ଉଦ୍ଦେଶ୍ୟରେ କହିଥିଲେ "ନିର୍ଭିକତା, ଏକାଗ୍ରତା, ବ୍ରହ୍ମଚର୍ଯ୍ୟ ପାଳନ, ସଂଯମ ଓ ଶୃଙ୍ଖଳାବୋଧ ପ୍ରମୁଖ ଗୁଣଗୁଡ଼ିକ ଯଦି ଯୁବକ ଆୟତ୍ତ କରିବାରେ ସାମର୍ଥ୍ୟ ହରାଏ, ତେବେ ତା'ର ଭବିଷ୍ୟତ ଜୀବନ ବିଫଳ ହୁଏ । ଦେଶ ଓ ଜାତି ଦେଶର ଯୁବକମାନଙ୍କଠାରୁ ଯଥେଷ୍ଟ ଆଶା କରେ । ଯୁବକ ନିର୍ମଳ ଓ ନିଷ୍କଳଙ୍କ ହୃଦୟରେ ସମସ୍ତ ବିଷୟକୁ ନୂତନ ଦୃଷ୍ଟିକୋଣରୁ ଚିନ୍ତା କରେ । ଯୁବ ସମାଜ ଦ୍ୱାରା ଅସାଧ୍ୟ ସାଧ୍ୟ, ଯୁବ ଶକ୍ତି ଦ୍ୱାରା ଶାସନରେ ପରିବର୍ତ୍ତନ ଓ ଦେଶର ପ୍ରଗତି ସମ୍ଭବ ହୁଏ ।

ଦେଶର ସୀମିତ ସମ୍ବଳ ଓ ବୈଦେଶିକ ଋଣ ଭାର ବୋଝ ସାଙ୍ଗକୁ ଦ୍ରୁତ ଜନସଂଖ୍ୟା ବୃଦ୍ଧି ଯୋଗୁଁ ସ୍ୱାବଲମ୍ବୀ ଓ ଚାକିରୀ ପାଇଁ ନୈରାଶ୍ୟ ଓ ଅନିଶ୍ଚିତତା ମଧ୍ୟରେ ଗତି କରୁଥିବା ଏହି ଯୁବ ସମାଜକୁ ସୁମାର୍ଗରେ ପରିଚାଳିତ କରି ସମାଜ ସଂସ୍କାର ଓ ଦେଶର ପ୍ରଗତୀ ନିମନ୍ତେ ସବୁ ରାଜ୍ୟରେ ଆଲୋଚନା ସଭା ସଙ୍ଗଠିତ କରାଇ ଯୁବ ମତାମତ ସଂଗ୍ରହ ପରେ ସମ୍ପ୍ରତି ସରକାର ଜାତୀୟ ଯୁବନୀତି ପ୍ରଣୟନ କରିଛନ୍ତି ।

ଭାରତର ସମଗ୍ର ଲୋକସଂଖ୍ୟାର ଏକ ତୃତୀୟାଂଶ ହେଉଛି ଏହାର ଯୁବ ଶକ୍ତି । ଜନସଂଖ୍ୟା ପ୍ରକଳ୍ପ ଅନୁସାରେ ଯୁବଶକ୍ତିର ସଂଖ୍ୟା ୧୯୯୦-୯୧ ମସିହାରେ ପ୍ରାୟ ୨୯୬ ନିୟୁତକୁ ବଢ଼ିବ ଓ ଏହା ୧୯୯୬ ମସିହାରେ ୩୨୮ ନିୟୁତରେ ପହଞ୍ଚିବ । ବର୍ତ୍ତମାନ ଅବସ୍ଥାକୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ଭାରତର ଯୁବ ଶକ୍ତି ୨୦୦୦ ମସିହା ବେଳକୁ ୩୫୬ ନିୟୁତକୁ ବଢ଼ିଯିବାର ସମ୍ଭାବନା ଅଛି । ୧୯୮୧ ମସିହା ଜନଗଣନା ଅନୁଯାୟୀ ସମୁଦାୟ ଯୁବ ଶକ୍ତି ମଧ୍ୟରେ ପୁରୁଷମାନଙ୍କ ସଂଖ୍ୟା ଶତକଡ଼ା ୪୯ ଏବଂ ମହିଳାମାନଙ୍କ ସଂଖ୍ୟା ଶତକଡ଼ା ୫୧ । ଅତ୍ୟନ୍ତ ଆକର୍ଷଣୀୟ ବିଭାବ ହେଉଛି : ଶତକଡ଼ା ୭୩ ଭାଗ ଯୁବ ଶକ୍ତି ଗ୍ରାମାଞ୍ଚଳରେ ବସବାସ କରନ୍ତି । ଭାରତରେ ଶତକଡ଼ା ୫୦ ଭାଗ ଯୁବ ଶକ୍ତି ଶିକ୍ଷିତ । ଦେଶର ଯୁବ ଶକ୍ତିକୁ ତିନୋଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ । ଯଥା : ୧୫ରୁ ୧୯ ବର୍ଷ ବୟସର ନିମ୍ନ କନିଷ୍ଠ ବ୍ୟକ୍ତି, ୨୦ରୁ ୨୪ ବର୍ଷ ବୟସର କନିଷ୍ଠ ବ୍ୟକ୍ତି ଏବଂ ୨୫ରୁ ୩୫ ବର୍ଷ ବୟସର ବୟୋଜ୍ୟେଷ୍ଠ ବ୍ୟକ୍ତି । ସେହି ହିସାବରେ ଦେଖିବାକୁ ଗଲେ ସମଗ୍ର ଯୁବ ଶକ୍ତି ମଧ୍ୟରୁ ନିମ୍ନ କନିଷ୍ଠ ବ୍ୟକ୍ତି, କନିଷ୍ଠ ବ୍ୟକ୍ତି ଏବଂ ବୟୋଜ୍ୟେଷ୍ଠ ବ୍ୟକ୍ତି ହେଉଛନ୍ତି ୩୦,୨୬.୭ ଏବଂ ୪୩.୩ ଭାଗ । ଯେହେତୁ ଏହି ତିନି ଶ୍ରେଣୀ ବିଶିଷ୍ଟ ଯୁବ ଶକ୍ତିର ଆବଶ୍ୟକତା ଏବଂ ସମସ୍ୟା ଭିନ୍ନ ଭିନ୍ନ, ସେଥିପାଇଁ ଯୋଜନା ଏବଂ କର୍ମ ତାଲିମ କ୍ଷେତ୍ରରେ ଉତ୍ତମ ଚିନ୍ତା ଓ ବିଚାର ପାଇଁ ଏହି ଶ୍ରେଣୀ ବିଭାଗ ଅପରିହାର୍ଯ୍ୟ । ୨୦ରୁ ୨୬ ବର୍ଷ ବୟସର ଅଧିକାଂଶ ବେକାର ଥିବା ଜଣାଯାଏ । ଅବଶ୍ୟ କିଛିତ ଶିକ୍ଷା ଅତି ସମସ୍ୟାଜନକ । ପ୍ରତ୍ୟେକ ସ୍ତରରେ ଶିକ୍ଷାକୁ ଅନୁସନ୍ଧାନ କରି ଦେଖାଯାଇଛି ଯେ ଯୁବ ଶକ୍ତିର ଶିକ୍ଷା କେବଳ ଚାକିରୀ ଏବଂ ପଖା ଉପରେ ନିର୍ଭର କରେ । ସର୍ଭେରୁ ଜଣାପଡ଼ିଛି ଯେ, ଚାକିରୀ ପାଇଁ ଗ୍ରାମାଞ୍ଚଳରୁ ଆସୁଥିବା ଯୁବକଙ୍କ ସଂଖ୍ୟା ସହର ଅପେକ୍ଷା ଯଥେଷ୍ଟ ବେଶୀ । ଆମ ଦେଶର ସମ୍ପ୍ରତି ୨୨୧ ନିୟୁତ ଯୁବକ ଯୁବତୀ ପ୍ରବଳ ଆଗ୍ରହ, ଉତ୍ସାହ, ଜ୍ଞାନ, ଦକ୍ଷତା ଥିବା ସତ୍ତ୍ୱେ ଅନିଶ୍ଚିତତା ମଧ୍ୟରେ ଗତି କରୁଛନ୍ତି । ଏହି ଅନିଶ୍ଚିତତା ହେତୁ ସେମାନେ ସ୍ୱାର୍ଥ ଲୋଭୀ କୁଚକ୍ରୀ ବ୍ୟକ୍ତିଙ୍କ ହାତବାରିସି ହୋଇ ଶିକାର ହେଉଛନ୍ତି ।

ଯୁବ ଶକ୍ତିର ଅଧିକାର ଏବଂ ନୈତିକ କର୍ତ୍ତବ୍ୟ ହେଉଛି ଜାତୀୟ ଉନ୍ନତି ଏବଂ ଦେଶର ଭବିଷ୍ୟତ ପାଇଁ ପୂର୍ଣ୍ଣ ପ୍ରାଣରେ ଅଂଶ ଗ୍ରହଣ କରିବା । ଏଣୁ ସେମାନଙ୍କର ବ୍ୟକ୍ତିତ୍ୱର ପରିସ୍ଫୁଟନ ପାଇଁ ସେମାନଙ୍କୁ ବିଭିନ୍ନ ପ୍ରକାର ସୁବିଧା ସୁଯୋଗ ଯୋଗାଇ ଦେବା ସହ ଦେଶର ପ୍ରଗତି ପାଇଁ ସଙ୍ଗଠିତ ଭାବେ ଯୁବ ଶକ୍ତିକୁ ବିନିଯୋଗ କରିବା ହେଉଛି ସରକାରଙ୍କର ଉଦ୍ଦେଶ୍ୟ । ଅର୍ଥ, କ୍ଷମତା, ଜାତି ପ୍ରଥା, ସାମ୍ପ୍ରଦାୟିକତା, ସାମାଜିକ କୁସଂସ୍କାର ଇତ୍ୟାଦି ସକଳ ପ୍ରକାର ସାମାଜିକ ବ୍ୟାଧିର ମୁକାବିଲା ନିମନ୍ତେ କେବଳ ଯୁବ ସମାଜ ହିଁ ସକ୍ଷମ ହୋଇପାରିବ, ଏହା ହିଁ ସରକାରଙ୍କ ଯୁବ ଶକ୍ତି

ପାଇଁ ଉଦ୍ଦିଷ୍ଟ ବିଭିନ୍ନ କାର୍ଯ୍ୟକ୍ରମର ଅନ୍ତର୍ନିହିତ ଉଦ୍ଦେଶ୍ୟ। ଏହାବ୍ୟତୀତ ଦେଶର ଗଣତନ୍ତ୍ର, ସମ୍ବିଧାନ ଓ ଧର୍ମ ନିରପେକ୍ଷତାକୁ ମର୍ଯ୍ୟାଦା ଦେବା ଓ ଅକ୍ଷୁର୍ଣ୍ଣ ରଖିବା ନିମନ୍ତେ ଯୁବ ଶକ୍ତିକୁ ଆବଶ୍ୟକ ସ୍ଥାନ ଓ ତଥ୍ୟ ଦେବା ହେଉଛି ଯୁବ ଶକ୍ତିର ସଦ୍ବିନିଯୋଗ ଦିଗରେ ଅନ୍ୟ ଏକ ବଳିଷ୍ଠ ପଦକ୍ଷେପ।

ଏଥିପାଇଁ ସରକାର ତିନୋଟି ପଦକ୍ଷେପ ନେଉଛନ୍ତି।

(୧) ପ୍ରଥମତଃ ଶିଳ୍ପ ଓ ସେବା କ୍ଷେତ୍ରରେ ସେମାନଙ୍କୁ ସୁରକ୍ଷିତ କର୍ମ ନିଯୁକ୍ତି ଦେବା ପାଇଁ ଆବଶ୍ୟକ ବୈଷୟିକ ଓ ଧନ୍ଦାମୂଳକ ପ୍ରଶିକ୍ଷଣ ଯୋଗାଇଦେବା।

(୨) ଦ୍ୱିତୀୟରେ ସାକ୍ଷରତା ଅଭିଯାନ, ପରିବାର ନିୟୋଜନ, ଯୌତୁକ ପ୍ରଥାର ବିଲୋପ, ମାଦକଦ୍ରବ୍ୟ ଅପବ୍ୟବହାରକୁ ରୋକିବା ଓ ବନୀକରଣ ଭଳି ଜାତୀୟ ଅଗ୍ରାଧିକାର କାର୍ଯ୍ୟରେ ସ୍କୁଲ ଓ କଲେଜ ଛାତ୍ରଛାତ୍ରୀମାନଙ୍କୁ ସଂଶ୍ଳିଷ୍ଟ କରିବା।

(୩) ତୃତୀୟରେ ଅର୍ଥନୈତିକ ଅନଗ୍ରସର ମେଧାବୀ ଛାତ୍ରଛାତ୍ରୀମାନଙ୍କୁ ଚାକିରୀ ବା କର୍ମ ନିଯୁକ୍ତି ସୁଯୋଗ ଯୋଗାଇଦେବା। ଏଥିରେ ଉଚ୍ଚ ବୈଷୟିକ ଶିକ୍ଷା ପାଇଁ ବୃତ୍ତି ପ୍ରଦାନ, ନିଜର ଉଦ୍ୟୋଗ ସ୍ଥାପନ ପାଇଁ ଋଣ ପ୍ରଦାନ, ଆତ୍ମ ନିଯୁକ୍ତି ଅଭିମୁଖୀ ଉଚ୍ଚତର ଶିକ୍ଷା ପାଇଁ ଶିକ୍ଷା ଋଣ ଇତ୍ୟାଦି ଅନ୍ତର୍ଭୁକ୍ତ। ଏ ବାବଦରେ ଚଳିତ ବର୍ଷ ବଜେଟ୍‌ରେ ୫୦ କୋଟି ଟଙ୍କାର ବ୍ୟୟ ବ୍ୟବସ୍ଥା ଏବଂ ଏକ ଲକ୍ଷ ଛାତ୍ରଙ୍କୁ ୫୦ କୋଟି ଟଙ୍କାର ଶିକ୍ଷା ଋଣ ଯୋଗାଇବାର ବ୍ୟବସ୍ଥା ହୋଇଛି।

ଯୁବନୀତି ଓ ଯୁବ କାର୍ଯ୍ୟକ୍ରମର ସଫଳତା ଶିକ୍ଷା ଓ ବୃତ୍ତି ଉପରେ ନିର୍ଭରଶୀଳ। ସମ୍ପ୍ରତି ଆମ ଦେଶର ଶତକଡ଼ା ୫୦ ଭାଗ ଯୁବକ ଯୁବତୀ ହେଉଛନ୍ତି ନିରକ୍ଷର। ସାକ୍ଷରତାର ପ୍ରସାର ପାଇଁ ଜାତୀୟ ସାକ୍ଷରତା ମିଶନ୍‌ରେ ବହୁ ସଂଖ୍ୟାରେ ଯୁବ ସ୍ୱେଚ୍ଛାସେବୀମାନଙ୍କୁ ସଂଶ୍ଳିଷ୍ଟ କରାଯାଉଛି। ଏଥିସକାଶେ ଚଳିତ ବର୍ଷ ବଜେଟ୍‌ରେ ୨୫ କୋଟି ଟଙ୍କାର ବ୍ୟୟ ବ୍ୟବସ୍ଥା ହୋଇଛି। ପ୍ରତ୍ୟେକ ଯୁବକ ଯଦି ପାଞ୍ଚଜଣ ନିରକ୍ଷରଙ୍କୁ ସାକ୍ଷର କରେ, ତେବେ ଖୁବ୍ କମ୍ ସମୟରେ ଦେଶରୁ ନିରକ୍ଷରତା ଦୂର କରାଯାଇ ପାରିବ। ସେହିଭଳି ପରିବେଶ ବିକାଶ ଓ ସଂରକ୍ଷଣ, ପରିବା[ର] କଲ୍ୟାଣ ଇତ୍ୟାଦି କାର୍ଯ୍ୟରେ ଯୁବ ଶକ୍ତିର ଉପଯୁକ୍ତ ବିନିଯୋ[ଗ] କରାଯାଇ ପାରିବ। ଯୁବ ଗୋଷ୍ଠୀ ସହ ମିଶି ବି[...] ସଙ୍ଗଠନମୂଳକ କାର୍ଯ୍ୟ କରିବା ପାଇଁ ସରକାର ଅଙ୍ଗୀକାରବ[ଦ୍ଧ]। ମୁକ୍ତ ଶିକ୍ଷା ଓ କର୍ମ ନିଯୁକ୍ତି ସୁଯୋଗ ହେଉଛି ନିଃସନ୍ଦେହରେ ଆ[...] ଯୁବ ଗୋଷ୍ଠୀର ମୌଳିକ ଆବଶ୍ୟକତା। ବେକାରୀ ସମ[ସ୍ୟା] ଦୂର କରିବା ପାଇଁ ଅଷ୍ଟମ ଯୋଜନାରେ କର୍ମ ନିଯୁକ୍ତି ସୃଷ୍ଟି[କୁ] ପ୍ରାଧାନ୍ୟ ଦିଆଯାଉଛି। ଚଳିତ ବର୍ଷ ନିଜ ନିଜର ବ୍ୟବସା[ୟ] ଆରମ୍ଭ କରିବା ପାଇଁ ସରକାର ଯୁବକମାନଙ୍କୁ ୧୨୦ କୋଟି ଟଙ୍[କା] ଋଣ ସହାୟତା ଯୋଗାଇ ଦେବା ବ୍ୟବସ୍ଥା କରିଛନ୍ତି। ଖଦୀ [ଓ] ଗ୍ରାମୋଦ୍ୟୋଗ ଅଧୀନରେ ଏକଲକ୍ଷ ପଚିଶ ହଜାର ଯୁବକଙ୍କୁ ଆ[...] ନିଯୁକ୍ତି ଯୋଗାଇ ଦେବା ଲକ୍ଷ୍ୟ ରଖାଯାଇଛି।

ଯୁବ ଶକ୍ତିର ବିକାଶ ଦିଗରେ ଜାତୀୟ ଯୁବ ପରିଷଦ ଗଠ[ନ] ହେଉଛି ଏକ ବଳିଷ୍ଠ ପଦକ୍ଷେପ। ପ୍ରଧାନମନ୍ତ୍ରୀଙ୍କ ଅଧ୍ୟକ୍ଷତା[ରେ] ଏହି ପରିଷଦ ଅକ୍ଟୋବର ୧୨ ତାରିଖ ଦିନ ଗଠନ କରାଯାଇ[ଛି]। ବିଭିନ୍ନ ଯୁବ କାର୍ଯ୍ୟକ୍ରମ ପ୍ରଣୟନ ତଥା ଜାତୀୟ ଯୁବନୀ[ତି] କାର୍ଯ୍ୟକାରିତା ପାଇଁ ପରିଷଦ ସରକାରଙ୍କୁ ସୁପାରିଶ ଓ ପରାମ[ର୍ଶ] ଦେବ। ପରିଷଦ ଜାତୀୟ ଯୁବ କାର୍ଯ୍ୟକ୍ରମ ରୂପାୟନର ସମୀ[କ୍ଷା] କରିବା ସଙ୍ଗେ ସଙ୍ଗେ ଏ ଦିଗରେ ବିଭିନ୍ନ ରାଜ୍ୟ ଓ କେନ୍ଦ୍ରୀ[ୟ] ବିଭାଗ, ସ୍ୱେଚ୍ଛାସେବୀ ସଙ୍ଗଠନମାନଙ୍କ ମଧ୍ୟରେ ସମନ୍ୱୟର ମ[...] ସମୀକ୍ଷା କରିବ। ପରିଷଦ ୬୨୦ ଜଣ ସଭ୍ୟ ରହିବେ। ଏଥି[ରେ] ରାଜ୍ୟ ଯୁବ ବ୍ୟାପାର ମନ୍ତ୍ରୀ, ସଂସଦ ସଦସ୍ୟ, ରାଜନୈତିକ ଦ[ଳ] ପ୍ରତିନିଧି, କେନ୍ଦ୍ର ପ୍ରଶାସନର ଶାସନ ସଚିବ, ବିଶ୍ୱ ବିଦ୍ୟାଳ[ୟ] କୁଳପତି, କଲେଜ ଅଧ୍ୟକ୍ଷ, ଛାତ୍ର ନେତା, ତଫସିଲଭୁକ୍ତ ଜାତି ସଂଖ୍ୟାଲଘୁ ସମ୍ପ୍ରଦାୟର ପ୍ରତିନିଧି, ସମାଜ ବିଜ୍ଞାନୀ, ସ୍ୱେଚ୍ଛାସେ[ବୀ] ସଙ୍ଗଠନ, ରାଜ୍ୟ ଯୁବ ପରିଷଦ ପ୍ରତିନିଧି, ଜାତୀୟ ଯୁବ ପୁରସ୍[କାର] ବିଜେତା, ଏନ୍‌ଃ ସିଃ ସିଃ, ସ୍କାଉଟ୍, ଏନ୍‌ଃ ଏସ୍‌ଃ ଏସ୍‌ଃ ଛାତ୍ର, ସାହିତି[ୟ] ତଥା କଳାକାରମାନଙ୍କୁ ସଭ୍ୟ ଭାବରେ ନିଆଯିବ। ଏ ଦିଗ[ରେ] ସରକାରଙ୍କ ଲକ୍ଷ୍ୟ ହେଉଛି ଯୁବ ସଚେତନତା ସୃଷ୍ଟି କରିବା।

ସହକାରୀ ସୂଚନା ଅଧିକାରୀ,
ରାଜ୍ୟ ସୂଚନା କେନ୍ଦ୍ର (ଗବେଷଣା ଓ ପ୍ରସଙ୍ଗ ଶାଖା),
ସୂଚନା ଭବନ, ଭୁବନେଶ୍ୱର।



ରାଜ୍ୟର ବନ୍ୟାଞ୍ଚଳ ପରିଦର୍ଶନ କରିବାକୁ ଆସିଥିବା ଓ୍ୱାର୍ଲ୍ଡ ବ୍ୟାଙ୍କ୍ ଟିମ୍ ସହିତ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଆଲୋଚନା।

# ପ୍ରଦୂଷଣମୁକ୍ତ ପୃଥିବୀ ସପକ୍ଷରେ

ଶ୍ରୀ ଉପେନ୍ଦ୍ରନାଥ ତ୍ରିପାଠୀ

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନ, ମିଳିତ ଜାତିସଂଘର ଏକ ସହଯୋଗୀ ସଂସ୍ଥା ଭାବେ ଗଠନ କରାଗଲା । ଏହି ସଂସ୍ଥା ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ବିଶ୍ୱବାସୀଙ୍କ ସ୍ୱାସ୍ଥ୍ୟ ସମସ୍ୟାଗୁଡ଼ିକୁ କିପରି ସୁଷ୍ଠୁ ରୂପେ ସମାହିତ କରିପାରିବ, ସେଥିପାଇଁ ଜାତିସଂଘର ୮୫ଟି ସଭ୍ୟ ଦେଶ ମିଶି ଏହାର ସନନ୍ଦ ୧୯୪୮ ମସିହା ଅପ୍ରେଲ ୭ ତାରିଖ ଦିନ ପ୍ରସ୍ତୁତ କଲେ । ଏହି ଦିବସର ସ୍ମାରକୀ ରୂପେ ବିଶ୍ୱ ସ୍ୱାସ୍ଥ୍ୟ ଦିବସ ସୃଷ୍ଟି ହେଲା । ୧୯୪୮ ମସିହାଠାରୁ ଏହା ନିୟମିତ ଭାବେ ପାଳିତ ହୋଇଆସୁଛି । ବିଶ୍ୱବାସୀଙ୍କ ସ୍ୱାସ୍ଥ୍ୟର ଉନ୍ନତି ପାଇଁ ଏକ ସମୟୋଚିତ କାର୍ଯ୍ୟକ୍ରମ ବିଶ୍ୱବାସୀଙ୍କ ସମ୍ମୁଖରେ ଏହି ଦିନ ଉପସ୍ଥାପନା କରାଯାଏ ଏବଂ ଜନସାଧାରଣ କିପରି ଏହି କାର୍ଯ୍ୟକ୍ରମ ପ୍ରତି ସଚେତନ ହୋଇ ଏହାକୁ ଗ୍ରହଣ କରିବେ, ସେଥିପାଇଁ ପ୍ରତ୍ୟେକ ସଦସ୍ୟ ରାଷ୍ଟ୍ରମାନଙ୍କୁ ଅନୁରୋଧ କରାଯାଏ । ଆବଶ୍ୟକ ସ୍ଥଳେ ସେମାନଙ୍କୁ ସାହାଯ୍ୟ ଓ ସହଯୋଗ ମଧ୍ୟ ଯୋଗାଇ ଦିଆଯାଇଥାଏ ।

ସମ୍ପ୍ରତି ପ୍ରଦୂଷଣଜନିତ ବିପଦ ବିଶ୍ୱବାସୀଙ୍କ ସମ୍ମୁଖରେ ଏକ ବିରାଟ ସ୍ୱାସ୍ଥ୍ୟ ସମସ୍ୟା ସୃଷ୍ଟି କରିଛି । ତେଣୁ, ଏ ବିଷୟରେ ବିଶ୍ୱବାସୀଙ୍କୁ ସଚେତନ କରିବା ପାଇଁ ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନ ୧୯୯୦ ମସିହାକୁ ପ୍ରଦୂଷଣ ବର୍ଷ ଭାବେ ପାଳନ କରୁଛି । ଏହି ବର୍ଷର ବିଷୟବସ୍ତୁ "ଆମର ଗ୍ରହ — ଆମର ସ୍ୱାସ୍ଥ୍ୟ : ବିଶ୍ୱ ପାଇଁ ଚିନ୍ତାକର, ସ୍ଥାନୀୟ ଭାବେ କାର୍ଯ୍ୟ କର" (Our Planet, Our Health : Think Globally, Act Locally) ସ୍ଥିର କରାଯାଇଛି ।

## ଜନସଂଖ୍ୟା ବିସ୍ଫୋରଣ

ଜନସଂଖ୍ୟା ବିସ୍ଫୋରଣ, ସହରୀ ସଭ୍ୟତା ପ୍ରତି ମୋହ ଓ କଳକାରଖାନାମାନଙ୍କର ଅବାଧ ସ୍ଥାପନା ଇତ୍ୟାଦି ଜଳ, ସ୍ଥଳ ଓ ବାୟୁକୁ ପ୍ରଦୂଷିତ କରିବା ସଙ୍ଗେ ସଙ୍ଗେ ଆମ ସାମାଜିକ ଆଚାର ବ୍ୟବହାରକୁ ମଧ୍ୟ ପ୍ରଦୂଷିତ କରିପକାଉଛି । ପ୍ରଦୂଷଣର ପରିମାଣ ଯେପରି ଦିନକୁ ଦିନ ବଢ଼ି ଚାଲିଛି, ଏହାକୁ ଆଜିଠାରୁ ଯଦି ନିର୍ଦ୍ଧାରିତ ସ୍ତରରେ ରଖାନଯାଏ, ତା'ହେଲେ ଭବିଷ୍ୟତରେ ଏହା ଏକ ବିରାଟ ସମସ୍ୟା ସୃଷ୍ଟି କରି ପୃଥିବୀ ପୃଷ୍ଠରୁ ମାନବ ସଭ୍ୟତା ଲୋପ କରିଦେବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନପାରେ । ପୃଥିବୀର ପରିବେଶକୁ ଏକ ନିର୍ଦ୍ଧାରିତ ସ୍ତରରେ ରଖିବା ପାଇଁ ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନ ବିଭିନ୍ନ ସ୍ଥାନରେ ପରିବେଶ ସଂନିରୀକ୍ଷଣ ତଥା ଉପଦେଶ କେନ୍ଦ୍ରମାନ ସ୍ଥାପନ କରିଛନ୍ତି । ଏହି କେନ୍ଦ୍ରଗୁଡ଼ିକ ପରିବେଶ ପ୍ରଦୂଷଣ ସଂକ୍ରାନ୍ତ ତଥ୍ୟାବଳୀ ବିଭିନ୍ନ ଦେଶକୁ ଜଣାଇଥାନ୍ତି । ପ୍ରଦୂଷଣ ନିୟନ୍ତ୍ରଣ ଓ ତା'ର ପ୍ରତିକାର କରିବା ପାଇଁ ଦେଶ ତଥା ରାଜ୍ୟମାନଙ୍କରେ ପ୍ରଦୂଷଣ ପର୍ଷଦ ମଧ୍ୟ ସ୍ଥାପନା କରାଯାଇଛି ।

ଜନସଂଖ୍ୟା ବିସ୍ଫୋରଣ ସାମାଜିକ ପ୍ରଦୂଷଣ ପାଇଁ ମୁଖ୍ୟତଃ ଦାୟୀ । ବର୍ତ୍ତମାନ ପୃଥିବୀର ଜନସଂଖ୍ୟା ପ୍ରାୟ ୫୦୦ କୋଟିରୁ ଅଧିକ । ଅନୁମାନ କରାଯାଏ ଯେ ଆଗାମୀ ୨୦୦୦ ମସିହା ବେଳକୁ ପୃଥିବୀର ଜନସଂଖ୍ୟା ୬୦୦ କୋଟିରୁ ଅଧିକ ହୋଇଥିବ । ଉନ୍ନତ ଦେଶଗୁଡ଼ିକ ତୁଳନାରେ ବିକାଶଶୀଳ ଦେଶମାନଙ୍କରେ ଜନସଂଖ୍ୟା ବୃଦ୍ଧିର ହାର ଅଧିକ । ବ୍ୟାପକ ଜନସଂଖ୍ୟା ବୃଦ୍ଧି ଫଳରେ ବିକାଶଶୀଳ ଦେଶମାନଙ୍କର ଅଭିବୃଦ୍ଧି ହାର କ୍ରମଶଃ ନିମ୍ନଗାମୀ ହେଉଅଛି । ଏହାଦ୍ୱାରା ଜନସାଧାରଣ ଗରିବରୁ ଅଧିକ ଗରିବ ହେଉଛନ୍ତି । ବିଶ୍ୱ ବ୍ୟାଙ୍କର ହିସାବରୁ ଜଣାଯାଏ ଯେ ପୃଥିବୀରେ ପ୍ରାୟ ୮୦ କୋଟି ଲୋକ ଅତ୍ୟନ୍ତ ଦରିଦ୍ର ଅବସ୍ଥାରେ ଅଛନ୍ତି । ନିଜ ଅଞ୍ଚଳରେ ଜୀବିକାନିର୍ବାହର କୌଣସି ସୁବିଧା ନପାଇ ସେମାନେ ସହରାଞ୍ଚଳକୁ ପଳାଇ ଆସି ଅତି ଅସ୍ୱାସ୍ଥ୍ୟକର ପରିବେଶରେ ବସ୍ତି ନିର୍ମାଣ କରି ବସବାସ କରୁଛନ୍ତି । ବିଶୁଦ୍ଧ ପାନୀୟ ଜଳ, ପୁଷ୍ଟିକର ଖାଦ୍ୟ, ପରିମଳ ବ୍ୟବସ୍ଥାର ଅଭାବ ସଙ୍ଗେ, ଛୋଟ ଛୋଟ ଅନ୍ଧାରୁଆ କୋଠରୀରେ ଅନେକ ଲୋକ ଏକାଠି ବାସ କରିବା ଫଳରେ, ସେମାନେ ପରିଚ୍ଛନ୍ନତା ଅଭାବ ଯୋଗୁ ହଇଜା, ଆମାଶୟ, କାମଳ, ଉଦରାମୟ, ଯକ୍ଷ୍ମା, ମେହ, ଉପଦଂଶ ଓ କ୍ରିମି ସଂକ୍ରମଣ ଇତ୍ୟାଦି ରୋଗରେ ଆକ୍ରାନ୍ତ ହେଉଛନ୍ତି । ସେମାନଙ୍କ ମଧ୍ୟରୁ କେତେକ ନିଶାସକ୍ତ ହୋଇ ପରିସ୍ଥିତିକୁ ଅଧିକ ଗୁରୁତର କରିପକାଉଛନ୍ତି । ନିଶା ଔଷଧ ଓ ମାଦକ ଦ୍ରବ୍ୟର ଚୋରା କାରବାର, ଚୋରି, ଦଙ୍ଗାହାଙ୍ଗାମା ଓ ଅସାମାଜିକ କାର୍ଯ୍ୟରେ ଲିପ୍ତ ରହି ଆଇନ ଶୃଙ୍ଖଳା ପରିସ୍ଥିତିକୁ ବ୍ୟାହତ କରୁଛନ୍ତି । ମାନସିକ ଯନ୍ତ୍ରଣାରେ ଜର୍ଜରିତ ହୋଇ

କେତେକ ଆତ୍ମହତ୍ୟା ମଧ୍ୟ କରୁଛନ୍ତି । ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନ ହିସାବ ଅନୁଯାୟୀ ପ୍ରାୟ ୧୪-୫୦ କୋଟି ପାଞ୍ଚ ବର୍ଷରୁ କମ୍ ବୟସର ଶିଶୁ ଆବଶ୍ୟକୀୟ ଅନୁଯାୟୀ ପୁଷ୍ଟିକର ଖାଦ୍ୟ ଖାଇବାକୁ ପାଉନାହାନ୍ତି । ଅନୁସନ୍ଧାନରୁ ଜଣାଯାଏ ଯେ ଆବଶ୍ୟକ ଖାଦ୍ୟର ଅଭାବ ସହିତ ରକ୍ଷଣାବେକ୍ଷଣ, ରନ୍ଧନ ଓ ପରିପୁଷ୍ଟି ଜ୍ଞାନର ଅଭାବ ଖାଦ୍ୟର ପରିପୁଷ୍ଟି ଅପସାରଣ ପାଇଁ ମୁଖ୍ୟତଃ ଦାୟୀ । ଏହା ଭବିଷ୍ୟତ ପାଇଁ ବିପଦପୂର୍ଣ୍ଣ । ଜନସଂଖ୍ୟା ନିୟନ୍ତ୍ରଣ, କୃଷିର ଅଗ୍ରଗତି, ଗ୍ରାମାଞ୍ଚଳରେ କର୍ମଯୋଗାଣ ବ୍ୟବସ୍ଥା, ବିଶୁଦ୍ଧ ପାନୀୟ ଜଳ ଓ ପରିମଳ ବ୍ୟବସ୍ଥାର ଉନ୍ନତି ଓ ଦରଦାମ ନିୟନ୍ତ୍ରଣ ଇତ୍ୟାଦି ସାମାଜିକ କାର୍ଯ୍ୟକ୍ରମ ଦ୍ୱାରା ଏହି ପରିସ୍ଥିତିକୁ ନିୟନ୍ତ୍ରଣ କରାଯାଇ ପାରିବ ।

ଆମେ ରହୁଥିବା ପରିବେଶ ଅସ୍ୱାସ୍ଥ୍ୟକର ହେଲେ; ମଶା, ମାଛି ଭଳି କୀଟପତଙ୍ଗ ଓ ମୂଷାମାନଙ୍କର ଉପଦ୍ରବ ବଢ଼ିଯାଏ । ଏମାନେ ରୋଗର ବାହକ । ଏମାନଙ୍କ ଦ୍ୱାରା ମ୍ୟାଲେରିଆ ଜ୍ୱର, ହଇଜା, ଆମାଶୟ, ଉଦରାମୟ, ପୋଲିଓ, ଟାଇଫଏଡ୍, ସଂକ୍ରାମକ କାମଳ ଓ ପ୍ଲେଗ୍ ଭଳି ରୋଗ ସଂକ୍ରମିତ ହୋଇଥାଏ । ମୂଷା ଆମର ଖାଦ୍ୟ ପଦାର୍ଥକୁ ଖାଇ ନଷ୍ଟ କରିଦେଉଥିବାରୁ ଆମ ଖାଦ୍ୟର ଅଭାବ ପଡୁଛି । ମଶାମାନଙ୍କ କବଳରୁ ରକ୍ଷା ପାଇବା ପାଇଁ ଆମେ ଘରର ଚାରିପାଖେ ଜନ୍ମୁଥିବା ଅନାବନା ଗଛଗୁଡ଼ିକୁ କାଟି ସଫା କରିଦେଲେ, ଘର ପାଖରେ ପାଣି ଜମୁଥିବା ଛୋଟ ଛୋଟ ଖାଲଗୁଡ଼ିକୁ ପୋତି ପକାଇଲେ ଓ ସମସ୍ତେ ମିଳିମିଶି ଗାଡ଼ିଆ ପୋଖରୀରେ ଜନ୍ମୁଥିବା ଦଳ ସଫା କରିଦେଲେ ମଶା ଦାଉରୁ ରକ୍ଷା ପାଇବା ସହିତ ମ୍ୟାଲେରିଆ ଓ ବାତଜ୍ୱର ଭଳି ସଂକ୍ରାମକ ରୋଗ କବଳରୁ ରକ୍ଷା ପାଇପାରିବା । ମାଛିମାନେ ଅଳିଆ ଆବର୍ଜନା ସ୍ଥାନ, ମନୁଷ୍ୟ ମଳ ଓ ଗୋବର ଇତ୍ୟାଦିରେ ଡିମ୍ବ ଦେଇ ବଂଶ ବିସ୍ତାର କରିବାକୁ ଭଲପାଆନ୍ତି । ଘର ତଥା ଗୁହାଳର ଅଳିଆ ଆବର୍ଜନାକୁ ଏଣେତେଣେ ନପକାଇ କମ୍ପୋଷ୍ଟ ଖତ ତିଆରି କଲେ ଓ ପାଇଖାନା ବ୍ୟବହାର କଲେ ବିଭିନ୍ନ ସଂକ୍ରାମକ ରୋଗ ଦାଉରୁ ଆମେ ରକ୍ଷା ପାଇପାରିବା ଏବଂ କମ୍ପୋଷ୍ଟ ଖତକୁ ବ୍ୟବହାର କରି ଭଲ ଫସଲ ଅମଳ କରିପାରିବା । ମୂଷା ଆମର ଖାଦ୍ୟ ଶସ୍ୟର ପ୍ରାୟ ୨୦ ଭାଗ ନଷ୍ଟ କରିଦିଏ । ଖାଦ୍ୟଶସ୍ୟକୁ ମୂଷା ପଶିପାରୁ ନଥିବା ଅମାର ବା ଧାତବ ପାତ୍ରରେ ସାଇତି ରଖିଲେ, ଘରେ ଥିବା ମୂଷା ଗାତଗୁଡ଼ିକୁ ପୋତିଦେଲେ କିମ୍ବା ମୂଷାମରା ଔଷଧ ବ୍ୟବହାର କଲେ ମୂଷା ଉପଦ୍ରବରୁ ରକ୍ଷା ପାଇବା ସଙ୍ଗେ ସଙ୍ଗେ ପ୍ଲେଗ୍ ଭଳି ମାରାତ୍ମକ ରୋଗ କବଳରୁ ମଧ୍ୟ ରକ୍ଷା ମିଳିବ ।

ଜଳ ପ୍ରଦୂଷଣ ହେବା ଫଳରେ ବିକାଶଶୀଳ ଦେଶମାନଙ୍କରେ ପ୍ରତିବର୍ଷ ପ୍ରାୟ ୫୦ ଲକ୍ଷ ପାଞ୍ଚରୁ କମ୍ ବୟସର ଶିଶୁ ତରଳ ଝାଡ଼ା ରୋଗରେ ମୃତ୍ୟୁବରଣ କରୁଛନ୍ତି । କାଗଜ କଳ, ଚମଡ଼ା କାରଖାନା, ରାସାୟନିକ ଦ୍ରବ୍ୟ ତିଆରି କାରଖାନା ତଥା ଅନ୍ୟାନ୍ୟ କଳକାରଖାନାରୁ ନିର୍ଗତ ବିଷାକ୍ତ ତରଳ ପଦାର୍ଥ, ନାଳ ନର୍ଦ୍ଦମାର ଦୂଷିତ ଜଳକୁ ନଦୀ, ନାଳ ଓ ସମୁଦ୍ରରେ ନିଷ୍କାସନ କରିବା ଫଳରେ ଜଳ ପ୍ରଦୂଷିତ ହୋଇଥାଏ । ରୋଗୀମାନଙ୍କର ଲୁଗାପଟା ଧୋଇବା, ଶୌଚ କର୍ମ ହେବା ଓ ଶବକୁ ନଦୀ ନାଳରେ ଭସାଇ ଦେବା ଫଳରେ ଜଳ ଦୂଷିତ ଓ ସଂକ୍ରମିତ ହୁଏ । କୃଷି କାର୍ଯ୍ୟରେ ବ୍ୟବହୃତ ରାସାୟନିକ ସାର ଓ ପୋକମରା ଔଷଧ ଦ୍ୱାରା ମଧ୍ୟ ଜଳ ପ୍ରଦୂଷିତ ହୁଏ ଓ ଏହା ଆମ ସ୍ୱାସ୍ଥ୍ୟ ପକ୍ଷେ କ୍ଷତିକାରକ ହୋଇଥାଏ । ଜଳରେ ନାନାପ୍ରକାର ରାସାୟନିକ ଓ ଧାତ[...] ପଦାର୍ଥ ମିଶିବା ଫଳରେ ଜଳ ବିଷାକ୍ତ ହେବା ସଙ୍ଗେ ସ[...] ସେଥିରେ ବାସ କରୁଥିବା ଜଳ ଜୀବଗୁଡ଼ିକ ମଧ୍ୟ ବିଷା[...] ହୋଇଯାଆନ୍ତି । ସେଗୁଡ଼ିକୁ ମନୁଷ୍ୟ ଖାଇବା ଫଳ[...] ନାନାପ୍ରକାର ଅସାଧ୍ୟ ରୋଗ ଯଥା : ଧାତୁଜନିତ ରୋଗ[...] ଉପସର୍ଗ, ରକ୍ତହୀନତା ଓ ଦନ୍ତକ୍ଷୟ ଇତ୍ୟାଦି ଆକ୍ରମଣ କରେ[...] ସେହିପରି ସଂକ୍ରମିତ ଜଳ ବ୍ୟବହାର କରିବା ଫଳରେ ହଇଜ[...] ଟାଇଫଏଡ୍, ଝାଡ଼ା ରୋଗ, ଆମାଶୟ, ସଂକ୍ରାମକ କାମ[...] ପୋଲିଓ ଇତ୍ୟାଦି ଆକ୍ରମଣ କରେ । ଜଳରେ ନାନାପ୍ରକା[...] ରାସାୟନିକ ପଦାର୍ଥ ମିଶିବା ଫଳରେ ଜଳର ଅମ୍ଳତା ବଢ଼ିଯାଏ [...] ଏହା ସ୍ୱାସ୍ଥ୍ୟ ପକ୍ଷରେ କ୍ଷତିକାରକ ହେବା ସଙ୍ଗେ ସଙ୍ଗେ ନ[...] ନାଳର ବନ୍ଧବାଡ଼କୁ କ୍ଷୟ ସାଧନ କରେ । ବୈଜ୍ଞାନିକମାନ[...] ମତରେ ହୀରାକୁଦ ବନ୍ଧରେ ଦେଖାଯାଇଥିବା ଫାଟ ମହାନ[...] ପାଣିରେ ଅତ୍ୟଧିକ ରାସାୟନିକ ପଦାର୍ଥ ମିଶିବା ଫଳରେ ହିଁ ସୃ[...] ହୋଇଛି । ଗଙ୍ଗା ନଦୀରେ ନାନାପ୍ରକାର କଳକାରଖାନା[...] ବିଷାକ୍ତ ପଦାର୍ଥ ଓ ନାଳ ନର୍ଦ୍ଦମାର ପାଣି ମିଶିବା ଫଳରେ ଗଙ୍ଗା[...] ପବିତ୍ର ଜଳ ପ୍ରଦୂଷିତ ହୋଇ ସ୍ୱାସ୍ଥ୍ୟ ସମସ୍ୟା ସୃଷ୍ଟି କରୁଛି[...] ସମ୍ପ୍ରତି ମିଳିଥିବା ଏକ ସମ୍ବାଦରୁ ଜଣାଯାଏ ଯେ ଜାପାନ ଓ ଉ[...] ସାଗର ଉପକୂଳବର୍ତ୍ତୀ ସମୁଦ୍ରରେ ଅନେକ ତିମି ଓ ସିଲ୍ ମାଛ ମ[...] ଭାସୁଥିବାର ଲକ୍ଷ୍ୟ କରାଯାଇଥିଲା । ଏହା ସାମୁଦ୍ରିକ ପ୍ରଦୂଷଣ[...] ଫଳ ବୋଲି ବୈଜ୍ଞାନିକମାନଙ୍କର ମତ । ସେହିପ[...] ଇରାନ୍–ଇରାକ୍ ଯୁଦ୍ଧ ସମୟରେ ଉଭୟ ପକ୍ଷରୁ ଅଶୋଧିତ ତୈ[...] ଜାହାଜ ଓ ସମୁଦ୍ରରେ ତୈଳ ଉତ୍ତୋଳନକାରୀ ସ୍ଥାନଗୁଡ଼ିକ ଉପ[...] ବୋମା ବର୍ଷଣ କରାଯିବାରୁ ତେଲ ସମୁଦ୍ରରେ ମିଶି ସାମୁଦ୍ରିକ ଜୀ[...] ମୃତ୍ୟୁବରଣ କରିବା ସହିତ ଉପକୂଳବର୍ତ୍ତୀ ଅଞ୍ଚଳରେ ସ୍ୱା[...] ସମସ୍ୟା ସୃଷ୍ଟି କରିଥିଲା । ଜଳ ପ୍ରଦୂଷଣ ଯେ ମାନବ ସଭ୍ୟ[...] ପ୍ରତି ବିପଦପୂର୍ଣ୍ଣ ଏଥିରେ ସନ୍ଦେହ ନାହିଁ । କିନ୍ତୁ ଯେଉଁ[...] ଭାବରେ କଳ କାରଖାନାର ପ୍ରସାର ଘଟି, ସେଥିରୁ ନିର୍ଗ[...] ରାସାୟନିକ ବିଷାକ୍ତ ପଦାର୍ଥଗୁଡ଼ିକୁ ବେନିୟନ୍ତ୍ରଣ ଭାବେ ନଦ[...] ନାଳ ଓ ସମୁଦ୍ରରେ ନିଷ୍କାସନ କରାଯାଉଛି, ତାହା ବର୍ତ୍ତମାନ [...] ଭବିଷ୍ୟତ ବଂଶଧରମାନଙ୍କ ପ୍ରତି କ୍ଷତିକାରକ । କଳକାରଖାନା [...] ନାଳ ନର୍ଦ୍ଦମାର ପାଣିକୁ ବୈଜ୍ଞାନିକ ପଦ୍ଧତିରେ ବିଶୋଧନ କ[...] ଜଳରେ ନିଷ୍କାସନ କଲେ, ଏହି ବିପଦକୁ ଏଡ଼ାଇଦେଇ ହେବ[...] ସେହିପରି ସ୍ୱାସ୍ଥ୍ୟ ଶିକ୍ଷା ମାଧ୍ୟମରେ ଜନ ସଚେତନତା ସୃ[...] କରିପାରିଲେ ଜଳ ସଂକ୍ରମଣକୁ ଦୂର କରାଯାଇ ପାରିବ ।

ପୃଥିବୀ ଜନସଂଖ୍ୟାର ଅର୍ଦ୍ଧାଧିକ ଲୋକ ରୋଷେଇ ପାଇଁ କା[...] କୋଇଲା, ଗୋବର ଘସି ଓ ତେଲ ବ୍ୟବହାର କରନ୍ତି । ଏ[...] ଜୈବିକ ପଦାର୍ଥରୁ ନିର୍ଗତ ହେଉଥିବା ଧୂଆଁରେ କାର୍ବ[...] ଡାଇଅକ୍ସାଇଡ୍, କାର୍ବନ ମନୋଅକ୍ସାଇଡ୍, ସଲ୍ଫର୍ ଡାଇଅକ୍ସାଇ[...] ଓ ଅଙ୍ଗାର ସୂକ୍ଷ୍ମ ପାର୍ଟିକଲ ରହିଥାଏ । ଏହି ବାଷ୍ପ ଓ ଅଙ୍ଗାର ପାର୍[...] ମୁଣ୍ଡ ସ୍ୱାସ୍ଥ୍ୟ ପକ୍ଷରେ ଅତି ମାରାତ୍ମକ । ବିକାଶଶୀଳ ଦେଶଗୁଡ଼ିକ[...] ଜନସାଧାରଣ ଗରିବ ହୋଇଥିବାରୁ ସେମାନେ ମାଟି ଓ ଖ[...] ଘରେ ବାସ କରନ୍ତି । ଘରେ ଆବଶ୍ୟକ ସଂଖ୍ୟକ ଝରକ[...] ନଥିବାରୁ ଘର ଅନ୍ଧାରୁଆ ହୁଏ । ଏହି ଅନ୍ଧାରୁଆ ଘରେ ରାନ୍ଧି[...] ଦ୍ୱାରା ଜାଳଣୀରୁ ନିର୍ଗତ ଧୂଆଁ ଘରେ ରୁନ୍ଧି ହୋଇ ରହେ । ଏ[...] ସଂସ୍ପର୍ଶରେ ସାଧାରଣତଃ ସ୍ତ୍ରୀ ଓ ପିଲାମାନେ ଆସିବା ଫଳ[...] ଆଖି ପୋଡ଼ା ରୋଗ, ଶ୍ୱାସଜନିତ ରୋଗ, ମୁଣ୍ଡ ବ୍ୟଥା, ମାନସି[...] ଯନ୍ତ୍ରଣା, ଅବସାଦ ଓ ଫୁସ୍‌ଫୁସ୍ କର୍କଟ ରୋଗରେ ଆକ୍[...]

ହୁଅନ୍ତି । ବାରମ୍ବାର ଧୂଆଁ ସଂସ୍ପର୍ଶରେ ଆସୁଥିବା ସ୍ତ୍ରୀ ଲୋକମାନେ ଅଳ୍ପ ଓଜନର ଶିଶୁଙ୍କୁ ଜନ୍ମ ଦିଅନ୍ତି । ସେହି ଶିଶୁମାନେ ପ୍ରାୟ ଅଧିକାଂଶ ସମୟରେ ରୋଗରେ ପଡ଼ନ୍ତି । ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନ ହିସାବ ଅନୁଯାୟୀ ପ୍ରତିବର୍ଷ ପ୍ରାୟ ୪୦ରୁ ୫୦ କୋଟି ଲୋକ ଉପରୋକ୍ତ ରୋଗଗୁଡ଼ିକରେ ଆକ୍ରାନ୍ତ ହେଉଛନ୍ତି । ରୋଷେଇ ଘରେ ପବନ ଚଳାଚଳ ପାଇଁ ଆବଶ୍ୟକ ପରିମାଣର ଝରକା ରଖିଲେ ଧୂଆଁଜନିତ ବିପଦରୁ ରକ୍ଷା ମିଳେ । ଧୂମହୀନ ଚୁଲା ବ୍ୟବହାର କରିବା ଦ୍ୱାରା ଧୂଆଁ ବାହାରକୁ ଚାଲିଯାଏ । ତେବେ, ଧୂଆଁଜନିତ ବାୟୁ ପ୍ରଦୂଷଣକୁ ରନ୍ଧନ ବାଷ୍ପ ବା ଗୋବର ବାଷ୍ପ କିମ୍ବା ବୈଦ୍ୟୁତିକ ଚୁଲା ବ୍ୟବହାର ଦ୍ୱାରା ରୋକାଯାଇ ପାରିବ ।

ଆଧୁନିକ ସଭ୍ୟତାରେ ମଟର ଗାଡ଼ିର ବ୍ୟବହାର ବହୁଳ ଭାବେ ବଢ଼ି ଯାଇଛି ।ଉନ୍ନତ ଦେଶମାନଙ୍କରେ ମଟର ଗାଡ଼ିର ପ୍ରଚଳନ ଏତେ ବେଶି ଯେ ସେଥିରୁ ନିର୍ଗତ ଧୂଆଁ ବିପଜ୍ଜନକ ପରିସ୍ଥିତି ସୃଷ୍ଟି କଲେଣି । ମଟର ଧୂଆଁରେ କାର୍‌ବନ୍ ଡାଇଅକ୍‌ସାଇଡ୍, କାର୍‌ବନ ମନୋକ୍ ସାଇଡ଼, ନାଇଟ୍ରୋଜେନ୍ ଅକ୍‌ସାଇଡ୍ ଓ ସୀସା ମିଶି ରହିଥାଏ । ଧୂଆଁରେ ଥିବା ଏହି ପଦାର୍ଥଗୁଡ଼ିକ ମନୁଷ୍ୟ, ପଶୁ ତଥା ବୃକ୍ଷଲତା ପ୍ରତି କ୍ଷତିକାରକ । ରାସ୍ତାରେ ଭିଡ଼ ସମୟରେ ମଟରଗାଡ଼ିଗୁଡ଼ିକ ଅନେକ ସମୟ ପର୍ଯ୍ୟନ୍ତ ଅଟକ ରହୁଥିବାରୁ, ଏଥିରୁ ନିର୍ଗତ ଧୂଆଁ ସ୍ଥାନୀୟ ଅଞ୍ଚଳକୁ ବିଷାକ୍ତ କରିପକାଏ । ଏହି ଧୂଆଁ ଜଳୀୟ ବାଷ୍ପ ଓ ସୂର୍ଯ୍ୟାଲୋକ ସଂସ୍ପର୍ଶରେ ଆସି ଏକ ପ୍ରକାର ରାସାୟନିକ କୁହୁଡି ସୃଷ୍ଟି କରେ । ଏଥିରେ ବହୁଳ ପରିମାଣରେ ଅଙ୍ଗାରକାମ୍ଳ ଥିବାରୁ କୋଠାବାଡ଼ିଗୁଡ଼ିକ କଳା ପଡ଼ିଯାଏ ଓ ଆମ ନିଃଶ୍ୱାସରେ ଶରୀର ଭିତରୁ ଯାଇ ଫୁସ୍ ଫୁସ୍‌କୁ ମଧ୍ୟ କଳା କରିପକାଏ । ଏହା ବୟସ୍କ ବ୍ୟକ୍ତି, ଶିଶୁ ଓ ଗର୍ଭବତୀ ମହିଳାମାନଙ୍କ ସ୍ୱାସ୍ଥ୍ୟପକ୍ଷେ କ୍ଷତିକାରକ ହୋଇଥାଏ । ଲୋକେ ନିଃଶ୍ୱାସ ନେବାରେ କଷ୍ଟ ଅନୁଭବ କରନ୍ତି । ଏହାଛଡ଼ା, ଶ୍ୱାସରୋଗ, ବ୍ରୋଙ୍କାଇଟିସ୍, ଫୁସ୍‌ଫୁସ୍ ପ୍ରଦାହ, ମସ୍ତିଷ୍କର କାର୍ଯ୍ୟକାରୀ ଶକ୍ତି ହ୍ରାସ, ରକ୍ତହୀନତା, ବାନ୍ତି, କ୍ଷୁଧାହୀନତା, ମୂର୍ଚ୍ଛା, ଯକୃତ ଏବଂ ବୃକକ୍ ଇତ୍ୟାଦି ରୋଗ ସେମାନଙ୍କଠାରେ ଦେଖାଯାଏ । ସୀସା ବାଷ୍ପ ମନୁଷ୍ୟ ପକ୍ଷରେ କ୍ଷତିକାରକ । ଗାଡ଼ିରେ ସୀସା ବିହୀନ ପେଟ୍ରୋଲ୍ ବ୍ୟବହାର କଲେ, ଏହି ରୋଗଗୁଡ଼ିକର କବଳରୁ ରକ୍ଷା ମିଳିଥାଏ । ଆଜିକାଲି ଜାପାନରେ ସୀସା ବିହୀନ ପେଟ୍ରୋଲ ବ୍ୟବହାର କରାଯାଉଥିବାରୁ ସେଠାରେ ସୀସା ଜନିତ ବାୟୁପ୍ରଦୂଷଣ କମ୍ ଥିବାର ଜଣାଯାଏ । କାର୍‌ବନ୍ ମନୋକ୍‌ସାଇଡ୍ ବାଷ୍ପ ପ୍ରଦୂଷଣରୁ ରକ୍ଷା ପାଇବା ପାଇଁ ଉନ୍ନତ ଦେଶମାନଙ୍କରେ ମଟର ଗାଡ଼ିରେ କଟାଲାଇଜର୍ ବ୍ୟବହାର କରାଯାଉଛି । ବୃକ୍ଷ ଓ ସମୁଦ୍ର ଉଭୟେ ଅଙ୍ଗାରକାମ୍ଳ ବାଷ୍ପ ଗ୍ରହଣ କରି ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ ବାଷ୍ପର ଭାରସାମ୍ୟ ରକ୍ଷା କରିଥାନ୍ତି । ଆଜିକାଲି ପୃଥିବୀର ଚାରିଆଡ଼େ ଯେପରି ଅବିଶ୍ରାନ୍ତ ଭାବରେ ବୃକ୍ଷଛେଦନ ଚାଲିଛି, ତାହା ଫଳରେ ବାୟୁରେ ଅଙ୍ଗାରକାମ୍ଳର ପରିମାଣ ବଢ଼ି ବଢ଼ି ଚାଲିଛି । କେବଳ ସମୁଦ୍ର ଏହାର ଭାରସାମ୍ୟ ରକ୍ଷା କରିବାକୁ ସମର୍ଥ ହେଉନାହିଁ । ଉନ୍ନତ ଓ ବିକାଶଶୀଳ ଦେଶମାନଙ୍କରେ ନାନାପ୍ରକାର କଳକାରଖାନା ଗଢ଼ି ଉଠିବା ଫଳରେ ଅର୍ଥନୈତିକ ଅଭିବୃଦ୍ଧି ହେଉଛି ସତ, କିନ୍ତୁ ସେଥିରୁ ନିର୍ଗତ ଅଙ୍ଗାରକାମ୍ଳ ବାଷ୍ପ ସଲ୍‌ଫର୍ ଡାଇଅକ୍ସାଇଡ୍, ମିଥେନ୍, ନାଇଟ୍ରୋଜେନ୍ ଅକ୍ସାଇଡ୍, ହାଇଡ୍ରୋ କାର୍ବନ, ଧାତୁ ବାଷ୍ପ, ପାର୍ଦ୍ଦଣ ଗୁଣ୍ଡ, କ୍ଲୋରୋଫ୍ଲୁରୋ କାର୍ବନ୍ ଓ ବିଷାକ୍ତ ରାସାୟନିକ ଜଳୀୟ ପରିବେଶକୁ ଅଧିକ ପ୍ରଦୂଷିତ କରି ପକାଉଛି । ଫଳରେ, ଆମ ସ୍ୱାସ୍ଥ୍ୟର ଅବନତି ଘଟୁଛି । ବାୟୁରେ କାର୍ବନ ଡାଇଅକ୍ସାଇଡ୍ ୦·୩ରୁ ୦·୪ ଭାଗ ରହିଲେ, ଏହା ଆମ ସ୍ୱାସ୍ଥ୍ୟ ପକ୍ଷରେ କୌଣସି ପ୍ରତିକୂଳ ପ୍ରଭାବ ପକାଏନାହିଁ । କିନ୍ତୁ ଏଥିରୁ ଅଧିକ ପରିମାଣ ରହିଲେ, ଏହା ବାୟୁକୁ ଉତ୍ତପ୍ତ କରିବା ସହିତ ଗଛର ଆଲୋକ ସଂଶ୍ଳେଷଣ ପ୍ରକ୍ରିୟା ଉପରେ କୁପ୍ରଭାବ ପକାଏ । ଉପରୋକ୍ତ ବାଷ୍ପର କୁପ୍ରଭାବ ଜୀବଜଗତ, କୋଠାବାଡ଼ି ଓ ପ୍ରାଚୀନ କୀର୍ତ୍ତିରାଜି ଉପରେ ପଡ଼ିଥାଏ । ଏହାଛଡ଼ା, ଆମେ ଶ୍ୱାସ, କାଶ, ଫୁସ୍‌ଫୁସ୍‌ଜନିତ ରୋଗ, ସ୍ନାୟୁଗତ ରୋଗ, ମସ୍ତିଷ୍କ ରୋଗ, ଉଚ୍ଚ ରକ୍ତଚାପ, ହୃଦ୍‌ରୋଗ, ରକ୍ତହୀନତା, ପାକ ପ୍ରକ୍ରିୟାରେ ବ୍ୟାଘାତ, ଚକ୍ଷୁ ଜଳାପୋଡ଼ା ଓ କର୍କଟ ରୋଗ ଇତ୍ୟାଦି ଭୋଗିଥାଉ । ଉନ୍ନତ ଦେଶମାନଙ୍କରେ କଳକାରଖାନାର ଅତ୍ୟଧିକ ପ୍ରସାର ଫଳରେ ସେଠାରେ ବିକାଶଶୀଳ ଦେଶମାନଙ୍କ ଅପେକ୍ଷା ବାୟୁ ପ୍ରଦୂଷଣ ଅଧିକ । ସଲ୍‌ଫର୍ ଅକ୍ସାଇଡ୍ ଓ ନାଇଟ୍ରୋଜେନ୍, ସୂର୍ଯ୍ୟ ରଶ୍ମି ଏବଂ ଜଳୀୟ ବାଷ୍ପ ସଂସ୍ପର୍ଶରେ ଆସି ଏକପ୍ରକାର ରାସାୟନିକ ପ୍ରକ୍ରିୟା ସୃଷ୍ଟି କରି ଅମ୍ଳ ବର୍ଷା କରେ । ଏହା ଦ୍ୱାରା ବୃକ୍ଷଲତା, ଫସଲ ନଷ୍ଟ ହୋଇଯାଏ । ନଦୀ ନାଳ ଓ ହ୍ରଦରେ ଥିବା ମାଛ ଓ ଅନ୍ୟାନ୍ୟ ଜଳଜ ଗୁଳ୍ମମାନଙ୍କୁ ଏହା ମାରି ପକାଇବା ସଙ୍ଗେ ସଙ୍ଗେ ମାଟି ଓ ଭୂତଳ ଜଳର ଅମ୍ଳତା ବଢ଼ାଇ ଦେବାରୁ ଏହା ମନୁଷ୍ୟ ସ୍ୱାସ୍ଥ୍ୟ ପକ୍ଷରେ କ୍ଷତିକାରକ ହୁଏ । ଅମ୍ଳ ବର୍ଷା କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ସୀମିତ ନରହି ବାୟୁ ଦ୍ୱାରା ଅନ୍ୟାନ୍ୟ ଅଞ୍ଚଳକୁ ସଞ୍ଚାରିତ ହୁଏ । ଫଳରେ, ସେ ଅଞ୍ଚଳକୁ ମରୁଭୂମିରେ ପରିଣତ କରେ । ଉତ୍ତର ଆମେରିକା ଓ ଇଉରୋପରେ ବାରମ୍ବାର ଅମ୍ଳ ବର୍ଷା ହେବା ଫଳରେ ଜଙ୍ଗଲ ଓ ଫସଲ ଧ୍ୱଂସ ପାଇବାକୁ ବସିଲାଣି ।

ପୃଥିବୀକୁ ଓଜନ୍ ନାମକ ଏକପ୍ରକାର ବାଷ୍ପ ଘେରି ରହିଛି । ସୂର୍ଯ୍ୟାଲୋକରେ ଥିବା ଅଲଟ୍ରାଭାୟୋଲେଟ୍ ରଶ୍ମି ଓଜନ୍ ବାଷ୍ପ ସଂସ୍ପର୍ଶରେ ଆସି ବିକିରଣ ହେବା ହେତୁ ଏହା ସିଧାସଳଖ ପୃଥିବୀକୁ ଆସିପାରେ ନାହିଁ । ତେଣୁ, ଏହି ରଶ୍ମିର ଭୟାବହତା ଆମେ ଜାଣିପାରୁ ନାହୁଁ । ଯଦି ଏହି ରଶ୍ମି ସିଧାସଳଖ ଆମ ଉପରେ ପଡ଼େ, ତେବେ ଆମ ଶରୀରର କୋଷଗୁଡ଼ିକ ନଷ୍ଟହୋଇଯିବ, ଚର୍ମ ସିଝିଯିବ ଓ ଚର୍ମରେ କର୍କଟ ରୋଗ ହେବାର ସମ୍ଭାବନା ଦେଖାଯିବ । କ୍ଲୋରୋଫ୍ଲୁରୋ କାର୍ବନ୍ ବାଷ୍ପ ଓଜନ୍ ସ୍ତରକୁ ନଷ୍ଟ କରିଦିଏ । ଏହି ବାଷ୍ପର ଆଧିକ୍ୟ ହେତୁ, ଓଜନ୍ ସ୍ତର କ୍ରମଶଃ ପତଳା ହୋଇଯାଉଛି । ନିକଟରେ ଆଣ୍ଟାର୍କଟିକା ଅଞ୍ଚଳ ଉପରେ ଓଜନ୍ ସ୍ତରରେ ଗର୍ତ୍ତ ସୃଷ୍ଟି ହୋଇଥିଲା । କ୍ଲୋରୋଫ୍ଲୁରୋ କାର୍ବନ ରେଫ୍ରିଜରେଟର୍, ଇଲେକ୍ଟ୍ରୋନିକ୍ ଓ ପ୍ଲାଷ୍ଟିକ୍ ଫୋମ୍ ତିଆରି କାରଖାନାମାନଙ୍କରେ ବ୍ୟବହାର ହୁଏ । ଇଉରୋପ ଓ ଉତ୍ତର ଆମେରିକାରେ ଏହି ବାଷ୍ପର ବ୍ୟବହାର ଅଧିକ ହେଉଥିବାର ଜଣାଯାଏ । ଓଜନ୍ ସ୍ତର ପତଳ ବା ନଷ୍ଟ ହୋଇଗଲେ, ସୂର୍ଯ୍ୟାଲୋକରେ ଥିବା ଅଲଟ୍ରା ଭାୟୋଲେଟ୍ ରଶ୍ମି ସିଧାସଳଖ ପୃଥିବୀ ଉପରେ ପଡ଼ି ତାହାକୁ ଉତ୍ତପ୍ତ କରିପକାଇବ । ବୈଜ୍ଞାନିକମାନଙ୍କ ମତରେ ପୃଥିବୀର ବାୟୁମଣ୍ଡଳ ଉତ୍ତପ୍ତ ହେବା ଫଳରେ ମେରୁ ଅଞ୍ଚଳରେ ଜମାଟ ବାନ୍ଧି ରହିଥିବା ବରଫ ସ୍ତର ତରଳିଯାଇ ସମୁଦ୍ରର ଜଳ ପତନ ବଢ଼ାଇଦେବା ଫଳରେ ସମୁଦ୍ରରେ ପ୍ରବଳ ଜୁଆର ଉଠି ସମୁଦ୍ର ତଟବର୍ତ୍ତୀ ଅଞ୍ଚଳରେ ଗଢ଼ି ଉଠିଥିବା ସଭ୍ୟତାକୁ ବୁଡ଼ାଇଦେଇ ନଷ୍ଟ କରିଦେବ । ପୃଥିବୀର ବାୟୁମଣ୍ଡଳ ଉତ୍ତପ୍ତ ହେବା ଫଳରେ ଜଳବାୟୁର ପରିବର୍ତ୍ତନ ଘଟି ଉର୍ବର କ୍ଷେତ, ମରୁଭୂମି ଓ ମରୁଭୂମି ଶସ୍ୟଶ୍ୟାମଳା ହେବ ।

ସାହାରା ମରୁଭୂମି ଆହୁରି ବଢ଼ିଯିବ ଓ କୃଷି କର୍ମକ୍ଷମ ନଥିବା ସାଇବେରିଆ ଅଞ୍ଚଳରେ ଫସଲ ଅମଳ ହେବ । ପୃଥିବୀର ଏହି ପରିବର୍ତ୍ତନକୁ (Green House Effect) ବା ସବୁଜ ଘର ପ୍ରଭାବ କୁହାଯାଏ । ବୈଜ୍ଞାନିକମାନଙ୍କ ମତରେ, ଆସନ୍ତା ୩୦ ବର୍ଷ ମଧ୍ୟରେ ପୃଥିବୀ ବାୟୁମଣ୍ଡଳର ଉତ୍ତାପ ବର୍ତ୍ତମାନ ଯାହା ଅଛି, ତାହା ଅପେକ୍ଷା ଏକ ଡିଗ୍ରୀ ଅଧିକ ହେବ ଏବଂ ୨୧୦୦ ମସିହା ମଧ୍ୟଭାଗ ସୁଦ୍ଧା ଏହା ୩.୮ ଡିଗ୍ରୀ ଅଧିକ ହୋଇଥିବ ।

ଶବ୍ଦ ପ୍ରଦୂଷଣ ଆମ ସ୍ୱାସ୍ଥ୍ୟ ଉପରେ କୁପ୍ରଭାବ ପକାଇଥାଏ । ଅତ୍ୟଧିକ ଶବ୍ଦ ମଧ୍ୟରେ ବସବାସ କରିବା ବା ବହୁ ସମୟ ଧରି କାର୍ଯ୍ୟ କରିବା ଫଳରେ, ମାନସିକ ଅବସାଦ, ମୁଣ୍ଡ ବ୍ୟଥା, କ୍ଳାନ୍ତି, ବଧିରତା, ସ୍ନାୟବିକ ଦୁର୍ବଳତା, ଉଚ୍ଚ ରକ୍ତଚାପ, ହୃଦ୍‌ରୋଗ, ଖାଦ୍ୟ ହଜମରେ ଗଣ୍ଡଗୋଳ, ନିଦ୍ରାହୀନତା ଇତ୍ୟାଦି ରୋଗ ଦେଖାଦିଏ । ଯାନ୍ତ୍ରିକ ଯାନବାହାନଗୁଡ଼ିକର ଦ୍ରୁତ ଚାଳନା, ଡାକବାଜି ଯନ୍ତ୍ର, ରେଡ଼ିଓ, ଟେଲିଭିଜନଗୁଡ଼ିକୁ ଉଚ୍ଚ ସ୍ୱରରେ ବଜାଇବା ଓ କଳକାରଖାନାଗୁଡ଼ିକରୁ ବାହାରୁଥିବା କର୍କଶ ଶବ୍ଦ ଦ୍ୱାରା ଶବ୍ଦ ପ୍ରଦୂଷଣ ସୃଷ୍ଟି ହୁଏ । ଏହାର ପରିମାପକୁ ଡେସିବେଲ୍ କୁହାଯାଏ । ଗୋଟିଏ ଜେଟ୍ ଉଡ଼ାଜାହାଜ ଉଡ଼ିବା ସମୟରେ ୧୫୦ ଡେସିବେଲ୍ ଶବ୍ଦ କରୁଥିବାବେଳେ, ଆମେ କଥାବାର୍ତ୍ତା କରୁଥିବା ସମୟରେ ସାଧାରଣତଃ ୬୦ ଡେସିବେଲ୍ ଶବ୍ଦ କରିଥାଉ । ସୁନିଦ୍ରା ପାଇଁ ୩୦ ଡେସିବେଲ୍ ଶବ୍ଦ କୌଣସି କ୍ଷତି କରେ ନାହିଁ । ତେବେ, ୩୦ରୁ ୬୦ ଡେସିବେଲ୍ ଶବ୍ଦ ଆମ ସ୍ୱାସ୍ଥ୍ୟ ଉପରେ କୌଣସି ପ୍ରତିକୂଳ ପ୍ରଭାବ ପକାଏ ନାହିଁ । ଦ୍ରୁତ ଗତିରେ ଯାନ୍ତ୍ରିକ ଯାନବାହାନଗୁଡ଼ିକୁ ନଚଳାଇବା ଏବଂ ସେଥିରେ ବ୍ୟବହୃତ ଏୟାର ହର୍ଣ୍ଣଗୁଡ଼ିକର ଅପସାରଣ, ରେଡ଼ିଓ, ଟେଲିଭିଜନ୍‌ଗୁଡ଼ିକୁ ଅଳ୍ପ ସ୍ୱରରେ ବଜାଇବା ଓ କଳକାରଖାନାର ଯନ୍ତ୍ରପାତିଗୁଡ଼ିକର ନିୟମିତ ରକ୍ଷଣାବେକ୍ଷଣ ଓ ଡାକବାଜି ଯନ୍ତ୍ର ବ୍ୟବହାର ଉପରେ ନିୟନ୍ତ୍ରଣ କଲେ ଶବ୍ଦ ପ୍ରଦୂଷଣକୁ ଅନେକାଂଶରେ ପ୍ରତିହତ କରାଯାଇ ପାରିବ ।

ପୋକମାରା ଔଷଧର ବ୍ୟାପକ ବ୍ୟବହାର ଫଳରେ ଖାଦ୍ୟଶସ୍ୟଗୁଡ଼ିକ ବିଷାକ୍ତ ହୋଇଯାଏ । ବିକାଶଶୀଳ ଦେଶମାନଙ୍କରେ ପୋକମରା ଔଷଧର ପ୍ରଭାବରେ ବର୍ଷକୁ ପ୍ରାୟ ୧୦ ହଜାର ଲୋକ ମୃତ୍ୟୁବରଣ କରିଥାନ୍ତି ଓ ୪ ଲକ୍ଷ ଲୋକ ଏହି ବିଷରେ ଆକ୍ରାନ୍ତ ହୋଇଥାନ୍ତି । ବିଷଯୁକ୍ତ ଖାଦ୍ୟଶସ୍ୟକୁ ମନୁଷ୍ୟ ଓ ପଶୁପକ୍ଷୀ ଖାଇବା ଫଳରେ ସେମାନଙ୍କ ଶରୀରରେ ଏହି ବିଷର ପ୍ରଭାବ ପଡ଼ିଥାଏ । ପଶୁମାନଙ୍କ ମାଂସ ଓ କ୍ଷୀର ଖାଇବା ଦ୍ୱାରା ଏହି ବିଷ ଆମ ଶରୀରକୁ ଚାଲି ଆସିବା ଫଳରେ ଆମକୁ କର୍କଟ ରୋଗ, ସ୍ନାୟବିକ ଅସୁସ୍ଥତା, ଯକୃତ ଜନିତ ରୋଗ ଓ ଦୃଷ୍ଟିହୀନତା ରୋଗ ଇତ୍ୟାଦି ହୋଇଥାଏ । ଏହି ବିଷ ହାତରୁ ରକ୍ଷା ପାଇବା ପାଇଁ କେତେକ ଉନ୍ନତ ଦେଶରେ ଅନେକ ପ୍ରକାର ପୋକମରା ଔଷଧର ବ୍ୟବହାରକୁ ନିଷେଧ କରାଯାଇଛି । ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନ ଦ୍ୱାରା କେତେକ ପୋକମରା ଔଷଧର ମାରାତ୍ମକତା ଚିହ୍ନଟ କରାଯାଇଛି ଓ ସେଗୁଡ଼ିକର ବ୍ୟବହାର ସମ୍ପୂର୍ଣ୍ଣ ନିଷିଦ୍ଧ କରାଯାଇଛି ।

ମନୁଷ୍ୟର ମଳମୂତ୍ର, ଆବର୍ଜନା, ଆବର୍ଜନାଯୁକ୍ତ ପାଣି, ପୋକମରା ଔଷଧ, କଳକାରଖାନା ଓ ପରମାଣୁ କାରଖାନାରୁ ବାହାରୁଥିବା କଠିନ, ତରଳ ଓ ତେଜସ୍କ୍ରିୟ ପଦାର୍ଥଗୁଡ଼ିକ ଦ୍ୱାରା ମାଟି ପ୍ରଦୂଷିତ ହୁଏ ଓ କ୍ରମଶଃ ତାହା ଜଳ ଓ ବାୟୁକୁ ମଧ୍ୟ ପ୍ରଦୂଷି କରେ । ମାଟି ପ୍ରଦୂଷିତ ହେବା ଫଳରେ କ୍ରିମୀ ସଂକ୍ରମ ମଶାମାଛି ଓ ଅନ୍ୟାନ୍ୟ କୀଟପତଙ୍ଗ ଉପଦ୍ରବ, ବାତଜ୍ୱର, ଖାଦ୍ ପାଣିଜନିତ ସଂକ୍ରାମକ ରୋଗ କର୍କଟ ରୋଗ ଇତ୍ୟାଦି ମଣି ସମାଜରେ ଦେଖାଦିଏ । ପୋକମରା ଔଷଧ, କଳକାରଖାନା ପରମାଣୁ କାରଖାନାରୁ ବାହାରୁଥିବା ବିଷାକ୍ତ ଓ ତେଜସ୍କ୍ରିୟ ପଦା ପ୍ରଭାବରେ ଖାଦ୍ୟଶସ୍ୟ ବିଷାକ୍ତ ହୋଇଯାଏ । ଏହି ବିଷଯୁ ଖାଦ୍ୟ ଖାଇବା ଫଳରେ ମଣିଷ ଓ ପଶୁ ଉଭୟଙ୍କ ଶରୀର ବିଷର ପ୍ରଭାବ ଦେଖାଦିଏ ଓ ମନୁଷ୍ୟ ନାନାପ୍ରକାର ଜଟି ରୋଗର ଶିକାର ହୁଏ । ଅଳିଆ ଆବର୍ଜନାଗୁଡ଼ିକୁ କମ୍ପୋ ଖତରେ ପରିଣତ କରିବା ଦ୍ୱାରା ଜୈବିକ ସାର ମିଳିବା ସହ ମଶ ମାଛିଙ୍କ ଉପଦ୍ରବରୁ ରକ୍ଷା ମିଳିପାରିବ । ମନୁଷ୍ୟର ମ ନାନାପ୍ରକାର ରୋଗର କାରଣ । ଏଥିରୁ ରକ୍ଷା ପାଇବା ପା ପାଇଖାନା ବ୍ୟବହାର କରାଯିବା ଉଚିତ । କଳକାରଖାନା ପରମାଣୁ କାରଖାନାରୁ ନିସୃତ ବିଷାକ୍ତ ରାସାୟନିକ ତରଳ ତେଜସ୍କ୍ରିୟ ପଦାର୍ଥକୁ ବୈଜ୍ଞାନିକ ପଦ୍ଧତିରେ ଶୋଧନ କଲେ, ଏହା କୁପ୍ରଭାବ ଦୂର ହୋଇପାରିବ ।

ମନୁଷ୍ୟ ଯଦିଓ ନିଜେ ପରମାଣୁ ଶକ୍ତିର ଉଦ୍ଭାବକ, କିନ୍ତୁ ସେ ଆଜି ପରମାଣୁ ବିକିରଣ ଜନିତ ପ୍ରଦୂଷଣରୁ ମୁକ୍ତ ନୁହେଁ ପରମାଣୁ ଶକ୍ତି ରିଆକ୍ଟର୍ ଓ ବୋମାରେ ୟୁରାନିୟମକୁ ବିଭାଜ କରି ଶକ୍ତି ଉତ୍ପାଦନ କରାଯାଏ । ରିଆକ୍ଟର୍‌ର ତେଜସ୍କ୍ରିୟ ପଦାର୍ ଆସ୍ତରରେ ରଖାଯାଉଥିବା ସ୍ଥଳେ ପରମାଣୁ ବୋମା ବିସ୍ଫୋର ଦ୍ୱାରା ଅନେକ ଅପକାରୀ ପଦାର୍ଥ ବାୟୁରେ ମିଶେ ସେଥିମଧ୍ୟରୁ ଆୟୋଡିନ୍-୧୩୧, ସେସିୟମ୍-୧୩ ଷ୍ଟ୍ରୋଣ୍ଟିୟମ୍-୯୦ ଅତ୍ୟନ୍ତ ମାରାତ୍ମକ । ବାୟୁରେ ମିଶି ରହିଥି ଏହି ତେଜସ୍କ୍ରିୟ ପଦାର୍ଥଗୁଡ଼ିକ ବର୍ଷା ପାଣିରେ ମିଶିଯାଇ ଜଳ ସ୍ଥଳକୁ ତେଜସ୍କ୍ରିୟ କରିପକାଏ । ଏହି ତେଜସ୍କ୍ରିୟ ପଦାର୍ଥ ମଧ୍ କେତେକ ଅଳ୍ପ ସମୟ ମଧ୍ୟରେ ସେମାନଙ୍କର ତେଜସ୍କ୍ରିୟ ହରାଉଥିବା ବେଳେ ଷ୍ଟ୍ରୋଣ୍ଟିୟମ୍-୯୦ ବହୁ ବର୍ଷ ଧରି ତାହା ତେଜସ୍କ୍ରିୟତା ହରାଏ ନାହିଁ । ଷ୍ଟ୍ରୋଣ୍ଟିୟମ୍-୯ ଆୟୋଡିନ୍-୧୩୧ ଏବଂ ସେସିୟମ୍-୧୩୭ ଗଛର ପତ୍ର ସହଜରେ ମିଶିଯାଏ କିମ୍ବା ମାଟି ଓ ପାଣିରେ ମିଶି ରହିଥିବା ଏ ତେଜସ୍କ୍ରିୟ ପଦାର୍ଥ ଚେର ବାଟେ ପତ୍ର ଓ ଫଳକୁ ଆସି ତାହା ତେଜସ୍କ୍ରିୟ କରିପକାଏ । ତୃଣଭୋଜି ପ୍ରାଣୀମାନେ ଏହା ଖାଇବା ଦ୍ୱାରା ସେମାନଙ୍କର ମାଂସ ଓ କ୍ଷୀର ତେଜସ୍କ୍ରି ହୋଇଯାଏ । ଆମେ ଏହି ପଶୁମାନଙ୍କର ମାଂସ, କ୍ଷୀର ତେଜସ୍କ୍ରିୟ ଫଳ ବା ଶସ୍ୟକୁ ଖାଇବା ଦ୍ୱାରା ଷ୍ଟ୍ରୋଣ୍ଟିୟମ୍ ହାଡ଼ରେ ଜମା ହୋଇ ହାଡ଼ ମଜ୍ଜାକୁ ତେଜସ୍କ୍ରିୟ କରିପକାଏ । ଫଳରେ ର କୋଷ ଉତ୍ପାଦନରେ ବ୍ୟାଘାତ ସୃଷ୍ଟି ହୋଇ ରକ୍ତ କର୍କଟ ରୋ ହୁଏ । ଆୟୋଡିନ୍-୧୩୧ ଥାଇରଏଡ୍ ଗ୍ରନ୍ଥିକୁ ଯା ଥାଇରକ୍ସିନ୍ କ୍ଷରଣକୁ ଅତ୍ୟଧିକ ବାଧାପ୍ରାପ୍ତ କରିବା ଦ୍ୱା ଥାଇରଏଡ୍ ଗ୍ରନ୍ଥିରେ କର୍କଟ ରୋଗ ସୃଷ୍ଟି କରେ । ସେହିପ ସେସିୟମ୍-୧୩୭ ରକ୍ତ ସ୍ରୋତରେ ମିଶି ପ୍ରଜନନ ଅଂଶ କୋଷଗୁଡ଼ିକୁ ପରିବର୍ତ୍ତନ କରିବା ହେତୁ ବଂଶ ଉପରେ ଏହା କୁପ୍ରଭାବ ପଡ଼େ । ଫଳରେ, ବିକଳାଙ୍ଗ, ଭ୍ରୂଣ ଓ ବୁଦ୍ଧିହୀନ ଶି ଜନ୍ମ ହୁଅନ୍ତି । ପରମାଣୁ ବୋମାର ତେଜସ୍କ୍ରିୟ ଅଂଶ କର୍କଟ ରୋ ସୃଷ୍ଟି କରେ । ୧୯୪୫ ମସିହାରେ ଜାପାନ୍‌ର ହିରୋସୀମା ନାଗାସାକିରେ ପଡ଼ିଥିବା ପରମାଣୁ ବୋମାର କୁପ୍ରଭାବ ଏ ପର୍ଯ୍

ସେ ଅଞ୍ଚଳରୁ ମଧ୍ୟ ଯାଇନାହିଁ । ଆମେରିକା, ରୁଷିଆ, ଫ୍ରାନ୍ସ ଓ ଚିନ୍ ପ୍ରଭୃତି ଦେଶ ପରମାଣୁ ବୋମାର ଅଧିକାରୀ ହୋଇ ବିଭିନ୍ନ ସ୍ଥାନରେ ନୂତନ ଧରଣର ପରମାଣୁ ବୋମା ପରୀକ୍ଷାମୂଳକ ଭାବେ ବିସ୍ଫୋରଣ କରୁଥିବାରୁ ସମ୍ପୃକ୍ତ ଅଞ୍ଚଳର ଜୀବଜଗତ ଉପରେ ଏହାର କୁପ୍ରଭାବ ପଡୁଛି । ସୁଖର କଥା, ରାଜନୈତିକ ପ୍ରକ୍ରିୟା ଦ୍ୱାରା ବିଶ୍ୱରୁ ପରମାଣୁ ଯୁଦ୍ଧକୁ କେତେକାଂଶରେ ଏଡ଼ାଇ ଦିଆଯାଇ ପାରିଛି ।

ପ୍ରଦୂଷଣର ପ୍ରଭାବ ମାନବ ସ୍ୱାସ୍ଥ୍ୟ ଉପରେ ଏପରି ପ୍ରତିକୂଳ ଅବସ୍ଥା ସୃଷ୍ଟି କଲାଣି, ଯାହାର ସମାଧାନ ବିଶ୍ୱବାସୀଙ୍କ ସମ୍ମୁଖରେ ଗଭୀର ଚିନ୍ତାର ବିଷୟ ହୋଇଛି । ଆଜଠୁଁ ଏଥିପ୍ରତି ଦୃଷ୍ଟି ଦେଇ ସମାଧାନର ପନ୍ଥା ନିରୂପଣ କରିବାକୁ ହେବ । ବୃକ୍ଷଚ୍ଛେଦନ ବନ୍ଦ କରିବା ପାଇଁ ଆଇନ୍‌ର ବ୍ୟବସ୍ଥାକୁ ଅଧିକ କଡ଼ାକଡ଼ି କରିବା ସଙ୍ଗେ ସଙ୍ଗେ ଆବଶ୍ୟକ ସଂଖ୍ୟକ କର୍ମଚାରୀ ନିୟୋଜନ, ସରକାରୀ ଓ ବେସରକାରୀ ଜମିରେ ନୂତନ ଜଙ୍ଗଲ ସୃଷ୍ଟି କରିବା ଓ ବେସରକାରୀ କ୍ଷେତ୍ରରେ ଆବଶ୍ୟକ ପ୍ରୋତ୍ସାହନ ଦେବା, ପେଟ୍ରୋଲ୍ ଓ ଡିଜେଲ୍ ଚାଳିତ ଯାନବାହାନଗୁଡ଼ିକର ଚଳାଚଳକୁ ନିୟନ୍ତ୍ରଣ କରିବା ଓ ସହରାଞ୍ଚଳରେ ବ୍ୟାପକ ବୃକ୍ଷରୋପଣ କରିବା ଏବଂ ଯାନବାହାନଗୁଡ଼ିକରେ ବାଧ୍ୟତାମୂଳକ ଭାବେ କାଟାଲାଇଜର୍ ସଂଯୋଗ କରିବା ପାଇଁ ଦୃଢ଼ ପଦକ୍ଷେପ ନିଆଯିବା ଉଚିତ । ଏହା ବ୍ୟତୀତ, କଳକାରଖାନାଗୁଡ଼ିକ ଜନବସତିଠାରୁ ଦୂରରେ ପ୍ରତିଷ୍ଠା କରିବା ଓ ସେଥିରୁ ନିର୍ଗତ ବିଷାକ୍ତ ରାସାୟନିକ ଜଳକୁ ବୈଜ୍ଞାନିକ ପଦ୍ଧତିରେ ବିଶୋଧିତ କରି ନଦୀ ବା ସମୁଦ୍ରରେ ଛାଡ଼ିଲେ, ରାସାୟନିକ ସାର ଓ ପୋକମରା ଔଷଧର ବ୍ୟବହାରକୁ ନିୟନ୍ତ୍ରଣ କଲେ ଅନେକାଂଶରେ ପ୍ରଦୂଷଣକୁ ରୋକାଯାଇ ପାରିବ । ଉପଯୁକ୍ତ ସ୍ୱାସ୍ଥ୍ୟ ଶିକ୍ଷା ଓ ଗଣ ମାଧ୍ୟମଗୁଡ଼ିକ ଦ୍ୱାରା ଜନସଂଖ୍ୟା ନିୟନ୍ତ୍ରଣ, ଜଳ, ବାୟୁ ଓ ଶବ୍ଦ ପ୍ରଦୂଷଣ ବିଷୟରେ ଜନ ସଚେତନତା ସୃଷ୍ଟି କରିବା ଦିଗରେ ବିଶେଷ ପ୍ରୟତ୍ନ କରାଯିବା ଆବଶ୍ୟକ । ଅଧିକନ୍ତୁ, ଦେଶ ଦେଶ ମଧ୍ୟରେ ଲାଗି ରହିଥିବା ଅବିଶ୍ୱାସ ଭାବକୁ ଦୂର କରି ବନ୍ଧୁତ୍ୱପୂର୍ଣ୍ଣ ବାତାବରଣ ସୃଷ୍ଟି କରାଯାଇ ପାରିଲେ, ବିଶ୍ୱରେ ନିଃଶ୍ୱାସ ମାରି ପାରିବ । ବୈଜ୍ଞାନିକମାନଙ୍କ ମତରେ, ପ୍ରଦୂଷଣକୁ ଦୂର କରାଯାଇ ପାରିଲେ, ଆଗାମୀ ୩୦ ବର୍ଷ ମଧ୍ୟରେ ପୃଥିବୀ ବାୟୁମଣ୍ଡଳର ଉତ୍ତାପ ବର୍ତ୍ତମାନଠାରୁ ୩-୮ ଡିଗ୍ରୀ ଫରନ୍ ହିଟ୍ ଅଧିକ ହୋଇ ସବୁଜ ଘର ପ୍ରଭାବ ସୃଷ୍ଟି ହେବ ଓ ପୃଥିବୀ ପୃଷ୍ଠରେ ତାଣ୍ଡବଲୀଳା ସୃଷ୍ଟି ହୋଇ ଅତୀତର ଡାଇନୋସେରସ୍ ଯୁଗର ପୁନରାଗମ ହେବ ।

---

ହେଲଥ୍ ଏଡୁକେଟର୍,
ସୂଚନା, ଶିକ୍ଷା ଓ ସଞ୍ଚାର କେନ୍ଦ୍ର,
ନୂଆପଲ୍ଲୀ, ଭୁବନେଶ୍ୱର–୧୨ ।



ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଭୁବନେଶ୍ୱରଠାରେ ଆୟୋଜିତ ଏକ ବୈଠକରେ କର୍ମ ନିଯୁକ୍ତି ସୃଷ୍ଟିର ସମ୍ଭାବନା ସମ୍ପର୍କରେ ଆଲୋଚନା କରୁଛନ୍ତି ।

# ଧାନ ଚଷୁରୁ ରାନ୍ଧିବା ତେଲ

ସୁବାସ ସାହୁ

ଆମର କୃଷି ସଭ୍ୟତା ମାନବ ସଭ୍ୟତା ପରି ସୁପ୍ରାଚୀନ । "ଅନ୍ନାତ୍ ଭବନ୍ତି ଭୂତାନି" ଅଭିବ୍ୟକ୍ତିରେ ଅନ୍ନରୁ ମଣିଷର ସୃଷ୍ଟି ବୋଲି ବର୍ଣ୍ଣନା ରହିଛି । ବୈଜ୍ଞାନିକମାନେ ଖ୍ରୀଷ୍ଟପୂର୍ବ ୫୦୦୦ ମସିହାରେ ଚୀନ୍‌ରେ ଧାନ ଚାଷ କରାଯାଉଥିବାର ତଥ୍ୟ ଉପସ୍ଥାପିତ କରନ୍ତି । ଖ୍ରୀଷ୍ଟପୂର୍ବ ୨୦୦୦ ମସିହାରେ ଆଫ୍ରିକାର କୃଷକମାନେ ମଧ୍ୟ ଧାନଚାଷ କରୁଥିବାର ପ୍ରମାଣ ରହିଛି ।

ଧାନକୁ ମୁଖ୍ୟତଃ ଚାଉଳ ଉତ୍ପାଦନ ପାଇଁ ଚାଷ କରାଯାଇଥାଏ । କିନ୍ତୁ ଧାନରୁ ଯେ ତେଲ ମିଳିପାରିବ ଏ କଥା ହୁଏତ ଅନେକ ଜାଣି ନଥିବେ । ହିସାବରୁ ଜଣାଯାଏ ଯେ ଆମ ଦେଶରେ ଉତ୍ପାଦନ ହେଉଥିବା ଧାନରୁ ବର୍ଷକୁ ପ୍ରାୟ ୭ ଲକ୍ଷ ଟନ୍‌ରୁ ଅଧିକ ପରିମାଣର ଖାଇବା ତେଲ ପ୍ରସ୍ତୁତ କରାଯାଇ ପାରିବ । ସେହିପରି ଆମ ରାଜ୍ୟରେ ଉତ୍ପାଦିତ ହେଉଥିବା ଧାନରୁ ତେଲ ବାହାର କରାଗଲେ ଆମେ ବର୍ଷକୁ ୬୯ ହଜାର ଟନ୍ ଖାଇବା ତେଲ ପାଇପାରିବା ।

## 'ବ୍ରାନ୍'ରେ ଥିବା ତୈଳାଂଶ

ଧାନରୁ କୁଣ୍ଡା ବାହାରିଗଲା ପରେ ଚାଉଳ ଉପରେ ଯେଉଁ ପତଳା ଆସ୍ତରଣ ରହେ ତାକୁ ଇଂରାଜୀରେ "ବ୍ରାନ୍" କହନ୍ତି । ଏହି ଚଷୁ ଶତକଡ଼ା ୧୫ରୁ ୨୦ ଭାଗ ପର୍ଯ୍ୟନ୍ତ ତେଲ ଥିବାର ଜଣାଯାଏ । ତେଣୁ କେବଳ ଭାରତ କାହିଁକି ବହୁଳ ଭାବେ ଧାନ ଚାଷ ହେଉଥିବା ଦେଶମାନଙ୍କରେ ଧାନ ଚଷୁରୁ ଯଥେଷ୍ଟ ପରିମାଣରେ ତେଲ ବାହାର କରାଯାଇ ପାରିବ ।

ଅନେକ ପ୍ରଣାଳୀରେ ଧାନ ଚଷୁରୁ ତେଲ ବାହାର କରାଯାଇଥାଏ । ଏହି ପଦ୍ଧତିଗୁଡ଼ିକ ମଧ୍ୟରେ ହାଇଡ୍ରୋଲିକ୍ ପ୍ରେସ୍ ଯନ୍ତ୍ର, ଏକ୍ସପେଲର ଓ ରାସାୟନିକ ପଦ୍ଧତି ଅନ୍ତର୍ଭୁକ୍ତ । ଛୋଟ ଧାନ କଳମାନଙ୍କରୁ ବାହାରୁଥିବା ଚଷୁରୁ ହାଇଡ୍ରୋଲିକ୍ ପ୍ରେସ୍ ସାହାଯ୍ୟରେ ତେଲ ବାହାର କରାଯାଇ ପାରିବ । ଚୀନ୍ ଦେଶରେ ଏକ୍ସପେଲର ସାହାଯ୍ୟରେ ତେଲ ବାହାର କରାଯାଇଥାଏ । ଏହି ପ୍ରଣାଳୀ ଜଟିଳ ଓ ବ୍ୟୟ ସାପେକ୍ଷ ହୋଇଥିବାରୁ ଆମ ଦେଶରେ ଏହା ଅନୁକରଣ କରା
ନାହିଁ ।

ଆମ ଦେଶରେ ରାସାୟନିକ ଉପାୟରେ ତେଲ ବା
କରାଯାଏ । ହେକ୍‌ସନ୍ ନାମକ ରାସାୟନିକ ପଦାର୍ଥ ସ
ଚଷୁକୁ ଗୋଳାଇ ଦେଲେ ଚଷୁରେ ଥିବା ତେଲ ବାହାରି ଆ
ତା'ପରେ ପାତନ ପ୍ରଣାଳୀରେ ତହିଁରୁ ତେଲ ଅଲଗା କର
ଏହି ତେଲକୁ ରିଫାଇନ୍ କରିବା ପରେ ବ୍ୟବ
କରାଯାଇଥାଏ ।

## ନୂତନ ତୈଳ ଉତ୍ପାଦନ କୌଶଳ

ଏବେ ଆମେରିକାର ବୈଜ୍ଞାନିକମାନେ ଧାନ ଚଷୁରୁ ତ
ବାହାର କରିବା ପାଇଁ ଏକ ନୂତନ କୌଶଳ ଉଦ୍ଭାବନ କରି
ଏହାଦ୍ୱାରା ଧାନରୁ ଚାଉଳ ବାହାର କଲାବେଳେ ନଷ୍ଟ ହେଉ
ତୈଳ ଅଂଶକୁ ସଂଗ୍ରହ କରି ଖାଇବା ଉପଯୋଗୀ ତେଲ ବା
କରାଯାଉଛି ।

ଏହି ପଦ୍ଧତିରେ ଚାଉଳରୁ କୁଣ୍ଡା ଅଲଗା କରିବାର ୨୪
ମଧ୍ୟରେ ଚଷୁରୁ ତେଲ ସଂଗ୍ରହ କରିବା ଆବଶ୍ୟକ । ନ
ଏଥିରେ ଥିବା ଫ୍ରିଫ୍ୟାଟି ଏସିଡ୍ ପରିମାଣ ବୃଦ୍ଧି ପାଇବାରୁ
ଖାଇବା ଉପଯୋଗୀ ହୋଇନଥାଏ । ଏଥି ସହିତ
ବାହାରୁ ଥିବା ତେଲ ପରିମାଣ କମି ଯିବାର ସମ୍ଭା
ରହିଥାଏ । ଉପଯୁକ୍ତ ଅବସ୍ଥାରେ ସାଇତି ରଖିଲେ ତିନି
ପର୍ଯ୍ୟନ୍ତ ତୈଳ ଅଂଶ ଅକ୍ଷୁଣ୍ଣ ରହିପାରେ ।

ଚଷୁରୁ ବାହାରୁ ଥିବା ତେଲ ବେଶ୍ ସଫା ଓ ଗନ୍ଧ
ଏହାକୁ ଉତ୍ତମ ଖାଇବା ତେଲ ରୂପେ ବ୍ୟବହାର କରା
ପାରିବ । ଏଥିରୁ ବନସ୍ପତି ଘିଅ ପ୍ରସ୍ତୁତ କରି ମଧ୍ୟ ବ୍ୟବ
କରାଯାଇ ପାରିବ । ଏଥିରେ ଅନ୍ୟାନ୍ୟ ଖାଦ୍ୟସାର ବ

ଶତକଡ଼ା ୨-୪ ଭାଗ ପର୍ଯ୍ୟନ୍ତ ଭିଟାମିନ୍ 'ବି' ଏବଂ ଭିଟାମିନ୍ 'ଇ' ରହିଥିବାର ଜଣାଯାଏ ।

ଏହି ତେଲରେ ଅନେକ ଔଷଧ ମଧ୍ୟ ରହିଛି । ଆମର ଶାରୀରିକ ଅଭିବୃଦ୍ଧି, ରକ୍ତ ସଞ୍ଚାଳନ ଓ ହରମୋନ୍ କ୍ଷରଣ ଦିଗରେ ମଧ୍ୟ ଏହା ଯଥେଷ୍ଟ ସାହାଯ୍ୟ କରିଥାଏ । ଜାପାନର ଲୋକମାନେ ଏହି ତେଲରୁ "ଓଜ" ନାମକ ଏକ ପ୍ରକାରର ଔଷଧ ମଧ୍ୟ ପ୍ରସ୍ତୁତ କରିଥାନ୍ତି । ଏହି ତେଲକୁ ବର୍ତ୍ତମାନ ସାବୁନ ତିଆରି କରିବା ପାଇଁ କଞ୍ଚାମାଲ ରୂପେ ବ୍ୟବହାର କରାଯାଉଛି ।

## ଉପଜାତ ପଦାର୍ଥ

ତଷ୍ଟରୁ ବାହାରୁ ଥିବା ତେଲକୁ ରିଫାଇନ୍ କରିବା ବେଳେ କେତେକ ଉପଜାତ ପଦାର୍ଥ ବାହାରିଥାଏ । ଏହି ପଦାର୍ଥକୁ ବୋଡା ପଲିସ୍ ଉତ୍ପାଦନ ପାଇଁ ବ୍ୟବହାର କରାଯାଉଥିବାର ଜଣାଯାଏ ।

ଆମ ଦେଶର ଧାନକଳମାନଙ୍କରେ ପ୍ରସ୍ତୁତ ହେଉଥିବା "ବ୍ରାନ୍"ର ଗୁଣାତ୍ମକମାନ ନିମ୍ନତର ହୋଇଥିବାରୁ ଯଥେଷ୍ଟ ପରିମାଣରେ ତୈଳ ଉତ୍ପାଦନ କରାଯାଇ ପାରୁ ନାହିଁ । ଆଜିକାଲି ଏହି ସମସ୍ୟାକୁ ଦୂର କରିବା ପାଇଁ ବ୍ୟାପକ ଭାବେ ଚେଷ୍ଟା କରାଯାଉଛି । ସଂପ୍ରତି ଧାନକଳମାନଙ୍କର ଆଧୁନିକୀକରଣ କରାଯିବା ଯୋଗୁଁ ଅଧିକ ପରିମାଣରେ ତେଲ ମିଳିବା ସମ୍ଭବ ହୋଇ ପାରୁଛି ।

କହିବା ବାହୁଲ୍ୟ, ଧାନ ତେଲକୁ ବର୍ତ୍ତମାନ ପର୍ଯ୍ୟନ୍ତ ଠିକ୍ ଭାବେ ଉପଯୋଗ କରାଯାଇ ପାରିନାହିଁ । ଆମ ଦେଶରେ ଉତ୍ପାଦନ ହେଉଥିବା ଧାନରୁ ବେଶୀ ପରିମାଣରେ ତୈଳ ଉତ୍ପାଦନ କରାଗଲେ ଆମର ଖାଇବା ତେଲ ଅଭାବ ଦୂରହୋଇ ପାରନ୍ତା । ହୁଏତ ଖାଇବା ତେଲ ଆମଦାନୀ କରିବା ପାଇଁ ପ୍ରତିବର୍ଷ ଆମ ଦେଶକୁ ଶହ ଶହ କୋଟି ଟଙ୍କାର ବୈଦେଶିକ ମୁଦ୍ରା ହରାଇବାକୁ ପଡ଼ନ୍ତା ନାହିଁ ।

---

ଦୂର ଶିକ୍ଷା କାର୍ଯ୍ୟକ୍ରମ,
ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ,
ଭୁବନେଶ୍ୱର–୩ ।



ଗଞ୍ଜାମ ଜିଲ୍ଲାର ବନ୍ୟା କ୍ଷତିଗ୍ରସ୍ତ ଅଞ୍ଚଳରେ ରିଲିଫ୍ କାର୍ଯ୍ୟର ସୁବିଧା ନିମନ୍ତେ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଓ ଶିଳ୍ପ ଗୃହ ପ୍ରତିନିଧିମାନଙ୍କ ସହିତ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଆଲୋଚନା । ଏହି ଆଲୋଚନାରେ ରାଜସ୍ୱ ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ରନାଥ ନାୟକ, ଜଳସେଚନ ମନ୍ତ୍ରୀ ଶ୍ରୀ ବିଜୟ କୁମାର ମହାପାତ୍ର, ପଞ୍ଚାୟତିରାଜ ମନ୍ତ୍ରୀ ଶ୍ରୀ ଦାମୋଦର ରାଉତ ଅଂଶ ଗ୍ରହଣ କରିଥିଲେ ।

# ସମାଜବିରୋଧୀ କାର୍ଯ୍ୟକଳାପର କାରଣ ଓ ନିରାକରଣ

ଶ୍ରୀ ବିବେକାନନ୍ଦ ମିଶ୍ର

ଆଜିକାଲି ଖବରକାଗଜରେ ଆଖି ବୁଲାଇବା ମାତ୍ରେ ସମାଜ ବିରୋଧୀ କାର୍ଯ୍ୟକଳାପ ଓ ବିଶୃଙ୍ଖଳାର ସମୀକ୍ଷା ସହଜରେ ପରିଦୃଷ୍ଟ ହୁଏ । ଏହାର ନିରାକରଣ ଦିଗରେ ପୁଲିସର ନିଷ୍କ୍ରିୟତା ନିନ୍ଦିତ ହେବାର ଦୃଷ୍ଟାନ୍ତ ମଧ୍ୟ ବିରଳ ନୁହେଁ । ତେବେ ସମାଜର ବିବର୍ତ୍ତନ ସାଙ୍ଗକୁ ଯେ, ଅପରାଧୀଙ୍କ ଉପଦ୍ରବ ବୃଦ୍ଧି ପାଇବାରେ ଲାଗିଛି–ଏହା ମଧ୍ୟ ସ୍ପଷ୍ଟ । ସୃଷ୍ଟିର ଆଦ୍ୟରୁ ଜଣାଯାଏ ଜଡ଼ ଜଗତରେ ବିଶୃଙ୍ଖଳା ନଥିଲା । ଜଡ଼ରୁ ପ୍ରାଣୀର ଆବିର୍ଭାବ ପରେ ସେମାନଙ୍କ ମଧ୍ୟରେ ଦେଖା ଦେଇଛି ବୈଚିତ୍ର୍ୟ । ଗୋଟିଏ ଦଳ ସଙ୍ଗେ ଅନ୍ୟ ଦଳର କଳହର ସୂତ୍ରପାତ ହୋଇଛି । ପରସ୍ପର ମଧ୍ୟରେ ପ୍ରତିଦ୍ୱନ୍ଦିତା ଲାଗିରହିଛି । ଏହି ପ୍ରାଣୀ ଜଗତରୁ କ୍ରମଶଃ ଜନ୍ମ ନେଲା ମଣିଷ । ମଣିଷ ମନ ଓ ବୁଦ୍ଧିର ଅଧିକାରୀ ହୋଇ ଶ୍ରେଷ୍ଠ ଜୀବ ରୂପେ ପରିଗଣିତ ହେଲା । ନିଜକୁ ଅତି ଚତୁର ବୋଲି ବିବେଚନା କରି, ଆରମ୍ଭ କଲା ଅନ୍ୟକୁ ଶାସନ କରି ଦମନ କରିବା । ସେହିଠାରୁ ପ୍ରକୃତରେ ଆରମ୍ଭ ହେଲା ଜଗତରେ ବିଭିନ୍ନ ଦ୍ୱନ୍ଦ୍ୱ, ବିରୋଧ ଓ ସଂଘାତ । ଛଳ ବିଶେଷରେ ଅନ୍ୟର କ୍ଷତି ସାଧନ କରି ନିଜର ସୁଖ ସମୃଦ୍ଧିରେ ଲିପ୍ତ ରହିଲା ମଣିଷ । ଅହଂଭାବପୂର୍ଣ୍ଣ ଏହି ମଣିଷ ନିଜକୁ ଚିହ୍ନିବା ବ୍ୟତୀତ ପ୍ରାୟତଃ ଆଉ କାହାରିକୁ ଚିହ୍ନେ ନାହିଁ । ବର୍ତ୍ତମାନ ଜୀବନରେ ଆମେ କେହି କାହାରିକୁ ଜାଣି ନାହୁଁ କି ବୁଝି ନାହୁଁ । ମଣିଷ ହୋଇ ପାଖା ପାଖି ରହି ମଧ୍ୟ କେହି କାହାରିକୁ ଆମେ ସହ୍ୟ କରିପାରୁନା । ସମସ୍ତଙ୍କୁ ଠେଲି ଦେଇ ସେ ନିଜେ କେବଳ ବଡ଼ ହେବା ପାଇଁ ବ୍ୟସ୍ତ । ଏହିଭଳି ସଂକୀର୍ଣ୍ଣ ସ୍ୱାର୍ଥପର ବ୍ୟକ୍ତିତ୍ୱ ପରିବାର ନକଲା ଯାଏଁ, ବିଶୃଙ୍ଖଳା ଲାଗି ରହିବା ସ୍ୱାଭାବିକ । ପୁନଶ୍ଚ ବିଶୃଙ୍ଖଳା ଓ ସମାଜ ବିରୋଧୀ କାର୍ଯ୍ୟ କଳାପ ବୃଦ୍ଧିର କାରଣ ସମ୍ପର୍କରେ ବହୁ ଚର୍ଚ୍ଚିତ ନିମ୍ନ ବିଷୟବସ୍ତୁ ଉପରେ ଗୁରୁତ୍ୱ ଆରୋପ କରାଯିବା ନିହାତି ଆବଶ୍ୟକ ।

(୧) ଉପଯୁକ୍ତ ଶିକ୍ଷା ଓ ଅର୍ଥନୈତିକ ବ୍ୟବସ୍ଥା ।

(୨) ଯନ୍ତ୍ର ଯୁଗରେ ମାନବିକ ମୂଲ୍ୟବୋଧର ମର୍ଯ୍ୟାଦା ଅକ୍ଷୁଣ୍ଣ ରଖିବା ।

(୩) ପରିବାର ମଧ୍ୟରେ ସଂହତିର ସୁଦୃଢ଼ତା ।

(୪) ନୈତିକତା ଓ ସଂସ୍କୃତିର ସୁରକ୍ଷା ।

(୫) ମଣିଷର ସ୍ୱାର୍ଥାନ୍ୱେଷୀ ମନୋଭାବର ପରିବର୍ତ୍ତନ ।

(୬) ବିଭିନ୍ନ ମାରଣାସ୍ତ୍ର ଓ ଆଣବିକ ଅସ୍ତ୍ରର ପ୍ରତିଯୋଗି ଯୋଗୁଁ ଭବିଷ୍ୟତ ଅନିଶ୍ଚିତତା ଜନିତ ସନ୍ଦେହ ମୋ ଇତ୍ୟାଦି ।

ଏହି ସବୁ ପ୍ରତି ଯଦିଓ ରାଜନୈତିକ ନେତୃତ୍ୱ ସର୍ବଦା ସଚେତନ ବିଭିନ୍ନ ଯୋଜନା ପ୍ରଣୟନ କରନ୍ତି । ତଥାପି ସେହି ଅବସ୍ଥ ପରିବର୍ତ୍ତନ ନିମନ୍ତେ ମାନବିକ ନେତୃତ୍ୱର ଆବଶ୍ୟକତା ଉପ ହୋଇଥାଏ ।

ଆଜିକାଲି ଆଉ ଶାସ୍ତ୍ର ବାଣୀ – "ବସୁଧୈବ କୁଟୁମ୍ବକମ୍" ଓ "ମଣିଷକୁ ତୁମେ ହେୟ ମଣିଲେ, ନିଜେ ତୁମେ ହେୟ ହୋଇଯି ଇତ୍ୟାଦି କାହାରି ମନକୁ ଛୁଏଁ ନାହିଁ । ତେଣୁ ଏହି ସୁଗ ଉଦାସୀନତା ଓ ସହାନୁଭୂତିର ଅଭାବ ପରିଲକ୍ଷିତ ହୁଏ ମଣି ପାଖରେ । ତେଣୁ ଦିନ ଦି'ପହରେ ବିଚ୍‌ରାସ୍ତା ଉପରେ ମାରପି ହତ୍ୟା, ଲୁଣ୍ଠନ ଇତ୍ୟାଦି ଘୃଣ୍ୟ କାଣ୍ଡ ସବୁ ଦେଖି ମଧ୍ୟ ନଦେଖି ଭଳି ଲୋକେ ଅଭିନୟ କରନ୍ତି । ଏହି ଭଳି ଅପରାଧ ନିମ କେବଳ ପୁଲିସ୍‌କୁ ଖବର ଦେବା ବଡ଼ କଥା ନୁହେଁ । ବଡ଼ କ ହେଉଛି, ଭାରତ ଭଳି ଏକ ବୃହତ୍ ଗଣତନ୍ତ୍ର ରାଷ୍ଟ୍ରରେ ଏହି ଶ ଅପରାଧକୁ ଜନସାଧାରଣ ଘୃଣା କରିବା ସଙ୍ଗେ ସଙ୍ଗେ ଏହ ନିରାକରଣ ଦିଗରେ ସଜାଗ ହେବା ଉଚିତ । ତା' ନହେ ସମାଜର ସ୍ନେହ ଓ ମମତା ଅଭାବରୁ କେତେ ଯେ ତ ବିପଥଗାମୀ ହୋଇପଡ଼ିବେ, ତା'ର ଇୟତ୍ତା ନାହିଁ । ଅପର ପ୍ରବଣତା ମନୁଷ୍ୟର ସହଜାତ ଗୁଣ ନୁହେଁ । ଏହା ସାଧାରଣ ପାରିପାର୍ଶ୍ୱିକ ଅବସ୍ଥାର ପ୍ରଭାବରୁ ଘଟିଥାଏ । ତେଣୁ ବି ପଦକ୍ଷେପ ନେଇପାରିଲେ ଅପରାଧୀର ଚରିତ୍ରକୁ ସଂଶୋ କରାଯାଇପାରେ । କେବଳ ପୁଲିସ ଦଣ୍ଡବିଧି ଆଇନ୍‌କୁ ଲାଗୁ ତା'ରି ସଂଶୋଧନ ସମ୍ଭବ ହୋଇନପାରେ । ପୂର୍ବ କାଳରେ ମ ଦଣ୍ଡବିଧି ପ୍ରଣାଳୀ ଅତ୍ୟନ୍ତ କଠୋର ଥିଲା । ସାମାନ୍ୟତମ ଦୋ ପାଇଁ ଅପରାଧୀର ହସ୍ତପଦ ଛେଦନ ଓ ମୃତ୍ୟୁ ଦଣ୍ଡ ପର୍ଯ୍ୟ ଦିଆଯାଉଥିଲା । କିନ୍ତୁ ଏହାର ପ୍ରଭାବ ଓଲଟା ହେ ସର୍ବସାଧାରଣଙ୍କ ସମ୍ମୁଖରେ ଜଣେ ଅପରାଧୀକୁ ମୃତ୍ୟୁଦଣ୍ଡ ଫାଶୀ ଦିଆଗଲା ବେଳେ ଯେଉଁ ଜନସମାଗମ ଘଟୁଥିଲା, ସେ ଅବସରରେ ବହୁ ସଂଖ୍ୟକ ପକେଟମାରୁ ଶ୍ରେଣୀ ରତ ଅପରାଧମାନ ବୃଦ୍ଧି ପାଇବାର ଦେଖାଗଲା । ଦଣ୍ଡଜନିତ ପରିବର୍ତ୍ତେ ଜନତା ତାକୁ ଏକ ଉତ୍ସବ ରୂପେ ଉପଭୋଗ କରିବା ଲାଗିଲେ । ମେଳା ମହୋତ୍ସବ ଭଳି ଦୋକାନ ବଜାରରେ

ରୀତିମତ ବ୍ୟବସାୟ ଖୋଲିଲା । ତେଣୁ ତାକୁ ସଂଶୋଧନ କରାଯାଇ ଅପରାଧୀ ପ୍ରତି କଠୋର ଦଣ୍ଡବିଧାନ ଉପରେ ଗୁରୁତ୍ୱ ଆରୋପ କରାଯିବା ପରିବର୍ତ୍ତେ ଗ୍ରହଣୀୟ ଦଣ୍ଡର ବ୍ୟବସ୍ଥା ସହ ତା'ର ଚରିତ୍ର ସଂଶୋଧନ ଉପରେ ଗୁରୁତ୍ୱ ଦିଆଗଲା ।

ସମାଜର ସେବାକାରୀ ପୁଲିସ୍, କେବଳ ଆଇନ କାନୁନକୁ କାର୍ଯ୍ୟକାରୀ କରିଥାଏ । ଫଳରେ ସମାଜରେ ଶାନ୍ତି ଶୃଙ୍ଖଳା ରକ୍ଷା ଦିଗରେ ସହାୟତା ସୃଷ୍ଟି ହୁଏ । ଆଇନକୁ ସମ୍ମାନ ପ୍ରଦର୍ଶନ କରିବା ସମସ୍ତ ନାଗରିକଙ୍କ କର୍ତ୍ତବ୍ୟ । କିନ୍ତୁ ଦୁଃଖର ବିଷୟ ଏହି ଯେ, ଯେଉଁମାନଙ୍କ ପାଇଁ ଆଇନ ତିଆରି ହୋଇଛି, ସେମାନେ ଆଇନ ଭଙ୍ଗ କରି, ତାକୁ ଅବମାନନା କରନ୍ତି । ଏହାଦ୍ୱାରା ସମାଜର ପ୍ରଭୂତ କ୍ଷତି ଘଟିଥାଏ । ତେଣୁ ଆଇନ ଭଙ୍ଗ ହେଲେ ପ୍ରତ୍ୟେକ ନାଗରିକ ଯେପରି ଲଜ୍ଜାବୋଧ କରନ୍ତି ଏବଂ ଆଇନ ଭଙ୍ଗକାରୀଙ୍କ ବିରୁଦ୍ଧରେ ସାକ୍ଷ୍ୟ ପ୍ରମାଣ ଦେବାକୁ ଯେପରି କେହି କୁଣ୍ଠାବୋଧ ନକରନ୍ତି ସେଥିପାଇଁ ଜନମତ ଜାଗ୍ରତ ହେବା ବାଞ୍ଛନୀୟ । ଏହି ଲକ୍ଷ୍ୟ ପୂରଣ ନିମନ୍ତେ ସବୁ ସ୍ତରରେ ପ୍ରଗାଢ଼ ଉଦ୍ୟମ ଆବଶ୍ୟକ । ସମାଜକୁ ଏହି ଘୃଣ୍ୟ ଅପରାଧ ସବୁ ନିରାମୟ ଦିଗରେ ପୁଲିସ ସଦା ଜାଗ୍ରତ । ତେବେ ଏହି କାର୍ଯ୍ୟକ୍ରମକୁ ସଫଳ କରିବାରେ ପୁଲିସ ଜନସାଧାରଣଙ୍କ ସହଯୋଗ ଏକାନ୍ତ ଅପରିହାର୍ଯ୍ୟ । ଜନ ସହଯୋଗ ଫଳରେ ପୁଲିସର କାର୍ଯ୍ୟ ସୁଗମ ହୋଇ ଅପରାଧୀକୁ ତୁରନ୍ତ ଠାବ କରିବାରେ ଅଯଥା ସମୟ ନଷ୍ଟ କରିବାକୁ ପଡ଼ିନଥାଏ । ତୁରନ୍ତ ଅପରାଧକୁ ଠାବ କରାଯାଇ ଆବଶ୍ୟକ ଦଣ୍ଡ ସହିତ ଅପରାଧୀର ସଂସ୍କାର ନିମନ୍ତେ ପଦକ୍ଷେପ ନିଆଯିବା ଦ୍ୱାରା, ସମାଜରୁ ଏହି କଳଙ୍କ ଦୂର କରିବାରେ ଆମେ ସକ୍ଷମ ହୋଇପାରିବା ।

ସମାଜବିରୋଧୀ କାର୍ଯ୍ୟକଳାପ ଓ ବିଶୃଙ୍ଖଳାର ନିରାକରଣ କେବଳ ପୁଲିସ କର୍ମଚାରୀଙ୍କ ଉପରେ ନିର୍ଭର କରେନାହିଁ । ଏହା ସମ୍ଭବ ହୋଇପାରେ, ଯଦି ଜନସାଧାରଣ ସବୁ ଶ୍ରେଣୀର ଅପରାଧୀକୁ ଘୃଣା କରିବାର ମନୋଭାବକୁ ପରିବର୍ତ୍ତନ କରି, ତା'ର ଚରିତ୍ର ସଂସ୍କାର ଦିଗରେ ସହଯୋଗ କରନ୍ତି । ସମାଜରୁ ଅପରାଧ ରୂପକ ବିଶୃଙ୍ଖଳାକୁ ଦୂର କରିବାରେ ପୁଲିସ ସର୍ବଦା ସବୁ ଶ୍ରେଣୀର ନାଗରିକମାନଙ୍କ ସହଯୋଗ ଓ ସଦିଚ୍ଛା ଆବଶ୍ୟକ କରେ । ୧୯୩୬ ଏପ୍ରିଲ୍ ପହିଲା । ଉଭୟ ଓଡ଼ିଶା ରାଜ୍ୟ ଓ ପୁଲିସ ସଙ୍ଗଠନର ଜନ୍ମ ଦିନ । ସେହି ଦିନଠାରୁ ଆଜିଯାଏ ଓଡ଼ିଶା ରାଜ୍ୟର ପ୍ରଗତି ଘଟିଛି ଏବଂ ଓଡ଼ିଶା ପୁଲିସର ମଧ୍ୟ ଅଭିବୃଦ୍ଧି ଘଟି ଆସିଛି । ପୁଲିସ ଜନତାର ସେବକ ରୂପେ ସମାଜରେ ପ୍ରତିଷ୍ଠା ଲାଭ କରିପାରିଛି । ପୂର୍ବ ଔପନିବେଶବାଦର ପୁଲିସ ଢାଞ୍ଚା ଆଜି ବଦଳିଯାଇଛି । ବ୍ୟକ୍ତି ଆଜି ପ୍ରତି ବିପଦ ଆପଦ ବେଳେ ପୁଲିସକୁ ମନେ ପକାଇଥାଏ । ଏପରିକି ନିବିଡ଼ ଅନ୍ଧକାର ରାତିରେ ଏକାକୀ ଯାତାୟତ କରିବାରେ ମଣିଷର ଆଉ ଭୟ ନଥାଏ । କାରଣ ସେ ଜାଣେ ନିଶ୍ଚୁପ ରାତିରେ ପୁଲିସ ତା'ର ଧନ ଜୀବନ ରକ୍ଷା ଲାଗି ଜାଗ୍ରତ ପ୍ରହରୀ ରୂପେ କାର୍ଯ୍ୟରତ । ଚୋର, ଡକାୟତ ଦାଉରୁ ତାକୁ ନିଶ୍ଚୟ ରକ୍ଷା ମିଳିବ, ଏହି ବିଶ୍ୱାସ ତାର ଥାଏ । ସମାଜର ସୁରକ୍ଷା ପାଇଁ ଆଇନ କାନୁନକୁ କାର୍ଯ୍ୟକାରୀ କରିବା ପାଇଁ ପୁଲିସକୁ କ୍ଷମତା ଦିଆଯାଇଥିବା ମଧ୍ୟ ମଣିଷ ଜାଣେ । ସେହି ଆଇନ୍ କାନୁନକୁ କାର୍ଯ୍ୟକାରୀ କରିବା ଦ୍ୱାରା, ତା'ର ନିଜର ତଥା ସମାଜର ସୁରକ୍ଷା ହେଉଥିବା ସେ ମଧ୍ୟ ବୁଝେ । ତଥାପି ଏଇ ମଣିଷ ଘଟାଏ ବିଭିନ୍ନ ଅପରାଧ, ଅଶାନ୍ତି ଓ ସମାଜବିରୋଧୀ କାର୍ଯ୍ୟ । ଯେଉଁ ମଣିଷ ତାର ନିମ୍ନ ଚେତନାରେ ବାସ କରି ପଶୁତୁଲ୍ୟ ନିଜକୁ ବ୍ୟକ୍ତ କରେ, ସେହି ଏହି ସବୁ କୁକାଣ୍ଡ ଘଟାଇବାରେ ଆନନ୍ଦ ପାଇଥାଏ । ସୁଖର ସନ୍ଧାନ କରିବାକୁ ଯାଇ ମଣିଷ ଦୁଃଖକୁ ଆବୋରି ଆଣେ, ଏହିପରି ଅଘଟଣ ଘଟାଇ । ସେ ବୁଝିପାରେନି କାହାପାଇଁ ତା'ର ଏହି କୁକର୍ମ । ଯାହାପାଇଁ ଅବା ସେ ଏହି କୁକର୍ମ କରିବସେ, ସେ ସେହି ଦୋଷ ପାଇଁ କେତେଦୂର ଭାଗୀଦାର । ପ୍ରତିହିଂସା ପରାୟଣ ହୋଇଉଠେ ସେ ସମାଜ ପ୍ରତି ଓ ଆଇନ୍ ପ୍ରତି । ସେତିକି ବେଳେ ସେ ନିଜର କୁକର୍ମ ପାଇଁ ଦଣ୍ଡ ଭୋଗ କରେ । ମନେ ମନେ ଭାବେ ଏହି ଭଳି ଚୋରୀ, ଲୁଣ୍ଠନ, ଦଙ୍ଗା ଇତ୍ୟାଦି ଅସାମାଜିକ କାର୍ଯ୍ୟରେ ସେ କେବଳ ଲିପ୍ତ ? ଆଉ ଜଗତରେ କେହି ନୁହନ୍ତି ? ତା'ଠାରୁ ଯେଉଁମାନେ ଆଜି ଉପର ସ୍ତରରେ ଅଛନ୍ତି, ସେମାନେ କ'ଣ ପୁରା ମାପିରେ ନିଷ୍କଳଙ୍କ ! ସେ ଗରିବ, ବେକାର । ଖାଇବାକୁ ନପାଇ ଆଜି ଚୋର ସାଜିଛି । ସମାଜ ଆଖିରେ ସେ ଅବଶ୍ୟ ଘୃଣ୍ୟ । କିନ୍ତୁ ଯେଉଁମାନେ ତାରିଠାରୁ ଉପରେ ରହି ବିଭିନ୍ନ ମାର୍ଗରେ ଚୋରୀ କରନ୍ତି ଅଥଚ ଧରାପଡ଼ନ୍ତି ନାହିଁ, ସେମାନେ କ'ଣ ସମାଜର ଉପକାର କରନ୍ତି ? ସେମାନଙ୍କ ପାଇଁ କିଛି ଆଇନ ନାହିଁ ? ସେମାନେ ସମାଜରେ ବିଶୃଙ୍ଖଳା ସୃଷ୍ଟି ପାଇଁ କ'ଣ ଦାୟୀ ନୁହନ୍ତି ? ଏହିପରି କେତେ ପ୍ରଶ୍ନ ତା'ରି ମନରେ ଉଙ୍କିମାରେ । ବିଦ୍ରୋହୀ ମନ ଆହୁରି ଅପରାଧ ଘଟାଇ ବସେ ସମାଜ ମଧ୍ୟରେ । ତାରି ଦୃଷ୍ଟିରେ ସମାଜରେ ସମସ୍ତେ କଳଙ୍କିତ । ତେଣୁ ସେ ଅଭାବରେ ପଡ଼ି ଯାହା କିଛି କରିଛି ସେ କିଛି ନୁହେଁ ବୋଲି ମନେକରେ । କେବଳ ଗରିବ ବୋଲି ସେ ଆଜି ଆଇନ ଦ୍ୱାରା ଧରାପଡ଼ିଛି । କିନ୍ତୁ ଯେ ଏହି ସୃଷ୍ଟି କରିଛି, ସେ ତ ନିଶ୍ଚୟ ସବୁ ଦେଖୁଥିବ । ସେ ଯେଉଁ ଉଦ୍ଦେଶ୍ୟରେ ମଣିଷକୁ ଏହି ଜଗତକୁ ପଠାଇଛି, ତା'ରି ଅସଲ ଉଦ୍ଦେଶ୍ୟ ସାଧିତ ହେଉଛି କି ନାହିଁ, ସେ ତ ନିଶ୍ଚୟ ହିସାବ କରୁଥିବେ ।

ବାସ୍ତବିକ୍ ମଣିଷ ନିଜକୁ ନିରୀକ୍ଷଣ କଲେ ନିଶ୍ଚୟ ବୁଝିପାରେ ଯେ, ନିଜର ଘରେ, ବାହାରେ, ସମାଜରେ, ସରକାରୀ ଓ ବେସରକାରୀ ସଂସ୍ଥାମାନଙ୍କରେ ଯେଉଁଠି, ସେ କାର୍ଯ୍ୟରତ, ସେଠାରେ ସେ ସମ୍ପୂର୍ଣ୍ଣ ଭାବେ ଅପରାଧମୁକ୍ତ କି ନୁହଁ ? ତେବେ ସବୁ କ୍ଷେତ୍ରରେ ଯଦି ଅନୀତି, ଦୁର୍ନୀତି, ଅପରାଧ ଇତ୍ୟାଦି ଅସାମାଜିକ କାର୍ଯ୍ୟ ପରିପୂର୍ଣ୍ଣ । ସେ କ୍ଷେତ୍ରରେ କେବଳ ପୁଲିସ ତାକୁ ନିରାକରଣ କରି, ବ୍ୟକ୍ତି ଓ ସମାଜକୁ ସୁରକ୍ଷା ପ୍ରଦାନ କରିବା କେତେ କ'ଣ ସମ୍ଭବ ବିଚାର୍ଯ୍ୟ ।

ସମାଜବିରୋଧୀ କାର୍ଯ୍ୟକଳାପର ନିରାକରଣ ନିମନ୍ତେ ପ୍ରଶାସନ କ୍ଷେତ୍ରରେ ବହୁବିଧ ପଦକ୍ଷେପ ନିଆଯାଉ । ଅନୁଧ୍ୟାନ କରାଯାଇ, ବିଭିନ୍ନ ଯୋଜନା ପ୍ରଣୟନ କରାଯାଇ ଅପରାଧୀର ଚରିତ୍ର ପରିବର୍ତ୍ତନ ପାଇଁ ଉଦ୍ୟମ ଅବ୍ୟାହତ ରହିଛି । ତଥାପି ଏତେ ଅଶାନ୍ତିର କାରଣ କେବଳ ମାନବ ସଚେତନତାର ଅଭାବ ଓ ମଣିଷ ଜନ୍ମର ଉଦ୍ଦେଶ୍ୟ ସମ୍ପର୍କରେ ଆମରି ଉଦାସୀନତା ଥିବା ମନେହୁଏ । ମଣିଷ ଜନ୍ମର ଉଦ୍ଦେଶ୍ୟ କେବଳ ଏହି ପୃଥିବୀ ରଙ୍ଗମଞ୍ଚ ଉପରେ ଅଭିନୟ କରି, ନିଜକୁ ନିଜେ ଠକିବା ନୁହଁ । ପ୍ରକୃତିକୁ ସୁନ୍ଦର ସରସ କରି ଗଢ଼ିବା ନିମନ୍ତେ ସୃଷ୍ଟିକର୍ତ୍ତାଙ୍କର ଯେଉଁ ଉଦ୍ଦେଶ୍ୟ ଏବଂ ସେଥିନିମନ୍ତେ ଯେଉଁ ବିବର୍ତ୍ତନର ଧାରା କାର୍ଯ୍ୟ କରୁଛି, ତାକୁ ତ୍ୱରାନ୍ୱିତ କରିବାରେ କେତେଦୂର ମଣିଷ ନିଜକୁ ସାମିଲ କରିପାରୁଛି, ତା'ର ସମୀକ୍ଷା ଆଜିର ଆହ୍ୱାନ । ଏହି ଆହ୍ୱାନ ପ୍ରତି ମଣିଷ ସଚେତନ ହେଲେ ସମାଜବିରୋଧୀ କାର୍ଯ୍ୟକଳାପର ବିଲୋପ ସାଧନ ସମ୍ଭବପର ହୋଇପାରିବ ।

# "ଅଙ୍ଗେ ମୋହରି ନିତ୍ୟ ପଡୁ ହେ ବାପୁଜୀ ତୁମର ଚରଣ ଧୂଳି"

ଡକ୍ଟର ଅମୂଲ୍ୟ ମହାପାତ୍ର

ଏହି ଜାତିର ଜନକ ଓ ଦାର୍ଶନିକ ପୂଜ୍ୟ ମହାତ୍ମା ଗାନ୍ଧୀ ଆଜି ସମଗ୍ର ପୃଥିବୀରେ ଅମର ହୋଇ ରହିଛନ୍ତି । ଭାରତ ପ୍ରତି ତାଙ୍କର ଯେଉଁ ଅମୂଲ୍ୟ ଅବଦାନ ଓ ନୂତନ ଦିଗ୍‌ଦର୍ଶନ ତାହା ଚିରଦିନ ପାଇଁ ଆମର ମନେ ରହିଥିବ । ତାଙ୍କର ଜୀବନ ଦର୍ଶନ ତଥା ନୀତି ଉପରେ ପର୍ଯ୍ୟବେଶିତ ହୋଇ ଭାରତର ସମାଜବାଦ ତିଷ୍ଠି ରହିଛି । ଗାନ୍ଧିଜୀଙ୍କର ଦର୍ଶନ ମୁଖ୍ୟତଃ ଆଧ୍ୟାତ୍ମିକ ଭିତ୍ତି ଭୂମିରେ ପ୍ରତିଷ୍ଠିତ । ତାଙ୍କର ଦର୍ଶନ ମଧ୍ୟରେ ବ୍ୟକ୍ତି ଜୀବନର ଆଦର୍ଶ ଭାବନା, ମହତ୍ ଚିନ୍ତା, ସତ୍ କର୍ମ ଓ ମହାନ୍ ଚରିତ୍ର ବିଶେଷ ପରିଲକ୍ଷିତ ହୋଇଥାଏ । ଯାହାକୁ ମହାତ୍ମା ଗାନ୍ଧୀ ତିନିଗୋଟି ମାଙ୍କଡ଼ ମାଧ୍ୟମରେ ଦର୍ଶାଇଛନ୍ତି । ପ୍ରଥମ ମାଙ୍କଡ଼ଟି ତା'ର ଦୁଇଟି ଆଖି ବନ୍ଦ କରିଛି, ତାହା ମାନବ ସମାଜକୁ ସୂଚନା ଦିଏ ଯେ କୌଣସି ଖରାପ ଜିନିଷ ଦେଖ ନାହିଁ । ଦ୍ୱିତୀୟ ମାଙ୍କଡ଼ଟି ମୁହଁରେ ହାତ ଦେଇଥିବାର ଅର୍ଥ ହେଉଛି ଖରାପ କଥା କେବେହେଲେ କୁହ ନାହିଁ । ତୃତୀୟ ମାଙ୍କଡ଼ କାନ ବନ୍ଦ କରି ରହିଛି, ତାହାର ଅର୍ଥ ହେଲା ଖରାପ କଥା ଶୁଣ ନାହିଁ । ଏଠାରେ ମହାତ୍ମା ଗାନ୍ଧୀ ସମାଜର ସଂସ୍କାର ଓ ପରିବର୍ତ୍ତନ ପାଇଁ ବ୍ୟକ୍ତିଗତ ପ୍ରଚେଷ୍ଟା ଓ ଆଦର୍ଶ ବ୍ୟକ୍ତିତ୍ୱ ଉପରେ ଅଧିକ ଗୁରୁତ୍ୱ ଆରୋପ କରିଛନ୍ତି । ଆମେ ନିଜେ ଯେ ପର୍ଯ୍ୟନ୍ତ ଆଦର୍ଶବାନ୍ ବ୍ୟକ୍ତି ଭାବରେ ନିଜକୁ ଗଠନ ନକରୁଛୁ, ସେ ପର୍ଯ୍ୟନ୍ତ ସମାଜକୁ ଆଦର୍ଶ ପଥରେ ପରିଚାଳିତ କରିପାରିବୁ ନାହିଁ ।

ଗାନ୍ଧିଜୀଙ୍କର ଦର୍ଶନରେ ଜୀବ ବ୍ରହ୍ମ ସ୍ୱରୂପ । ଈଶ୍ୱର ଏହି ସୃଷ୍ଟିର ମୂଳ କାରଣ । ସେହି ଈଶ୍ୱର ହେଉଛନ୍ତି ସତ୍ୟ, ଶିବ, ସୁନ୍ଦର ଓ ସତ୍, ଚିତ୍, ଆନନ୍ଦର ଉତ୍ସ । ଜୀବାତ୍ମା ମଧ୍ୟ ତାହାର ସାଧନା ଫଳରେ ଏହି ସମସ୍ତ ଦିବ୍ୟ ଗୁଣର ଅଧିକାରୀ ହୋଇପାରିବ । ଏଥି ନିମନ୍ତେ ଆଧ୍ୟାତ୍ମିକ ମାର୍ଗ ଏକାନ୍ତ ଅପରିହାର୍ଯ୍ୟ । ଏହି ଆଧ୍ୟାତ୍ମିକ ପଥରେ ଗତି କରିବାକୁ ହେଲେ ଈଶ୍ୱରଙ୍କ ଉପରେ ଦୃଢ଼ ବିଶ୍ୱାସ ଓ ଆତ୍ମନିବେଦନ ବା ସମର୍ପଣ ଭାବ ଏକାନ୍ତ ଆବଶ୍ୟକ । ଏହାବ୍ୟତୀତ ବ୍ରହ୍ମଚର୍ଯ୍ୟ, ଆତ୍ମସଂଯମ, ଓ ଅହିଂସା ଆଚରଣ ଉପରେ ମହାତ୍ମା ଗାନ୍ଧୀ ବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି ।

## ଅନନ୍ୟ ଅହିଂସା ମାର୍ଗ

ମହାତ୍ମା ଗାନ୍ଧୀ ତାଙ୍କ ଜୀବନରେ ଏ ସମସ୍ତଙ୍କୁ ଅବଲମ୍ବନ କ ଅଭୂତପୂର୍ବ ଅହିଂସା ପଥରେ ଭାରତକୁ ସ୍ୱାଧୀନ କରିପାରିଥିଲେ ସେ ଏକାଧାରରେ ରାଜନୈତିକ ଓ ଆଧ୍ୟାତ୍ମିକ ମାର୍ଗର ସମନ୍ୱ କରି କାର୍ଯ୍ୟ କରୁଥିଲେ । ସେ କହୁଥିଲେ ପ୍ରତ୍ୟେକ ବ୍ୟକ୍ତିର ମା ଯଦି ଉତ୍ତମ ହୋଇଥାଏ, ତା'ହେଲେ ତାର ଲକ୍ଷ୍ୟ ସାଧ ହୋଇପାରିବ । ତେଣୁ ସେ କହିଯାଇଛନ୍ତି, ମୁଁ ଯଦି ସାଗ ଅତିକ୍ରାନ୍ତ କରିବାକୁ ଚାହିଁବି, ମୋତେ ପୋତର ଆଶ୍ରୟ ନେବ ପଡ଼ିବ । କିନ୍ତୁ ସେଥିପାଇଁ ମୁଁ ଯଦି ଗୋଟିଏ ଶକଟ ବ୍ୟବହା କରେ, ତା'ହେଲେ ଶକଟ ଓ ମୁଁ ଉଭୟେ ରସାତଳ ହିଁ ଦେଖିବୁ ତେଣୁ ଉତ୍ତମ ଲକ୍ଷ୍ୟ ସାଧନ ନିମିତ୍ତ ଉତ୍ତମ ପନ୍ଥାର ଅବଲମ୍ବ ଅପରିହାର୍ଯ୍ୟ ।

ସତ୍ୟ ଓ ଅହିଂସା ଥିଲା ତାଙ୍କର ରାଜନୈତିକ ଜୀବନର ଦୁଇ ମହାନ୍ ଅସ୍ତ୍ର । ସେ ତାଙ୍କର କର୍ମମୟ ଜୀବନରେ ଅହିଂସା ସହି ସର୍ବୋଦୟ, ସ୍ୱରାଜ୍ୟ, ସ୍ୱଧର୍ମ ଓ ସତ୍ୟର ସମନ୍ୱ କରିଥିଲେ ।

ମହାତ୍ମା ଗାନ୍ଧୀ ଅତି ସରଳ ଓ ସାଧାରଣ ଜୀବନ ଯାପ କରୁଥିଲେ । ସତ୍ୟ ଓ ଅହିଂସା ତାଙ୍କ ଜୀବନର ମହାନ୍ ଅ ଥିଲା । ଜୀବ ପ୍ରତି ଦୟା କରିବା ତାଙ୍କ ଜୀବନର ଏକ ମ ଥିଲା । ତାଙ୍କର ଦର୍ଶନ ଥିଲା ମାନବବାଦ — ସମାଜବାଦ ସେ ସୁସ୍ଥ ଗଣତାନ୍ତ୍ରିକ ଶାସନ ମାଧ୍ୟମରେ ମାନବର କଲ୍ୟା ନିମନ୍ତେ ରାମ ରାଜ୍ୟର କଳ୍ପନା କରିଥିଲେ । ତାଙ୍କ ସମାଜବାଦର ପ୍ରଥମ ସୋପାନ ହେଲା ଆତ୍ମ ବିଶ୍ଳେଷଣ ସମାଜବାଦର ଅର୍ଥ ଭିନ୍ନ ଭିନ୍ନ ରାଷ୍ଟ୍ରରେ ପୃଥକ୍ ପୃଥକ୍ ହୋଇଥି ମଧ୍ୟ ଏହାର ମୂଳ ଲକ୍ଷ୍ୟ ସମାଜର କଲ୍ୟାଣ ସାଧନ ।

## ଆଦର୍ଶର ତ୍ରିବେଣୀ ସଙ୍ଗମ

ଭାରତର ସମାଜବାଦ ମହାତ୍ମା ଗାନ୍ଧୀ, ପଣ୍ଡିତ ଜବାହରଲା ନେହେରୁ ଓ ଶ୍ରୀ ଜୟପ୍ରକାଶ ନାରାୟଣଙ୍କର ସ୍ୱପ୍ନକୁ ସାକାର କରି

ଅଭିପ୍ରାୟରେ ରୂପାୟିତ ହେଉଛି । ଗାନ୍ଧୀଙ୍କର ସମାଜବାଦ, ଅହିଂସା, ସତ୍ୟ, ଧର୍ମ ଓ ସେବା ଉପରେ ପ୍ରତିଷ୍ଠିତ । ଗାନ୍ଧୀଙ୍କ ସମାଜବାଦରେ ମୌଳିକ କର୍ତ୍ତବ୍ୟ ଓ ଧର୍ମ ନିରପେକ୍ଷତା ଅଧିକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିଛି । ତାଙ୍କର ସମାଜବାଦର ମୂଳ ଉତ୍ସ ହେଉଛି ମାନବିକତା, ଭାତୃଭାବ, ଧର୍ମ ନିରପେକ୍ଷ ଓ ଅହିଂସା ।

ଆମର ପ୍ରିୟ ଜନ୍ମଭୂମି ଭାରତ ହେଉଛି ଏକ ସାର୍ବଭୌମ, ଗଣତାନ୍ତ୍ରିକ, ଧର୍ମ ନିରପେକ୍ଷ, ସମାଜବାଦୀ ସାଧାରଣତନ୍ତ୍ର । ଆମ ଦେଶର ଜନକ ହେଉଛନ୍ତି ମହାତ୍ମା ଗାନ୍ଧୀ । ଆମ ସମ୍ବିଧାନ ଆମ ସମସ୍ତଙ୍କ ପାଇଁ ସମାନ ଅଧିକାର ପ୍ରଦାନ କରିଛି । ସେଥିରେ ଉଲ୍ଲିଖିତ ହୋଇଛି ନାଗରିକଙ୍କର ମୌଳିକ ଅଧିକାର ଓ କର୍ତ୍ତବ୍ୟ । ଆମର ପବିତ୍ର କର୍ତ୍ତବ୍ୟ ହେଉଛି ଭାରତର ସଂହତି, ସଂସ୍କୃତି, ଏକତା, ଅଖଣ୍ଡତା ଓ ସାର୍ବଭୌମତାକୁ ବଜାଏ ରଖି ଦେଶର ଉନ୍ନତି ପାଇଁ ସାହାଯ୍ୟ କରିବା । ମହାତ୍ମା ଗାନ୍ଧୀଙ୍କର ଭାରତ ଗଠନରେ ଯେଉଁ ଅଭିଳାଷ ତାହା ଥିଲା ଶାନ୍ତି ରକ୍ଷା ଓ ପରସ୍ପର ମଧ୍ୟରେ ସଦ୍ଭାବ ପ୍ରତିଷ୍ଠା । ସେ କହୁଥିଲେ :

"ମୁଁ ଏଭଳି ଏକ ଭାରତ ଗଢ଼ିବାକୁ ଚାହେଁ, ଯେଉଁଠି ଜନସାଧାରଣଙ୍କ ମଧ୍ୟରେ ଉଚ୍ଚ ନୀଚ ଭେଦଭାବ ନଥିବ ଓ ଦେଶର ସବୁ ସମ୍ପ୍ରଦାୟର ଲୋକେ ପରସ୍ପର ମଧ୍ୟରେ ଶାନ୍ତି ଓ ସଦ୍ଭାବ ରଖି ଜୀବନ ଯାପନ କରିବା ସଙ୍ଗେ ସଙ୍ଗେ ଦେଶର ଦରିଦ୍ରତମ ଲୋକ ମଧ୍ୟ ଉପଲବ୍ଧି କରିବ ଯେ ଏଇ ଦେଶ ହେଉଛି ତାହାରି ଏବଂ ଏହି ଦେଶ ଗଠନରେ ତା'ର ବି ସକ୍ରିୟ ଅବଦାନ ରହିଛି ।"

ଗାନ୍ଧିଜୀଙ୍କର ଚାରିଗୋଟି ମହାବାକ୍ୟ ରହିଛି । ପ୍ରଥମ ମହାବାକ୍ୟ "ଆମେ ସମସ୍ତେ ଭାଇ ଭାଇ ଓ ସମୂହ କଲ୍ୟାଣ ହେଉଛି ଆମ ଜୀବନର ଲକ୍ଷ୍ୟ ।" ଦ୍ୱିତୀୟ ମହାବାକ୍ୟ "ଏହି ପୃଥିବୀ ଯେ ଏକ ଓ ଅଭିନ୍ନ ଏହା ପ୍ରତ୍ୟେକଙ୍କର ମନ ଓ ହୃଦୟରେ ସ୍ଥାନ ପାଇବା ଆବଶ୍ୟକ ।" ତୃତୀୟ ମହାବାକ୍ୟ "ଯେ ପର୍ଯ୍ୟନ୍ତ ଆନନ୍ଦ ସମସ୍ତଙ୍କ ଦ୍ୱାରା ଗ୍ରହଣଯୋଗ୍ୟ ନହୋଇଛି, ସେ ପର୍ଯ୍ୟନ୍ତ ତାହା ଆମର ହୋଇନପାରେ ।"

## ସେବାର ଭାରତୀୟ ଐତିହ୍ୟ

ମହାତ୍ମା ଗାନ୍ଧୀ ଭାବୁଥିଲେ "ମାନବ ସେବା ହିଁ ପ୍ରକୃତରେ ସର୍ବୋତ୍ତମ ପୂଜା । ସେହି ସେବାରେ ତ୍ରୁଟି ହେଲେ ଆମେ ପାପ କରିଥାଉଁ । ସାମାଜିକ ଅନ୍ୟାୟ ମୁଖ୍ୟତଃ ନୀତିହୀନ ରାଜନୀତି, କାର୍ଯ୍ୟ ବିହୀନ ଅର୍ଥ, ଚରିତ୍ର ବିହୀନ ଜ୍ଞାନ, ନୈତିକତା ବିହୀନ ବାଣିଜ୍ୟ, ମାନବିକତା ବିହୀନ ବିଜ୍ଞାନ ଓ ବିବେକବିହୀନ ଆନନ୍ଦ ଦ୍ୱାରା ବୃଦ୍ଧି ପାଇଥାଏ ।" ତେଣୁ ସମସ୍ତ ମହତ୍ କର୍ମ ସମ୍ପାଦନ ପାଇଁ ପ୍ରତ୍ୟେକ ବ୍ୟକ୍ତିର ଆଚାର, ବିଚାର, ବିବେକ ଓ ବୈରାଗ୍ୟର ବିଶେଷ ଆବଶ୍ୟକତା ରହିଅଛି ।

ମହାତ୍ମା ଗାନ୍ଧୀଙ୍କର ସର୍ବୋଦୟ ହେଉଛି ସମାଜବାଦର ଏକ ଆଦର୍ଶ । ସେହି ସର୍ବୋଦୟରେ ସମସ୍ତଙ୍କର ସମାନ ଅଧିକାର ରହିଛି । ସେ ସ୍ୱରାଜ ଓ ସମାଜବାଦ ସମ୍ବନ୍ଧରେ କହୁଥିଲେ :

"ମୋର — ମୋର ଏକା କାହିଁକି — ଆମ ସମସ୍ତଙ୍କ ସ୍ୱପ୍ନର ସ୍ୱରାଜରେ ଜାତି କିମ୍ବା ଧର୍ମଗତ ଭେଦଭାବ ରହିବ ନାହିଁ । ଏହା ଶିକ୍ଷିତ କିମ୍ବା ଧନୀ ବ୍ୟକ୍ତିମାନଙ୍କର ଏକଚାଟିଆ ଅଧିକାର ହୋଇ ରହିବ ନାହିଁ । ସ୍ୱରାଜ ସମସ୍ତଙ୍କର । ଏଥିରେ କୃଷକ, ଧନୀ, ନିର୍ଦ୍ଧନ, ଅନ୍ଧ ଓ କୋଟି କୋଟି ଭୋକିଲା ଲୋକଙ୍କର ସ୍ଥାନ ରହିଛି ।"

ମହାତ୍ମା ଗାନ୍ଧୀ ତାଙ୍କର ସର୍ବୋଦୟ ଓ ସ୍ୱରାଜରେ ହରିଜନ ଓ ଆଦିବାସୀ ଲୋକମାନଙ୍କ ଅବସ୍ଥାର କିପରି ପରିବର୍ତ୍ତନ ଘଟିବ ସେଥିପ୍ରତି ବିଶେଷ ଧ୍ୟାନ ଦେଉଥିଲେ । ସମାଜରେ ପତିତ ଓ ଅବହେଳିତ ଶ୍ରେଣୀର ଲୋକଙ୍କର ଉନ୍ନତି ନହେଲେ ଶାନ୍ତି ପ୍ରତିଷ୍ଠା ହୋଇପାରିବ ନାହିଁ । ତେଣୁ ବ୍ୟକ୍ତିର ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ସମୂହ ସ୍ୱାର୍ଥ କିପରି ସମାଧାନ ହୋଇପାରିବ ସେଥିନିମନ୍ତେ ଜନସାଧାରଣଙ୍କୁ ଆହ୍ୱାନ ଦେଉଥିଲେ ।

ତାଙ୍କର ସେହି ସମାଜବାଦ ରୂପକ ସର୍ବୋଦୟ ସଫଳ ନହେବାରୁ ଆଜି ମଧ୍ୟ ଆମ ଦେଶରେ ଅନ୍ୟାୟ, ଅତ୍ୟାଚାର, ଅସାଧୁତା, ଦୁର୍ନୀତି ଓ ହିଂସା ବଢ଼ିଛି । ତେଣୁ ଆଜି ମହାତ୍ମା ଗାନ୍ଧୀଙ୍କର ମହାନ୍ ମାନବିକ ଦର୍ଶନ ଓ ସର୍ବୋଦୟକୁ ବିଶ୍ଳେଷଣ କରି ଗ୍ରହଣ କରିବାର ସମୟ ଆସିଛି ।

---

ଦର୍ଶନ ଅଧ୍ୟାପକ,
ଡିଃ ଏଃ ଭିଃ କଲେଜ,
କୋରାପୁଟ—୭୬୪୦୨୦ ।



# ଉତ୍କଳୀୟ ଚେତନା ଓ ଭାରତୀୟ ଜାତୀୟତା

ଡଃ ଅତୁଲଚନ୍ଦ୍ର ପ୍ରଧାନ

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ, ବିଶେଷତଃ ନଅଙ୍କ ଦୁର୍ଭିକ୍ଷ ପରେ, ଶିକ୍ଷାର ପ୍ରସାର ଏବଂ ପତ୍ର ପତ୍ରିକାର ପ୍ରକାଶନ ଫଳରେ ଓଡ଼ିଶାରେ ସାମାଜିକ ଓ ରାଜନୈତିକ ଚେତନା ବିକାଶ ଲାଭ କରିଥିଲା । ଓଡ଼ିଆ ଭାଷା ଓ ସଂସ୍କୃତିର ଉନ୍ନତି ସାଧନ ତଥା ଅବହେଳିତ ଓଡ଼ିଆ ଜାତିର ଅଭ୍ୟୁଦୟ ଏହି ଚେତନାର ମୁଖ୍ୟ ଥିଲା । ଏହା ତତ୍କାଳୀନ ପତ୍ରିକା ଯେଥା–ଉତ୍କଳ ଦୀପିକା, ଉତ୍କଳ ପୁତ୍ର, ଉତ୍କଳ ଦର୍ପଣ, ଉତ୍କଳ ପ୍ରଭା, ଉତ୍କଳ ହିତୈଷିଣୀ, ଉତ୍କଳ ମଧୁପ ଏବଂ ଉତ୍କଳ ସାହିତ୍ୟ ଏବଂ ସଭା ସମିତି ଯେଥା–ଉତ୍କଳ ଭାଷା ଉନ୍ନତି ବିଧାୟିନୀ ସଭା, ଉତ୍କଳ ଭାଷୋଦ୍ଦୀପନୀ ସମାଜ, ଉତ୍କଳ ହିତୈଷିଣୀ ସଭା, ଉତ୍କଳ ଉତ୍ସାହିନି ସଭା ଓ ଉତ୍କଳ ସଭାର ନାମ କରଣ ଏବଂ କାର୍ଯ୍ୟକଳାପରୁ ପ୍ରତିତ ହୁଏ । ଊନବିଂଶ ଶତାବ୍ଦୀର ସପ୍ତମ ଦଶନ୍ଧିର ଶେଷପାଦ଼କୁ କେତେ ଜଣ ବଙ୍ଗୀୟ ବୁଦ୍ଧିଜୀବୀଙ୍କ ଦ୍ୱାରା ଓଡ଼ିଆ ଭାଷାର ଉଚ୍ଛେଦ ସାଧନ ଉଦ୍ୟମ ପରୋକ୍ଷଭାବରେ ଉତ୍କଳୀୟ ଚେତନାର ବିକାଶକୁ ତ୍ୱରାନ୍ୱିତ କରିଥିଲା । କିନ୍ତୁ ଅବହେଳିତ ଓଡ଼ିଶାର ବିଭିନ୍ନ ସମସ୍ୟାସତ୍ତ୍ୱେ ଓଡ଼ିଶାର ଚେତନାଶୀଳ ବୁଦ୍ଧିଜୀବୀମାନେ ଜାତୀୟ ସମସ୍ୟା ଓ ଚେତନା ସହିତ ନିଜକୁ ସଂପୃକ୍ତ କରି ରଖିଥିଲେ । ୧୮୮୨ ମସିହାରେ କଟକରେ ଉତ୍କଳ ସଭା ଗଠିତ ହୋଇଥିଲା । ସ୍ଥାନୀୟ ସ୍ୱାୟତ୍ତ ଶାସନ ବ୍ୟବସ୍ଥାର ପ୍ରଚଳନ ଏବଂ ସାମୂହିକ କଲ୍ୟାଣ ସାଧନ ଏହି ଅନୁଷ୍ଠାନର ଆଭିମୁଖ୍ୟ ଥିଲା । ଏହି ଅନୁଷ୍ଠାନ ପକ୍ଷରୁ ସ୍ଥାନୀୟ ସ୍ୱାୟତ୍ତ ଶାସନ ବ୍ୟବସ୍ଥା ପ୍ରଚଳନ, ଇଲବର୍ଟ ବିଲ୍ ଏବଂ ବିଧାନ ପରିଷଦରେ ପ୍ରତିନିଧିତ୍ୱ ଇତ୍ୟାଦି ଜାତୀୟ ସମସ୍ୟା ଉପରେ ଆଲୋଚନାମାନ କରାଯାଉଥିଲା । ଉତ୍କଳ ସଭା ଓଡ଼ିଶାର ନିଜସ୍ୱ ସମସ୍ୟା ଯଥା ଓଡ଼ିଶାରେ ରେଳପଥ ନିର୍ମାଣ ଏବଂ ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳମାନଙ୍କର ଏକତ୍ରୀକରଣ ଉପରେ ବିଶେଷ ଧ୍ୟାନ ଦେଉଥିଲା ।

୧୮୮୫ ମସିହା ଡିସେମ୍ବର ମାସରେ ଭାରତୀୟ ଜାତୀୟ କଂଗ୍ରେସର ପ୍ରଥମ ଅଧିବେଶନ ବମ୍ବେଠାରେ ଅନୁଷ୍ଠିତ ହୋଇଥିଲା । ୧୮୮୬ ମସିହା ମାର୍ଚ୍ଚ ୩ ତାରିଖରେ କଟକ ପ୍ରିଣ୍ଟିଂ କମ୍ପାନୀ ହଲପରୁ ଅନୁଷ୍ଠିତ ଏକ ସାଧାରଣ ସଭାରେ ବମ୍ବେଠାରେ ଜାତୀୟ କଂଗ୍ରେସ ଦ୍ୱାରା ଗୃହୀତ ପ୍ରସ୍ତାବଗୁଡ଼ିକ ପ୍ରତି ସମର୍ଥନ ଜଣାଇ କରାଯାଇଥିଲା । ତହରେ ମଧୁସୂଦନ ଦାସ, ଗୌରୀ ଶଙ୍କର ରାୟ ପ୍ରମୁଖ ବୁଦ୍ଧିଜୀବୀମାନେ କଂଗ୍ରେସର ବିଭିନ୍ନ ବାର୍ଷିକ ଅଧିବେଶନରେ ଯୋଗ ଦେଇଥିଲେ । ମଧୁସୂଦନ ୧୮ମସିହାରେ ମାନ୍ଦ୍ରାଜ କଂଗ୍ରେସ ଅଧିବେଶନରୁ ଫେରିଲା ପରେ କଟକରେ ଏକ ସାଧାରଣ ସଭାରେ ଭାଷଣ ଦେଇଥିଲେ । ଏ ଭାଷଣରେ ସେ ଓଡ଼ିଶାର ଉନ୍ନତି ପାଇଁ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ସମଗ୍ର ଭାରତର କଲ୍ୟାଣ ପାଇଁ ଧ୍ୟାନଦେବା ପାଇଁ ଲୋକମାନଙ୍କୁ ଆହ୍ୱାନ ଦେଇଥିଲେ । ମଧୁସୂଦନ ଓଡ଼ିଶାରେ ଜାତୀୟତାବାଦୀ ଚିନ୍ତାଧାରାର ଅଗ୍ରଦୂତ ରୂପେ କାର୍ଯ୍ୟ କରିଥିଲେ। ଓଡ଼ିଶାରଲୋକମାନଙ୍କୁ ସଂକୀର୍ଣ୍ଣ ସ୍ୱାର୍ଥପର ଚିନ୍ତାଧାରାର ଊର୍ଦ୍ଧ୍ୱକୁ ଉଠିବା ପାଇଁ ଆହ୍ୱାନ ଦେଇ ସେ ଲେଖିଥିଲେ :

ଜାତି ପ୍ରେମ ବହ୍ନି ପ୍ରଜ୍ୱଳିତ କର
ସ୍ୱାର୍ଥକୁ ଦିଅ ଆହୁତି ।

କିନ୍ତୁ ଓଡ଼ିଆ ଅଞ୍ଚଳମାନଙ୍କର ଏକତ୍ରୀକରଣ ଏବଂ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ସାଧନ ତାଙ୍କ ଜୀବନର ମୁଖ୍ୟ ବ୍ରତ ଥିଲା। ଓଡ଼ିଶାରଉନ୍ନତି ସାଧିତ ହେଲେ ତାହା ଜାତୀୟ ଉନ୍ନତି କ୍ଷେତ୍ରରେ ସହାୟକ ହେବ ବୋଲି ସେ ଭାବୁଥିଲେ । ଜାତୀୟ କଂଗ୍ରେସ ମଞ୍ଚରେ ଓଡ଼ିଆ ଅଞ୍ଚଳମାନଙ୍କର ଏକତ୍ରୀକରଣ ପ୍ରଶ୍ନକୁ ଉତ୍ଥାପନ କରିବା ପାଇଁ ମଧୁସୂଦନ ଉଦ୍ୟମ କରିଥିଲେ । ଏହି ଉଦ୍ୟମ ବିଫଳ ହେବାରୁ ସେ ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀ ଗଠନ କରିଥିଲେ । ଓଡ଼ିଶାର ନିଜସ୍ୱ ସମସ୍ୟା ସମାଧାନ ବିଶେଷ ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳମାନଙ୍କର ଏକତ୍ରୀକରଣ ପାଇଁ ଉତ୍କଳ ସମ୍ମିଳନୀ ଗଠିତ ହୋଇଥିଲେ ହେଁ ଏହା ଜାତୀୟ ମୁଖ୍ୟ ସ୍ରୋତ ପରିପନ୍ଥୀ ନ ଥିଲା । ପ୍ରତିବର୍ଷ ଉତ୍କଳ ସମ୍ମିଳନୀ ଅଧିବେଶନ ପ୍ରାରମ୍ଭରେ ରାଧାନାଥ ରାୟଙ୍କ ଦ୍ୱାରା ନିମ୍ନଲିଖିତ ଜାତୀୟତାବାଦୀ ସଙ୍ଗୀତକୁ ଗାନ କରାଯାଉଥିଲା :

ସର୍ବଦେଶାଂଶେନୋ ଜନନୀ ଭାରତ ଧରଣୀ କଲ୍ପଲତେୟମ୍
ଜନନୀ ବତ୍ସଳ ତନୟ ଗଣୈଶ୍ଚିତ – ସମ୍ୟକ୍ ଗଣ
ବିଧେୟମ୍ ।
ହିମଗିରି – ସୀମନ୍ତିତ – ମନ୍ତ୍ରକମିଦ – ମମ୍ବୁଧି
ପରିଗତ ପାର୍ଶ୍ୱମ୍ ।
ଅସ୍ମଜନ୍ମଜନନନ୍ଦନମନିଶଂ ଶ୍ରୋତ ପ୍ରଭାତନ ମାର୍ଶମ୍ ।

ବିଜନିତ ହର୍ଷଂ ଭାରତବର୍ଷଂ ବିଶ୍ୱୋତ୍କର୍ଷନିନାଦମ୍ ।
ଭାରତଶକ୍ତି କୃତମସ୍ମାଭି – ନବମିଦମୈକ୍ୟ
ବିଧାନମ୍ ।
ଉତ୍କଳ ଗୌଡୀନ୍ଦ୍ରୀୟାଃ ସଂସଦି ଯେ ବୟମତ୍ର
ସମେତାଃ ।
ଏତେ ସ୍ୱପରଜନପଦକା ତନ୍ନ ଭାରତ ବିହିତ –
ନିକେତାଃ ॥
ଭାରତହିତ ସମ୍ପାଦନମେବ ହି କାର୍ଯ୍ୟମିତୀମ
ବିପାକମ୍ ।
ଭାରତବର୍ଜ୍ୟଂ କିମପି ନ କାର୍ଯ୍ୟ ନିଶ୍ଚିତ
ମିତ୍ୟସ୍ମାକମ୍ ॥
ଭାରତ ପଙ୍କଜ ଦଳମିଦମୁତ୍କଳ – ମଣ୍ଡଳମିତି
ବିଦିତଂ ଯତ୍ ।
ତସ୍ୟ କୃତେ ବୟମତ୍ର ସମେତା ବିହିତାପୋତ୍କଳ –
ସଂସଦ୍ ॥
ଭାରତମେକା ଗତିରସ୍ମାକଂ ନାପରାଃକ୍ଷି ଭୁବିନାମ ।
ସର୍ବାଦୌ ପରିଷଦ୍ – କର୍ମଣି ତତ୍ ଭାରତମେବ
ନମାମଃ ॥

(ଅର୍ଥାତ୍ ଭାରତ–ଧରିତ୍ରୀ ଆମମାନଙ୍କର ଇଚ୍ଛା ପୂରଣକାରିଣୀ ଜନନୀ । ତାହାର ଆଦରର ସନ୍ତାନ ହିସାବରେ ଶକ୍ତି ଅନୁସାରେ ତାର କଲ୍ୟାଣ ପାଇଁ କାର୍ଯ୍ୟ କରିବା ଆମମାନଙ୍କର କର୍ତ୍ତବ୍ୟ । ହିମାଳୟ ପର୍ବତ ତାର ମସ୍ତକକୁ ମଣ୍ଡନ କରୁଅଛି ଏବଂ ସାଗର ତାର ପାଶ୍ୱଦେଶକୁ ଧୌତ କରୁଛି । ବେଦ ଓ ଋଷି ମୁନିଙ୍କର ପୁରାତନ ଏହି ଦେଶ ଆମମାନଙ୍କୁ ଜନ୍ମ ଦେଇଛି ତଥା ଲାଳନପାଳନ କରୁଛି । ଯେଉଁ ଦେଶ ହର୍ଷରେ ଭରପୁର ଏବଂ ବିଶ୍ୱରେ ସବୁ ଉତ୍କର୍ଷର ମୂଳ ସେହି ଭାରତର କଲ୍ୟାଣ ପାଇଁ ଆମେମାନେ ଏଠାରେ ଏକତ୍ର ହୋଇଛୁ । ଓଡ଼ିଆ, ବଙ୍ଗାଳୀ, ତେଲୁଗୁ ଏବଂ ଅନ୍ୟାନ୍ୟ ପ୍ରଦେଶରୁ ଯେଉଁ ବ୍ୟକ୍ତିମାନେ ଏଠାରେ ସମ୍ମିଳିତ ହୋଇଛନ୍ତି ସମସ୍ତଙ୍କ ଆବାସସ୍ଥଳୀ ଭାରତବର୍ଷ । ଭାରତର ହିତ ସମ୍ପାଦନ ଆମମାନଙ୍କର ଜୀବନର ପ୍ରିୟ କର୍ତ୍ତବ୍ୟ । ଭାରତର ହିତ ସହିତ ଅସଂଲଗ୍ନ କୌଣସି କାର୍ଯ୍ୟ ନକରିବା ପାଇଁ ଆମେମାନେ ଏଠାରେ ଶପଥ ନେଉଛୁ । ଉତ୍କଳ ଭାରତ – ପଦ୍ମର ପାଖୁଡ଼ା । ଭାରତ ହିଁ ଆମମାନଙ୍କର ଏକମାତ୍ର ଆଶ୍ରୟ । ତେଣୁ ସମ୍ମିଳନୀ କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ଆମେମାନେ ଭାରତମାତାଙ୍କୁ ପ୍ରଣାମ କରୁଛୁ ।)

ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ୧୯୨୦ ମସିହାଠାରୁ କଂଗ୍ରେସ ଆନ୍ଦୋଳନ ଏକ ଗଣ ଆନ୍ଦୋଳନର ରୂପ ଧାରଣ କରିଥିଲା । ଓଡ଼ିଶାରେ ଗୋପବନ୍ଧୁ ଦାଶ ଗାନ୍ଧୀବାଦୀ ଆନ୍ଦୋଳନର ଅଗ୍ରଦୂତ ଭାବେ କାର୍ଯ୍ୟ କରିଥିଲେ । ଗୋପବନ୍ଧୁ ଛାତ୍ରାବସ୍ଥାରୁ ଉତ୍କଳ ସମ୍ମିଳନୀ ସହିତ ସମ୍ପୃକ୍ତ ଥିଲେ । ୧୯୧୯ମସିହା ଏପ୍ରିଲ୍ ମାସରେ କଟକରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ଚତୁର୍ଦ୍ଦଶ ଅଧିବେଶନରେ ସେ ସଭାପତି ଆସନ ଅଳଙ୍କୃତ କରିଥିଲେ । ଏହି ସମ୍ମିଳନୀରେ ଭାଷଣ ପ୍ରସଙ୍ଗରେ ସେ କହିଥିଲେ :

"ଉଦାର ମାନବିକତା ସମ୍ମିଳନୀର ଲକ୍ଷ୍ୟ ହେଲେ ଭାରତର ଜାତୀୟ ଆନ୍ଦୋଳନରୁ ଆମେମାନେ ପୃଥକ୍ ହୋଇ ରହିଲେ ଚଳିବ ନାହିଁ । ଓଡ଼ିଶା ନଦୀବନ ପର୍ବତାଦି ପ୍ରାକୃତିକ ଅବଚ୍ଛେଦ ଦ୍ୱାରା ଭାରତର ଅନ୍ୟାନ୍ୟ ପ୍ରଦେଶରୁ ବିଚ୍ଛିନ୍ନ ଥିଲା ପରି ବୋଧ ହେଲେ ମଧ୍ୟ ଏହା ଅନ୍ୟାନ୍ୟ ପ୍ରଦେଶ ପରି ବିଶାଳ ଭାରତର ଅଙ୍ଗ ବିଶେଷ । ଭାରତୀୟ ଆକାଂକ୍ଷା ସଙ୍ଗେ ଉତ୍କଳ ଆକାଂକ୍ଷାର ସାମଞ୍ଜସ୍ୟ ରହିବା ଉଚିତ । ଭାରତ ସଙ୍ଗେ ଉତ୍କଳର ନିତ୍ୟ ସମ୍ପର୍କ ରହିବ ହିଁ ରହିବ । ଏହି ସମ୍ପର୍କ ଚିର ଦିନ ରହିଛି । ସମ୍ମିଳନୀ କାର୍ଯ୍ୟରେ ଭାରତୀୟ ଆନ୍ଦୋଳନରୁ ପୃଥକ୍ ଥିଲେ ମଧ୍ୟ ମହାଭାରତ ଜାତୀୟତା ସହିତ ଏହାର ସଂଯୋଗ ମୂଳ ମନ୍ତ୍ର ।"

ଗୋପବନ୍ଧୁ ୧୯୧୬ରେ ଲକ୍ଷ୍ନୌଠାରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନରେ ଯୋଗ ଦେଇଥିଲେ । ପ୍ରଥମ ବିଶ୍ୱ ଯୁଦ୍ଧ ପରେ ଦେଶରେ ଅଭୂତ ପୂର୍ବ ଜାତୀୟ ଜାଗରଣ ଦେଖାଦେଲା । ଏତିକିବେଳେ ଉତ୍କଳ ସମ୍ମିଳନୀକୁ ମୁଖ୍ୟ ଜାତୀୟ ସ୍ରୋତ ଅର୍ଥାତ୍ ଜାତୀୟ କଂଗ୍ରେସରେ ସାମିଲ କରିବାକୁ ସେ ଉଦ୍ୟମ ଆରମ୍ଭ କରିଥିଲେ । ୧୯୨୦ ମସିହାରେ ନାଗପୁର ଅଧିବେଶନରେ ଭାଷାଭିତ୍ତିରେ ସ୍ୱତନ୍ତ୍ର ଓଡ଼ିଶା ପ୍ରାଦେଶିକ କଂଗ୍ରେସର ଗଠନ ପାଇଁ ନିଷ୍ପତ୍ତି ଗୃହୀତ ହୋଇଥିଲା । ଏହି ପରିପ୍ରେକ୍ଷୀରେ ଏହି ଅଧିବେଶନର ଠିକ୍ ପରେ ଚକ୍ରଧରପୁରଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ଅଧିବେଶନ ଜାତୀୟ କଂଗ୍ରେସର ଆଭିମୁଖ୍ୟକୁ ଗ୍ରହଣ କଲା । ଚକ୍ରଧରପୁର ସମ୍ମିଳନୀ ପରେ ବହୁ ଲୋକେ ଉତ୍କଳ ସମ୍ମିଳନୀ ଛାଡ଼ି କଂଗ୍ରେସରେ ଯୋଗ ଦେଲେ ଏବଂ ଉତ୍କଳ ସମ୍ମିଳନୀ ରାଜାରାଜୁଡ଼ା, ଜମିଦାର ଏବଂ ସରକାର ଅନୁଗତ ଲୋକମାନଙ୍କର ଅନୁଷ୍ଠାନ ହୋଇ ରହିଲା ।

ଚକ୍ରଧରପୁର ଅଧିବେଶନ ପରେ କଂଗ୍ରେସ ଅଧିକ ଜନ ସମର୍ଥନ ଲାଭ କଲା ଏବଂ ଗଣ ଅନୁଷ୍ଠାନରେ ପରିଣତ ହେଲା । କିନ୍ତୁ ଉତ୍କଳ ସମ୍ମିଳନୀ ତିଷ୍ଠି ରହିଲା । ଓଡ଼ିଶାର ଲୋକେ ସ୍ୱରାଜ ପ୍ରାପ୍ତି ଏବଂ ସ୍ୱତନ୍ତ୍ର ଓଡ଼ିଶା ଗଠନ (ଦେଶ ମିଶ୍ରଣ) ଉଭୟ ଲକ୍ଷ୍ୟ ଏକ ସଙ୍ଗେ ହାସଲ କରିବାକୁ ଆଶାୟୀ ଥିଲେ । ୧୯୩୬ ମସିହା ଏପ୍ରିଲ୍ ମାସ ପହିଲାରୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା । ୧୯୩୭ ମସିହା ଆରମ୍ଭରେ ପ୍ରାଦେଶିକ ବିଧାନ ସଭା ପାଇଁ ନିର୍ବାଚନ ଅନୁଷ୍ଠିତ ହୋଇଥିଲା । ଏହି ନିର୍ବାଚନରେ ଜାତୀୟ କଂଗ୍ରେସ ଓଡ଼ିଶାରେ ବିପୁଳ ଜନ ସମର୍ଥନ ଲାଭ କରିଥିଲା । ଧନୀ ରାଜାରାଜୁଡ଼ା ଓ ଜମିଦାରମାନେ ଅର୍ଥ ବଳ ସତ୍ତ୍ୱେ କଂଗ୍ରେସକୁ ପରାସ୍ତ କରିପାରି ନଥିଲେ । ୫୬ଟି ନିର୍ବାଚିତ ଆସନରୁ ୩୬ଟି ଆସନ ପାଇଁ କଂଗ୍ରେସ ପ୍ରାର୍ଥୀ ଛିଡ଼ା କରିଥିଲା ଏବଂ ସେମାନଙ୍କ ମଧ୍ୟରୁ ୩୬ ଜଣ ନିର୍ବାଚନରେ ବିଜୟୀ ହୋଇଥିଲେ । ଏଥିରୁ ଓଡ଼ିଶାରେ ଜାତୀୟ କଂଗ୍ରେସ୍ ଓ ଜାତୀୟତାବାଦର ମୂଳଦୁଆ କିପରି ସୁଦୃଢ଼ ଥିଲା ତାହା ପ୍ରମାଣିତ ହୁଏ । ବାସ୍ତବ ଦୃଷ୍ଟିରୁ ବିଚାର କଲେ ଉତ୍କଳୀୟ ଚେତନା ଓ ଭାରତୀୟ ଜାତୀୟତା ପରସ୍ପର ପରିପନ୍ଥୀ ନୁହନ୍ତି, ବରଂ ଉଭୟର ପରିପୂରକ । ଉଭୟ ଚେତନାର ମୂଳ ଉଦ୍ଦେଶ୍ୟ ଉଦାର ମାନବିକତା, ଭାରତୀୟ ସଂହତି ଓ ସମଦୃଷ୍ଟି ପ୍ରତିଷ୍ଠା କରିବା ।

---

ପ୍ରାଧ୍ୟାପକ,
ଇତିହାସ ବିଭାଗ,
ଉତ୍କଳ ବିଶ୍ୱବିଦ୍ୟାଳୟ,
ବାଣୀବିହାର, ଭୁବନେଶ୍ୱର ।

# ସଫଳ କାହାଣୀ

## ମଜୁରୀଆରୁ ହଲର୍ ମାଲିକ

କଳାହାଣ୍ଡି ଜିଲ୍ଲାର କର୍ଲାମୁଣ୍ଡା ବ୍ଲକ୍ ଅନ୍ତର୍ଗତ ସରଗୁଲମାଲପଡ଼ା ଗ୍ରାମ । ଏହି ଗ୍ରାମଟି ଜିଲ୍ଲା ସଦର ମହକୁମାଠାରୁ କେସିଙ୍ଗା ବାଟ ଦେଇ ୬୫ କି: ମି: ଏବଂ ମଦନପୁର– ରାମପୁର ରିସିଡ଼ା ବାଟ ଦେଇ ୯୮ କି: ମି: ଦୂରରେ ଅବସ୍ଥିତ । ୧୯୮୭ ମସିହାଠାରୁ ଉକ୍ତ ଗ୍ରାମର ୩୬ ବର୍ଷ ବୟସ୍କ ଯୁବକ ଶ୍ରୀ ରଣଜିତ୍ ସାହୁ ବାସ କରୁଛନ୍ତି । ଜନ୍ମସ୍ଥାନ ତାଙ୍କର ଖାରମୁଣ୍ଡା । ସେଠାରେ ତାଙ୍କର ବାପା, ମା' ଓ ସାନ ଭାଇ ରହନ୍ତି । ବାପାଙ୍କର ୫ ଏକର ସ୍ୱତ୍ତ୍ୱ ଜମି । ବାପ ଶ୍ରୀ ବିଶ୍ୱମ୍ବର ସାହୁ ବଡ଼ ପୁଅ ରଣଜିତକୁ ବିବାହ କରିଦେଲେ ବଲାଙ୍ଗୀର ଜିଲ୍ଲା ଅନ୍ତର୍ଗତ ଘଣ୍ଟେଶ୍ୱରୀ ଗ୍ରାମରେ । ରଣଜିତ୍ ୫ମ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଛନ୍ତି ତେଣୁ ବଡ଼ ଚାକିରି କରିବାର ଆଶାଛାଡ଼ି କୌଣସି ବ୍ୟବସାୟ କରିବାକୁ ମନସ୍ଥ କଲେ । ନିଜେ ସ୍ୱାବଲମ୍ବୀ ହେବା ପାଇଁ ଉପାୟ ଚିନ୍ତାକଲେ । ଶେଷରେ ଶ୍ୱଶୁର ଘରକୁ ଯାଇ ସେଠାରେ ଏକ ଚୁଡ଼ାମିଲ୍‌ରେ ମଜୁରୀଆ ଭାବରେ କାମକଲେ ଏବଂ ଟ୍ରେନିଂମଧ୍ୟ ପାଇବାର ସୁଯୋଗ ହେଲେ । ପ୍ରଥମେ ମାସିକ ୨୦୦ ଟଙ୍କାରେ ମଜୁରୀ କାମ ଆରମ୍ଭ କଲେ । ତାଙ୍କ କାମରେ ଖୁସିହୋଇ ଚୁଡ଼ାମିଲ୍ ମାଲିକ କ୍ରମଶଃ ମଜୁରୀ ହାର ବଢ଼ାଇଲେ । ଏପରି କ୍ରମାନ୍ୱୟରେ ସେ ଉକ୍ତ ମିଲ୍‌ରେ ୩ବର୍ଷ ଖଟିଲେ ତା ସହିତ ଅଭିଜ୍ଞତା ମଧ୍ୟରେ ଲାଭ କଲେ । ଶେଷ ଆଡ଼କୁ ମାଲିକ ତାଙ୍କୁ ୩୦୦ ଟଙ୍କା ଦେବାକୁ ଆରମ୍ଭ କରିଥିଲେ । ଏହି ସମୟ ମଧ୍ୟରେ ଯୁବକ ରଣଜିତ୍ ମିଲ୍‌ର ଯାବତୀୟ ମରାମତି କାମ ଏବଂ ଯନ୍ତ୍ରପାତି ବିଷୟରେ ସମ୍ପୂର୍ଣ୍ଣ ଧାରଣା କରି ନେଇଥିଲେ । ତେଣୁ ସେ ମନସ୍ଥ କଲେଯେ ସେ ମଧ୍ୟ ଏକ ହଲର ଓ ଚୁଡ଼ାମିଲ୍ ନିଜର ସ୍ଥାପନ କରିବେ । ନିଜ ସ୍ତ୍ରୀଙ୍କ ସହ ଆଲୋଚନା କରି ସେ ଏକ ହଲର ଓ ଚୁଡ଼ାମିଲ୍ ବସାଇବାର ବ୍ୟବସ୍ଥାରେ ଲାଗି ପଡ଼ିଲେ ।

ନିଜର ମନୋଭାବକୁ ବାପା ବିଶ୍ୱମ୍ବର ସାହୁଙ୍କୁ ଜଣାଇ ନିଜର ଭାଗ ୧ ଏକର ସ୍ୱତ୍ତ୍ୱ ଜମିକୁ ୧୯୮୭ ମସିହା ସେ ୭,୦୦୦ ଟଙ୍କାରେ ବିକ୍ରି କରିଥିଲେ । ସେହିବର୍ଷ ଜାନୁଆରୀ ମାସରେ ଜିଲ୍ଲା ଶିଳ୍ପ କେନ୍ଦ୍ର ତାଙ୍କର ପତ୍ର ସଂଖ୍ୟା– ୨୫୮୫/୮୬/୮୭, ତା୩୧–୧–୧୯୮୭ରିଖ ଅନୁସାରେ ଏଗ୍ରିମେଣ୍ଟ ଇତ୍ୟାଦି କ... ଦରଖାସ୍ତ ସୁପାରିଶ କଲେ । ଲାଇସେନ୍‌ସ ପାଇଁ ଏହି ଦରଖା... ଭୁବନେଶ୍ୱରକୁ ସୁପାରିଶ ସହ ପଠାଗଲା । ଲାଇସେନ୍‌ସ କରି... ଭୁବନେଶ୍ୱର ଯିବା ଆସିବା ଇତ୍ୟାଦି ଅନ୍ୟାନ୍ୟ ବାବଦରେ ତା... ପ୍ରାୟ ୪,୦୦୦ ଟଙ୍କା ବ୍ୟୟ କରିବାକୁ ହୋଇଥିଲା । ମି... ବସାଇବାକୁ ସେ ତା୮–୭–୧୯୮୭ରିଖ... ସରଗୁଲମାଲପଡ଼ାଠାରେ ୨,୦୦୦ ଟଙ୍କାରେ ୬୦.୨୦ ଡ଼େସିମି... ଜମୁ କିଣିଲେ । ଶ୍ରୀ ସାହୁଙ୍କର ତା୩୧–୩–୧୯୮୭ରି... ଦରଖାସ୍ତକୁ ବିଚାରକୁ ନେଇ **Orissa State Financi... Corporation Cuttack** ତା୧୬–୪–୧୯୮୭ରିଖ... ଧାର୍ଯ୍ୟ କଲେ ଯେ ମିଲ୍ ସ୍ଥାପନ ପାଇଁ ଶ୍ରୀ ସାହୁ ୧,୦୫,୦୦୦ ଟ... ଋଣ ପାଇବାକୁ ଯୋଗ୍ୟ ଅଟନ୍ତି । ତେଣୁ ସବୁ ହିସାବକୁ ନେ... ୧,୦୨,୮୦୦ ଟଙ୍କାର ଋଣ ତାଙ୍କ ପାଇଁ ମଞ୍ଜୁରୀ କରାଗଲା... ସେଥିରୁ ୨୮,୯୦୦ ଟଙ୍କାର ଶିଳ୍ପ ପାଇଁ ଗୃହନିର୍ମାଣ, ୬୧,୬୦... ଟଙ୍କାର ଯନ୍ତ୍ରପାତି କିଣା ଖର୍ଚ୍ଚ, ୬,୨୦୦ ଟଙ୍କାର ବିଦ୍ୟୁତ୍ ସଂଯୋ... ଓ ଯନ୍ତ୍ରପାତି ସ୍ଥାପନ ଖର୍ଚ୍ଚ ଏବଂ ୬,୧୦୦ ଟଙ୍କା ଅନ୍ୟାନ୍ୟ ଖ... ବାବଦକୁ ହିସାବ ହେଲା । ଏଥିରେ ତାଙ୍କୁ ଶତକଡ଼ା ୧୨ %... ହାରରେ ସୁଧ ଏବଂ କିସ୍ତି ଖିଲାପ କଲେ ଅଧିକା ଶତକଡ଼ା ୨ ସୁ... ଦେବାକୁ ଧାର୍ଯ୍ୟ ହେଲା । ବର୍ଷକୁ ଦୁଇ କିସ୍ତି ଜୁନ୍ ଏବଂ ଡିସେମ୍ବ... ମାସରେ ଋଣ ପରିଶୋଧ ପାଇଁ ଧାର୍ଯ୍ୟ ହେଲା । ସମୁଦାୟ ୧... ଗୋଟି କିସ୍ତିରେ ୮ ବର୍ଷରେ ଋଣ ପରିଶୋଧ ପାଇଁ ସମୟ ଧା... କରାଗଲା । ଋଣ ମଞ୍ଜୁରୀ ହେଲା ପରେ ସେ କର୍ଲାମୁଣ୍ଡା ଏ... ବ୍ୟାଙ୍କ୍ ଶାଖାରୁ ଋଣ ପରିମାଣ ଉଠାଇଲେ ଏବଂ କାର୍ଯ୍ୟ ଆର... କଲେ । ତାଙ୍କୁ ପ୍ରଥମ କିସ୍ତି ତା୧୬–୪–୧୯୮୯ରିଖ ସୁ... ୬,୯୧୬ ଟଙ୍କା ଏବଂ ୨ୟ କିସ୍ତି ତା୧୬–୧୦–୧୯୮୯ରିଖଠା... ଆରମ୍ଭ ହୋଇ ୬,୯୦୬ ଟଙ୍କା କରି ପ୍ରତ୍ୟେକ କି... ତା୧୬–୪–୧୯୯୬ରିଖ ସୁଦ୍ଧା ପରିଶୋଧ କରିବାକୁ ଲକ୍ଷ୍ୟ ରଖ... ଯାଇଛି । ଶ୍ରୀ ସାହୁ ନିଜର ଉଦ୍ୟମରେ ସ୍ଥଉଲ ଏବଂ ଚୁଡ଼ାମି... ସ୍ଥାପନ କରିପାରିଛନ୍ତି । ଏ ମଧ୍ୟରେ ୧୦ ଡେସିମିଲ୍ ସ୍ୱତ୍ତ୍ୱଜମି ନି... ମିଲ୍ ପାଖରେ କିଣି ସ୍ୱତ୍ତ୍ୱ କରୁଛନ୍ତି । ନିଜର ଏକ ଭଲ ପକ୍କାଘ... କରି ପାରିଛନ୍ତି । ସେ ଉକ୍ତ ମିଲ୍‌ରେ ନିଜେ ପରିଶ୍ରମ କରିବା ସହି...

୫ ଜଣ ମୂଲିଆଙ୍କୁ କାମରେ ନିଯୁକ୍ତି ଦେଇ ପାରିଛନ୍ତି । ମଜୁରୀ ବାବଦକୁ ମାସିକ ୧,୫୦୦ ଟଙ୍କା ସେ ଦେଉଥାନ୍ତି ।
ମାସକୁ ହାରାହାରି ୭,୦୦୦ ଟଙ୍କା ସେ ରୋଜଗାର କରି ପାରୁଥିବା ପ୍ରକାଶ କରିଛନ୍ତି । ଏହି ସମୟ ମଧ୍ୟରେ ସେ କଳାହାଣ୍ଡି ବ୍ୟାଙ୍କରେ ୧୭,୦୦୦ ଟଙ୍କା ଋଣ ପରିଶୋଧ କରିଥିବା ଜଣାଯାଏ । ଦୁଇଗୋଟି ଦୁଧିଆଳି ଗାଈ ୨,୦୦୦ ଟଙ୍କାରେ କିଣି ତହିଁରୁ ମଧ୍ୟ ସେ ଲାଭବାନ ହେଉଥିବା ସ୍ୱୀକାର କରିଛନ୍ତି ।

ତାଙ୍କ ପରିବାରରେ ସ୍ୱାମୀ ସ୍ତ୍ରୀଙ୍କ ସହ ୧୩ ବର୍ଷର ଝିଅ ପଞ୍ଚମ ଶ୍ରେଣୀରେ ପାଠ ପଢୁଛି । ୧୧ବର୍ଷର ପୁଅ ଚତୁର୍ଥ ଶ୍ରେଣୀରେ ଛାତ୍ର ଏବଂ ୧୦ ବର୍ଷର ପୁଅ ୩ୟ ଶ୍ରେଣୀର ଛାତ୍ର । ଏହାପରେ ସେ ପରିବାର କଲ୍ୟାଣ ଅସ୍ତ୍ରୋପଚାର ମଧ୍ୟ କରିସାରିଛନ୍ତି । ନିଜ ଉଦ୍ୟମ ଓ କର୍ମନିଷ୍ଠାଫଳରେ ସେ ଆଜି ମଜୁରୀଆରୁ ହଳର ମାଲିକ ହୋଇ ପାରିଥିବାରୁ ତାଙ୍କ ଆଦର୍ଶ ଅନ୍ୟ ଯୁବକମାନଙ୍କ ପାଇଁ ନିଶ୍ଚିତ ଭାବରେ ପ୍ରେରଣା ଯୋଗାଇବ । ଏହା ଯେ କେହି ସ୍ୱୀକାର କରିବେ ।

ଶ୍ରୀ ଈଶ୍ୱର ପ୍ରସାଦ ସିଂହ,
ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ,
କଳାହାଣ୍ଡି ।

## ବୀରସ୍ୱାମୀଙ୍କ ସଫଳତା

ଗୁଣୁପୁର ପଞ୍ଚାୟତ ସମିତି ଅନ୍ତର୍ଗତ ଗାଦିଆଖାଲା ଗ୍ରାମପଞ୍ଚାୟତରେ ଶ୍ରୀ ବୀରସ୍ୱାମୀଙ୍କ ଘର । ଘରେ ବୁଢ଼ୀମା ଭଉଣୀ, ସ୍ତ୍ରୀ ଓ ପୁଅକୁ ନେଇ ତାଙ୍କ ସଂସାର । ଭାରି ଅଭାବୀ ଲୋକ । ବହୁ ଦୁଃଖ କଷ୍ଟରେ ପରିବାର ପ୍ରତିପାଳନ କରିବାକୁ ହୁଏ । ତେବେ ସବୁ ଅଭାବ ଅସୁବିଧା ସତ୍ତ୍ୱେ ବୀରସ୍ୱାମୀ ଭାଙ୍ଗି ନପଡ଼ି ଅହରହ ଅକ୍ଳାନ୍ତ ପରିଶ୍ରମ କରନ୍ତି । ତେବେ, ସବୁ ପରିସ୍ଥିତିରେ ସମୟ ସହିତ ତାଳ ଦେଇ ଚାଲିବାର ମଣିଷ ସେ । ଏ ଦୁନିଆରେ ପୁଞ୍ଜିବିନା କୌଣସି ବ୍ୟବସାୟର ଭିତ୍ତିପ୍ରସ୍ତର ସ୍ଥାପନ ହୁଏନି । ବୀରସ୍ୱାମୀବା କରନ୍ତି କଣ ? ତେବେ ସମୟ ସବୁଦିନେ ସମାନ ଭାବରେ ଗତି କରେନା । ଅଭାବୀ ବୀରସ୍ୱାମୀଙ୍କର ଏହି ଅସମୟରେ ସରକାରଙ୍କ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନା ସାହାଯ୍ୟ ମନରେ ସାହସ ସଞ୍ଚାର କଲା ଯାହାକି ଆଜି ତାଙ୍କ ପରିବାର ବର୍ଗଙ୍କୁ ଜୀବନ୍ୟାସ ଦେଇଗଲା । ଏକ ସେଲୁନ୍ କରିବା ପାଇଁ ୩,୦୦୦ଟଙ୍କା ଋଣ ଆକାରରେ ତାଙ୍କୁ ଦିଆଗଲା । କାରଣ ବୀରସ୍ୱାମୀ କୌଳିକ ବୃତ୍ତି ନିମନ୍ତେ ପନ୍ଥା ଖୋଜୁଥିଲେ । ସେହି ଛୋଟ ସେଲୁନରୁ ବୀରସ୍ୱାମୀ ଯାହା ରୋଜଗାର କରନ୍ତି ସେଥିରେ ନିଜ ପରିବାର ପ୍ରତିପାଳନ ସହିତ ସରକାରଙ୍କଠାରୁ ନେଇଥିବା ଋଣ ପରିଶୋଧ କରିପାରୁଛନ୍ତି । ୨ୟ କିସ୍ତିରେ ୫,୦୦୦ ଟଙ୍କା ଋଣ ପାଇଛନ୍ତି । ଶ୍ରୀ ବୀରସ୍ୱାମୀ ଏବେ ଋଣ ସବୁ ପରିଶୋଧ କରିବା ସଙ୍ଗେ ସଙ୍ଗେ ପରିବାର ପ୍ରତି ତାଙ୍କ ଉପରେ ନ୍ୟସ୍ତ ଥିବା ସମସ୍ତ ଦାୟିତ୍ୱ ତୁଲାଇ ପାରିଛନ୍ତି । ଶ୍ରୀ ବୀରସ୍ୱାମୀ ସରକାରଙ୍କ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନାକୁ ନିଜର ସଫଳତା ପାଇଁ ବଧେଇ ଜଣେଇଛନ୍ତି ।

ଉପଖଣ୍ଡ ସୂଚନା ଓ ଲୋକ ସମ୍ପର୍କ
ଅଧିକାରୀ, ଗୁଣୁପୁର ।

## ବ୍ରୁକ୍ଷ ପ୍ରଧାନଙ୍କ ସଫଳ ଉଦ୍ୟମ

କଳାହାଣ୍ଡି ଜିଲ୍ଲାର ମଦନପୁର-ରାମପୁର ବ୍ଲକ୍ ଅନ୍ତର୍ଗତ ଏବଂ ମୋହନଗିରି ଗ୍ରାମ ପଞ୍ଚାୟତ ମଧ୍ୟରେ ଅବସ୍ଥିତ "ସିଙ୍ଗପୁର" ଏକ ବଣ ପାହାଡ଼ ଘେରା ଗ୍ରାମ । ଗ୍ରାମଟି ଜିଲ୍ଲା ସଦର ମହକୁମା ଭବାନୀପାଟଣାଠାରୁ ୮୫ କି: ମି: ଦୂରରେ ଏବଂ ମୋହନଗିରିଠାରୁ ୪ କି: ମି: ଦୂରରେ ଅବସ୍ଥିତ । ଉକ୍ତ ଗ୍ରାମରେ ବ୍ରୁକ୍ଷ ପ୍ରଧାନ ନାମକ ୩୫ ବର୍ଷର ଯୁବକ ବାସ କରନ୍ତି । ଗ୍ରାମର ଥିବା ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ କିଞ୍ଚିତ ଶିକ୍ଷାଲାଭ କରିଛନ୍ତି । ଘରେ ତାଙ୍କର ଅନ୍ୟ ଭାଇ ଏବଂ କୁଟୁମ୍ବକୁ ମିଶାଇ ୧୨ ଜଣ ଏକା ଅନ୍ନରେ ଚଳନ୍ତି । ତାଙ୍କର ୩ ଏକର ଚାଷ ଜମି ଏବଂ ୧.୦୯ ଏକର ବାରି ଜମି । ଚାଷ ଜମିରେ ଧାନ ଚାଷ କରିଥାନ୍ତି ଏବଂ ତହିଁରୁ ଉତ୍ପାଦିତ ଧାନ ଫସଲରୁ ଖାଇବା ଖର୍ଚ୍ଚ ସହିତ ଅନ୍ୟାନ୍ୟ ଖର୍ଚ୍ଚ ତୁଲାଇବାରେ ଭାରି କଷ୍ଟ ହେଉଥିଲା । ତା'ସାଙ୍ଗକୁ ବାରମ୍ବାର ମରୁଡ଼ିର କଶାଘାତରେ ଆର୍ଥିକ ଅବସ୍ଥା ଶୋଚନୀୟ ହୋଇ ରହୁଥିଲା । କିଞ୍ଚିତ ଅଧିକ ଅର୍ଥ ଉପାର୍ଜନ କରି ପରିବାର ଖର୍ଚ୍ଚ ଭରଣା କରିବାକୁ ଘର ବାରିରେ ପୂର୍ବରୁ ଚଳି ଆସୁଥିବା ଟେଣ୍ଡା ସାହାଯ୍ୟରେ କୁଅରୁ ପାଣି ଉଠାଇ ବାଇଗଣ ପାତାଳଘଣ୍ଟା ପ୍ରଭୃତି ପନିପରିବା ଚାଷ କରି ଆସୁଥିଲେ । ଏ ଉଦ୍ୟମରେ ବର୍ଷକୁ ହାରାହାରି ୫,୦୦୦ ଟଙ୍କା ବା ପରିବାର ପ୍ରତିପୋଷଣରେ ବାହାରି ପଡୁଥିଲା । ଉତ୍ପାଦିତ ପନିପରିବାକୁ ନିଜର ଗ୍ରାମ ମଧ୍ୟରେ, ନିକଟବର୍ତ୍ତୀ ଗ୍ରାମମାନଙ୍କରେ ଏବଂ ମୋହନଗିରି ସପ୍ତାହିକ ହାଟରେ ସେ ବିକ୍ରି କରି ଆସୁଥିଲେ । ମରୁଡ଼ି ପରିସ୍ଥିତିକୁ ଅନୁଧ୍ୟାନ କରି ଭାରତ ସରକାରଙ୍କ ସହାୟତାରେ ଓଡ଼ିଶା ସରକାର ପ୍ରଧାନମନ୍ତ୍ରୀଙ୍କ ମାସିଭ୍ ପ୍ରୋଗ୍ରାମ୍ କାର୍ଯ୍ୟକାରୀ କରାଇ ଲୋକମାନଙ୍କୁ ଆବଶ୍ୟକ ସାହାଯ୍ୟ ସହଯୋଗ ଯୋଗାଇଲେ ।

ମୋହନଗିରି ଗ୍ରାମ ସେବକ ଶ୍ରୀ ତେଜୁରାମ ସାହୁ ଉକ୍ତ ଯୁବକଙ୍କ ଉଦ୍ୟମ ଏବଂ ପରିବାର ପ୍ରତିପୋଷଣରେ ଅଧିକା ଆୟ କରିବାର ଚେଷ୍ଟାକୁ ଜାଣିପାରି ପ୍ରାଇମିନିଷ୍ଟରସ ମାସିଭ୍ ପ୍ରୋଗ୍ରାମ୍‌ରେ ତାଙ୍କୁ ଜଣେ ହିତାଧିକାରୀ ଭାବରେ ବାଛି ତାଙ୍କର ଦରଖାସ୍ତକୁ ବ୍ଲକ୍ ଜରିଆରେ ସୁପାରିଶ କରାଇ ମୋହନଗିରିସ୍ଥିତ କଳାହାଣ୍ଡି ଆଞ୍ଚଳିକ ଗ୍ରାମ୍ୟ ବ୍ୟାଙ୍କ୍ ଶାଖାକୁ ପାଣି ପମ୍ପ ଋଣ ପାଇଁ ଉପସ୍ଥାପନ କଲେ । ଏଥି ପୂର୍ବରୁ ଶ୍ରୀ ବ୍ରୁକ୍ଷ ପ୍ରଧାନ ନିଜ ଘର ବାଡ଼ିରେ ୨୫ ଫୁଟର ଗଭୀର ୧୧ ଫୁଟ ଗୋଲେଇ ଏକ କୁଅ ଖୋଳି ନିଜେ ଇଟା ମାଟିରେ ତାକୁ ଅସ୍ଥାୟୀ ପକ୍କା କୁଅ ତିଆରି କରି ଟେଣ୍ଡା ସାହାଯ୍ୟରେ ପାଣି ମଡ଼ାଇ ଆସୁଥିଲେ । ବ୍ୟାଙ୍କ୍ କର୍ତ୍ତୃପକ୍ଷ ତାଙ୍କର ଘର ବାଡ଼ି କୁଅ ଇତ୍ୟାଦି ତନଖି ଦେଖିସାରିଲା ପରେ ୮,୧୯୦ ଟଙ୍କା ୮୫ ପଇସାର ଋଣ ମଞ୍ଜୁରୀ କଲେ ଏବଂ ତା ୯-୧-୧୯୮୬ ରିଖ ଦିନ ୫,୬୯୦ ଟଙ୍କା ୮୫ ମୂଲ୍ୟର ୨ ହର୍ସ ପାୱାର ବିଶିଷ୍ଟ ବିଦ୍ୟୁତ ଚାଳିତ ପାଣି ପମ୍ପ ଯୋଗାଇ ଦେଲେ । ପମ୍ପ ଘର ଓ ଆନୁଷଙ୍ଗିକ ଖର୍ଚ୍ଚ ପାଇଁ ଆବଶ୍ୟକ ଟଙ୍କା ଦେଲେ, ମୋଟ ଋଣ ଉପରେ ଶତକଡ଼ା ୧୦ ହାରରେ ସୁଧ ଥାଇ ଏହି ଋଣ ଦିଆଗଲା । ତାଙ୍କୁ ରିହାତି ବାବଦକୁ ୨,୭୩୦ ଟଙ୍କା ୯ ପଇସା ବ୍ୟାଙ୍କ୍ କର୍ତ୍ତୃପକ୍ଷ ଛାଡ଼ କଲେ ।

ତାଙ୍କ ଘର ବାରିରେ ବିଦ୍ୟୁତ ଚାଳିତ ପମ୍ପ ବସିବାରୁ ଶ୍ରୀ ପ୍ରଧାନ ଏବଂ ତାଙ୍କର ପରିବାର ଦ୍ୱିଗୁଣିତ ଉତ୍ସାହିତ ହୋଇ ଚାଷ କାର୍ଯ୍ୟରେ ଲାଗି ପଡ଼ିଲେ । ଋତୁ ଅନୁଯାୟୀ ବିଭିନ୍ନ

ପନିପରିବା ଚାଷ ଯଥା–କୋବି, ବାଇଗଣ, ଟମାଟୋ, ପିଆଜ, ରସୁଣ, ଶାଗ ଇତ୍ୟାଦି ଚାଷ କରି ଦ୍ୱିଗୁଣିତ ଉତ୍ପାଦନ କଲେ । ନିଜ ଘର ଖର୍ଚ୍ଚରେ ଦୈନନ୍ଦିନ ପନିପରିବା ଆବଶ୍ୟକ ମୁତାବକ ବ୍ୟବହାର କଲେ । ଉଦ୍‌ବୃତ୍ତ ପନିପରିବାକୁ ସେ ମୋହନଗିରି ସାପ୍ତାହିକ ହାଟ, ଆଖପାଖର ଗ୍ରାମ ଓ ହାଟ ଏବଂ ପ୍ରାୟ ୨୪ କି: ମି: ଦୂରରେ ଥିବା ମଦନପୁର–ରାମପୁର ହାଟକୁ ନେଇ ବିକ୍ରି କରି ସନ୍ତୋଷଜନକ ଲାଭ ପାଇଲେ । ବାରଦିନିଆ ବସ୍ ଚାଲିବାରୁ ବସ୍‌ର ସୁବିଧାରେ ଦୂରକୁ ନେଇ ପନିପରିବା ବିକ୍ରିର ସୁବିଧା ପାଇଲେ । ଏପରି ପରିଶ୍ରମ ଏବଂ ଉଦ୍ୟମ ଫଳରେ ସେ ବର୍ଷକୁ ହାରାହାରି ୧୦,୦୦୦ ଟଙ୍କା ଘର ବାଡ଼ି ଚାଷରୁ ଆୟ କରିପାରିଲେ । ନିଜର ପାରିବାରିକ ଖର୍ଚ୍ଚ ତୁଲାଇ ସେ ଋଣ କିସ୍ତି ପରିଶୋଧ କରିବାକୁ ଲାଗିଲେ । ବ୍ୟାଙ୍କ୍ ଖାତାରୁ ଦେଖିବାକୁ ମିଳିଲା ଯେ ସେ ତା୨୮–୪–୧୯୮୮ରିଖ ଦିନ ୬୫୦ ଟଙ୍କା, ତା୨୨–୭–୧୯୮୮ରିଖ ଦିନ ୧,୫୦୦ ଟଙ୍କା ଏବଂ ତା୨୭–୩–୧୯୮୯ରିଖ ଦିନ ୧,୫୦୦ ଟଙ୍କା ଋଣ ପରିଶୋଧ କରିଛନ୍ତି । ତାଙ୍କୁ ତା୨୮–୨–୧୯୯୦ରିଖ ବେଳକୁ ୩,୩୮୦ ଟଙ୍କା ୩୫ ପଇସା ବଳକା ଋଣ ଶୁଝିବାକୁ ବାକି ଥିଲା । କିନ୍ତୁ ସରକାରଙ୍କ ଛୋଟ ଚାଷୀମାନଙ୍କୁ ୧୦,୦୦୦ ଟଙ୍କା ପର୍ଯ୍ୟନ୍ତ ଋଣ ଛାଡ଼ ଘୋଷଣା ଜଣାପଡ଼ିବା ଫଳରେ ବଳକା ଋଣ ଛାଡ଼ ପାଇବା ଆଶା କରନ୍ତି । ଏହାଛଡ଼ା ଉକ୍ତ କୂଅରୁ ପାଣି ଯୋଗାଣ କମ୍ ହେଉଥିବାରୁ "ଇନ୍ ୱେଲ୍ ବୋରିଂ" ଯୋଜନାରେ ୫,୦୦୦ ଟଙ୍କାର ମାଗଣା ଋଣ ସାହାଯ୍ୟରେ କୂଅ ଭିତରେ ବୋରିଂ କରିଆରେ ଅଧିକା ପାଣି ଯୋଗାଣ ବ୍ୟବସ୍ଥା କରାଇବାକୁ ଗ୍ରାମ ସେବକ ଶ୍ରୀ ପ୍ରଧାନଙ୍କ ନାମ ସୁପାରିଶ କରିଥିବା କଥା ଜଣା ପଡ଼ିଲା । ବଳକା ଟଙ୍କା ଋଣ ଆକାରରେ ସୁଝିବାକୁ ପଡ଼ିବ । ତେଣୁ ଏହି ପରବର୍ତ୍ତୀ ସାହାଯ୍ୟ ପାଇଲେ କୂଅ ପକ୍କା କରି ଉକ୍ତ ଚାଷୀ ପରିବାରର ଉଦ୍ୟମ ଅବ୍ୟାହତ ରହିବ ଏବଂ ଅଧିକା ଅର୍ଥ ଉପାର୍ଜନ କରି ପରିବାରର ଦୈନନ୍ଦିନ ଗୁଜୁରାଣ ମେଣ୍ଟି ପାରିବ । ଏଥିପାଇଁ ଶ୍ରୀ ପ୍ରଧାନ ଆଶାବାଦୀ ଅଟନ୍ତି ଏବଂ ସରକାରଙ୍କ ତଥା ବ୍ୟାଙ୍କ୍ କର୍ତ୍ତୃପକ୍ଷଙ୍କ ଏପରି ଦାରିଦ୍ର୍ୟ ମୋଚନ ଯୋଜନାକୁ ଭୂୟସୀ ପ୍ରଶଂସା କରନ୍ତି ।

ଈଶ୍ୱର ପ୍ରସାଦ ସିଂହ,
ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ
ଅଧିକାରୀ, କଳାହାଣ୍ଡି ।

## ସୁଜଳା–ସୁଫଳା ଶସ୍ୟ–ଶ୍ୟାମଳା ସ୍ୱର୍ଣ୍ଣପ୍ରସୂ ଆମର ମାଟି

ଭାରତବର୍ଷ ସ୍ୱାଧୀନତା ଲାଭ କରିବାର ୪୩ ବର୍ଷ ବିତିଯାଇଛି । ୪୪ତମ ସ୍ୱାଧୀନତା ଦିବସ ମହାସମାରୋହରେ ପାଳିତ ହେବା ଅବସରରେ ଓଡ଼ିଶାରେ ପ୍ରଗତି ଅଭିମୁଖୀ ସରକାରଙ୍କର "ପଦଯାତ୍ରା" ନିଷ୍ପତ୍ତି ଗ୍ରାମୀଣ ଜନତାଙ୍କ ନିମନ୍ତେ ଆଶୀର୍ବାଦର ସୁଫଳ ରୂପେ ଶୁଭାରମ୍ଭ ସୃଷ୍ଟି କରିପାରିଛି । ଗଣତନ୍ତ୍ର ରାଷ୍ଟ୍ର ଶାସକ ଓ ଶାସିତଙ୍କ ମଧ୍ୟରେ ଆଧାର ଆଧେୟରୁ ସମ୍ପର୍କ । ଲୋକମାନଙ୍କ ସହିତ ଲୋକ ପ୍ରତିନିଧି ମନ୍ତ୍ରୀ, ଜିଲ୍ଲା ପ୍ରଶାସନ ମିଶିବେ । ଗ୍ରାମୀଣ ଜନତାଙ୍କ ଅଭାବ ଅସୁବିଧା ବୁଝିବା ସହ ପ୍ରକୃତ ଗ୍ରାମାଞ୍ଚଳକୁ ସରକାରଙ୍କ ଯୋଜନା ପ୍ରସାରିତ ହୋଇପାରୁଛି କି ନାହିଁ ତାହା ଦେଖିବାକୁ ପ୍ରଶାସକମାନେ ପଦଯାତ୍ରାରେ ଯି... ଏକ ଐତିହାସିକ ବିଷୟର ।

ରାଜା ଦଶରଥଙ୍କ ପୁତ୍ର ଶ୍ରୀରାମଚନ୍ଦ୍ର ୧୪ ବର୍ଷ ବନବାସକୁ ଯି... ସମସ୍ତେ ଜାଣନ୍ତି । ମା' କୈକେୟୀଙ୍କ ଚକ୍ରାନ୍ତରେ ରାଜ୍ୟାଭି... ଛାଡ଼ି ରାଜା ରାମଚନ୍ଦ୍ର ବନବାସ କରିଲେ । କିନ୍ତୁ ପ୍ର... "ରାମରାଜ୍ୟ", ପ୍ରତିଷ୍ଠା କରିବାକୁ ପୂର୍ବ ପ୍ରସ୍ତୁତି ସ୍ୱରୂପ ଗାଁ, ... ଅରଣ୍ୟବାସୀଙ୍କ ଜୀବନ ଉପରେ ପ୍ରକୃତ ଚିତ୍ର ବୁଝିବାକୁ କୁଳ... ବଶିଷ୍ଠଙ୍କର ଉପଦେଶ ଥିଲା ଶ୍ରୀରାମଚନ୍ଦ୍ରଙ୍କ ପାଇଁ ସମୟୋ... ପଦକ୍ଷେପ । ଏଣୁ ରଥ ତ୍ୟାଗ ପୂର୍ବକ ପଦଯାତ୍ରା କରିଥି... ସେହି ଆଦର୍ଶକୁ ଅନୁସରଣ କରି ଏହି ୪୪ତମ ସ୍ୱାଧୀ... ଦିବସରେ ସାରା ଓଡ଼ିଶାର ମନ୍ତ୍ରୀ, ବିଧାୟକ, ଜିଲ୍ଲାପାଳ... ଅନ୍ୟାନ୍ୟମାନେ ପଦଯାତ୍ରାରେ ଗ୍ରାମକୁ ଯାଇଥିଲେ ।

ଗଞ୍ଜାମ ଜିଲ୍ଲାର ବାଣିଜ୍ୟସ୍ଥଳୀ ବ୍ରହ୍ମପୁର ଉପଖଣ୍ଡ ମଣ୍ଡଳ... ବ୍ରହ୍ମପୁର ସହର । ଏଠାରେ ଅନୁଷ୍ଠିତ ସ୍ୱାଧୀନତା ଦି... ଉତ୍ସବରେ ଓଡ଼ିଶାର କୃଷି ଓ ସମବାୟ ବିଭାଗ ମ... ଶ୍ରୀ ଜଗନ୍ନାଥ ମଲ୍ଲିକ ଅଭିବାଦନ ଗ୍ରହଣ ପୂର୍ବକ ଜାତୀୟ ପ... ଉତ୍ତୋଳନ କରିଥିଲେ ଓ ତା ପରଦିନ କୁକୁଡ଼ାଖଣ୍ଡି ବ୍ଲ... ଗ୍ରାମାଞ୍ଚଳକୁ ପଦଯାତ୍ରାରେ ଯାଇଥିଲେ । ବାସ୍ତବରେ ଆ... ଚାଷୀ ଭାଇମାନେ ଓ ଉର୍ବରା ବସୁନ୍ଧରା ଲକ୍ଷ ଲକ୍ଷ ଟଙ୍କାର ... ପନିପରିବା ଆମଦାନୀ କରିପାରୁଛି କେହି ଜାଣିନଥିବେ । ... ଲୋଚନକୁ ଉଦ୍ୟାନ ବିଭାଗ ଓ କୃଷି ବିଭାଗ ଦ୍ୱାରା ଆଣି... ଚେଷ୍ଟା ହୋଇଥିଲେ ସୁଦ୍ଧା ସମ୍ପୃକ୍ତ ବିଭାଗୀୟ ମନ୍ତ୍ରୀଙ୍କ ପଦଯା... ସ୍ୱଚକ୍ଷୁରେ ଦେଖି ଅନୁଭବ କରି ବୁଝିପାରିଥିବାରୁ ଅନ୍ୟ... ଚାଷୀମାନେ ଉତ୍ସାହିତ ହୋଇଛନ୍ତି । ବ୍ରହ୍ମପୁର ସହରରୁ ମାତ୍ର ... କି: ମି: ଦୂରରେ ଏ ପରିବା ଆଦାୟ ହୋଇ ସୁଦୂର କଳି... ନଗରୀରେ ବିକ୍ରି ହୋଇ ଓଡ଼ିଶା ତଥା ଗଞ୍ଜାମ ଜିଲ୍ଲାର ନାମ ... ମର୍ଯ୍ୟାଦା ପ୍ରସାରିତ ହୋଇ ପାରିଥିବା ବିଷୟ ସମ... ଜାଣିଲେ ।

ବ୍ରହ୍ମପୁରଠାରୁ ଦିଗପହଣ୍ଡି ଯିବା ରାସ୍ତା କଡ଼ରେ ୫୯ ବର୍ଷ ବ... ଶ୍ରୀ ନରସିଂହ ପାତ୍ର ନିଜ ସମ୍ବଳ ଖଟାଇ ପୂର୍ବର ବହୁ ପରି... ସ୍ୱୀକାର ପୂର୍ବକ ପନିପରିବା ଚାଷ କରୁଥିଲେ ସୁଦ୍ଧା ପରି... ତୁଳନାରେ ଫଳ ପାଇପାରୁନଥିଲେ । ଜଳସେଚନ ଅସୁବିଧା ... ଉନ୍ନତ କିସମର ବିହନ ନପାଇ ଯେନତେନ ପ୍ରକାରେ ... କରୁଥିଲେ । ୧୯୮୬ ସାଲରେ ମାତ୍ର ୩୦ ଡେସିମିଲ ଜମି... ଟମାଟୋ ଓ ଫଳଲଙ୍କା (କ୍ୟାପସିକମ୍) ଚାଷ କରୁଥିଲେ । ... ସେ ୫ ଏକର ଜମିରେ ବର୍ଷାଦିନିଆ ଟମାଟୋ ଲଗାଇଛ... ବ୍ରହ୍ମପୁର ଉଦ୍ୟାନ୍‌ବିତ୍‌ଙ୍କ ପରାମର୍ଶ ପୂର୍ବକ ଚାଷ କରିବ... ଶ୍ରୀ ନରସିଂହ ପାତ୍ର ଆଗେଇ ଆସିଲେ । କୃଷି ମନ୍ତ୍ରୀ ଦେଖି... ବେଳକୁ ଇଣ୍ଡୋ–ଆମେରିକାନ୍ କିସମର ହାଇବ୍ରିଡ୍ "ରୂପାଲି... ଟମାଟୋ ନରସିଂହ ପାତ୍ରଙ୍କ ଜମିରେ ଲାଗିଛି । ଶ୍ରୀ ନରସି... ପାତ୍ର ନିଜର ବିକାଶ କାହାଣୀ ଆରମ୍ଭ କରି ଟମାଟୋ ... କ୍ୟାପସିକମ୍ ଲଙ୍କା ଚାଷରୁ ବର୍ଷକୁ ଲକ୍ଷ ଲକ୍ଷ ଟଙ୍କା ଲାଭ ପାଉଥି... ପ୍ରକାଶ କରିଥିଲେ । ମାତ୍ର ୫ ବର୍ଷ ମଧ୍ୟରେ ଭାଗ୍ୟ ବ... ଯାଇଛି । ଏକର ପିଛା ଟମାଟୋ ଚାଷ କରିବାକୁ ସେ ୧୨,୦... ଟଙ୍କା ଖର୍ଚ୍ଚ କରି ଲାଭାଂଶରେ ୩୫,୦୦୦ ଟଙ୍କାରୁ ୪୦,୦୦୦ ଟ... ପାଉଥିବା କହିଥିଲେ । ସେହିପରି ଫଳ ଲଙ୍କା (କ୍ୟାପସି...

ଏକର ପିଛା ୧୮,୦୦୦ ଟଙ୍କା ଖର୍ଚ୍ଚ କରି ପ୍ରାୟ ୬୦,୦୦୦ଟଙ୍କାରୁ ୬୫,୦୦୦ ଟଙ୍କା ଲାଭ ପାଉଥିବା ବିଷୟ କହିଲେ । ଏ ଜମିର ଶସ୍ୟ ତଥା ସବୁଜିମା ଦେଖିଲେ ପେଟ ପୁରିଯାଏ । ଉକ୍ତ ଲାଭାଂଶରୁ ଜଳସେଚନ ସକାଶେ ମେସିନ୍ ଚାଳିତ ପମ୍ପସେଟ୍ ବସାଯାଇଛି । ସୁନ୍ଦର ଘରଟିଏ ବଗିଚା ମଧ୍ୟରେ କରି ଜଳସେଚନର ବିଦ୍ୟୁତ ଚାଳିତ ପମ୍ପସେଟ୍ ବସାଇଛନ୍ତି । ପୂର୍ବର ଋଣ ସୂତ୍ରରେ ୩,୦୦୦ ଟଙ୍କା ବ୍ୟୟରେ ଗୋଟିଏ ଜଳସେଚନ କୂଅ ବସାଇଥିଲେ । ଉକ୍ତ ଋଣ ସୁଧ ସହ ୭ ବର୍ଷ ମଧ୍ୟରେ ପରିଶୋଧ କରି ଦେଇଥିବା ପ୍ରକାଶ କରିଥିଲେ । ଏ ମଧ୍ୟରେ ଟିଭି ସେଟ୍ ରଖି "କୃଷି ଦର୍ଶନ" କାର୍ଯ୍ୟକ୍ରମ ଦେଖି ସେ ଅନୁସାରେ ପରିଚାଳିତ ହେଉଛନ୍ତି । ବ୍ରହ୍ମପୁରସ୍ଥିତ ଉଦ୍ୟାନ୍‌ବିତ୍‌ଙ୍କ ପରାମର୍ଶରେ ଏକର ପିଛା ନାଇଟ୍ରୋଜେନ୍ ୮୦ କି: ଗ୍ରା:, ପଟାସ୍ ୧୦୦ କି: ଗ୍ରା: ଓ ଫସ୍‌ଫେଟ୍ ସାର ୧୦୦ କି: ଗ୍ରା: ମିଶାଇ ଟମାଟୋ ଫସଲକୁ ବଢ଼ାନ୍ତି । ଶ୍ରୀ ନରସିଂହ ପାତ୍ରଙ୍କ ଦୁଇ ପୁଅ ଆଇ: ଏ: ପଢ଼ିବା ପରେ କୃଷି କର୍ମରେ ମନ ବଳାଇ ବାପାଙ୍କୁ ସାହାଯ୍ୟ କରୁଛନ୍ତି । ସାନ ପୁଅ ଶ୍ରୀ ଉଦ୍ଧବ ପାତ୍ର ପୂର୍ଣ୍ଣ ପ୍ରାଣରେ ଲାଗିଛନ୍ତି । ଓଡ଼ିଶା ସରକାରଙ୍କ ଦ୍ୱାରା ଶ୍ରୀ ନରସିଂହ ପାତ୍ର ଓ ତାଙ୍କ ପୁଅ ଶ୍ରୀ ଉଦ୍ଧବ ପାତ୍ରଙ୍କୁ ଉଚ୍ଚକୋଟୀର ଜ୍ଞାନ, ପଦ୍ଧତି ଶିକ୍ଷା ପାଇଁ ବିଦେଶ ପଠାଇବାକୁ କରାଯାଉଥିବା କୃଷି ମନ୍ତ୍ରୀ ପ୍ରକାଶ କରିଥିଲେ ।

କଲିକତା ବଜାରକୁ ଟମାଟୋ ଓ କ୍ୟାପସିକମ୍ ପଠାଇବାକୁ ବ୍ରହ୍ମପୁରରୁ ସ୍ୱତନ୍ତ୍ର ୱାଗନ୍ ବା ବଗି ବ୍ୟବସ୍ଥା କରିବାକୁ ଶ୍ରୀ ନରସିଂହ ପାତ୍ର ମନ୍ତ୍ରୀ ମହୋଦୟଙ୍କୁ ଅନୁରୋଧ କରିଥିଲେ । ବର୍ତ୍ତମାନ ନିଜର ୧୭ ଏକର ମଧ୍ୟରୁ ୫ ଏକରରେ ଟମାଟୋ ଲଗାଇଛନ୍ତି, ୩ ଏକର ଜମିରେ କ୍ୟାପସିକମ୍ (ଫେଳ ଲଙ୍କା) ବିରି-୩୬୫ ଭେରାଇଟି ଏକରେ ଜମିରେ ଲଗାଇଛନ୍ତି । ପ୍ରଥମ ଥର ଏ ନୂତନ ଉନ୍ନତ କିସମର ବିରି ଜମିକୁ ମନ୍ତ୍ରୀ ମହୋଦୟ ବୁଲି ଦେଖିଥିଲେ । ୨-୩ ଫୁଟ ଉଚ୍ଚକୁ ବଢ଼ିଥିବା ବିରି ଫସଲକୁ ଦେଖିଲେ ପେଟ ଭରି ଯାଉଥିବା ଅନୁଭବ କରିଲେ । ଏ ମଧ୍ୟରେ ଭୁବନେଶ୍ୱର-୨ କିସମ ଭେଣ୍ଡି ଏକରେ ଜମିରେ, ପୋଟଳ ୫୦ ଡେସିମିଲ ଜମିରେ ଲଗାଇଥିବା ଶ୍ରୀ ନରସିଂହ ପାତ୍ର କହିଲେ । ବଞ୍ଜର, ଜଳ ଆଶ୍ରା ବିହୀନ ଜମିରେ ଯାହା ପାଉଥିଲେ ସେଥିରେ ନରସିଂହ ପାତ୍ରଙ୍କ ପାରିବାରିକ ଜୀବନ ଅଭାବ ମଧ୍ୟରେ ଚାଲୁଥିଲା କିନ୍ତୁ ଏ ପନିପରିବା ଚାଷକୁ ଜଳସେଚିତ କୂଅ ଓ ଉନ୍ନତ କିସମର ବିହନ, ଆଦର୍ଶ ପରାମର୍ଶ, ପ୍ରତ୍ୟକ୍ଷ ତତ୍ତ୍ୱାବଧାନ, କୀଟନାଶକ ଔଷଧ ଯୋଗାଣ ଯୋଗୁଁ ଆଜି ସେ ସମାଜରେ ପ୍ରତିଷ୍ଠିତ ବ୍ୟକ୍ତି ହୋଇପାରିଛନ୍ତି । ଏ ଅଞ୍ଚଳରେ ଅନ୍ୟାନ୍ୟ ଚାଷୀମାନଙ୍କ ନିମନ୍ତେ ଉଦାହରଣର ଉତ୍ସ ହୋଇପାରିଛନ୍ତି ।

ଏତଦ୍‌ବ୍ୟତୀତ ସୁଦୂର କଲିକତା ନଗରୀରେ ଓଡ଼ିଶା ରାଜ୍ୟର ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର ଉପଖଣ୍ଡ ମଣ୍ଡଳର ଏକ ଅଖ୍ୟାତ ପଲ୍ଲୀ ସବୁଜ ପରିବା ଏବେ ଜନାଦୃତ, ଖ୍ୟାତ ହୋଇ ଲକ୍ଷ ଲକ୍ଷ ଟଙ୍କା ଆସିପାରିଛି । ଏହାଠାରୁ ଗୌରବ କ'ଣ ହୋଇପାରେ । ଏ ଅଞ୍ଚଳର ଅନ୍ୟାନ୍ୟ କୃଷକମାନେ ଆଜିକାଲି ଏହି ଧରଣର ଚାଷ କରିବାକୁ ଆଗ୍ରହୀ । ବ୍ରହ୍ମପୁର ସହରର ପରିବା ବଜାର ଆତ୍ମନିର୍ଭରଶୀଳ ହୋଇପାରିଛି । ନରସିଂହ ପାତ୍ରଙ୍କ ପରି କେତେକ କୃଷକଙ୍କ ଯୋଗୁଁ ଆଜି ଆନ୍ଧ୍ର ବଜାର ଉପରେ ଏ ସହର, ଜିଲ୍ଲା ନିର୍ଭର ନକରି ସ୍ଥାନୀୟ ଆମଦାନୀ ଉପରେ ନିର୍ଭର କରିଛି ।

ଏ ମାଟି ଆମର ଶସ୍ୟ, ଶ୍ୟାମଳା, ହରିତ ଫସଲ ପନିପରିବା ଯୋଗାଇ ବାସ୍ତବରେ ସ୍ୱର୍ଣ୍ଣପ୍ରସୂ ହୋଇପାରିଛି ।

ଅନୁବିଭାଗୀୟ ସୂଚନା ଓ ଲୋକ ସମ୍ପର୍କ
ଅଧିକାରୀ, ବ୍ରହ୍ମପୁର,
ଗଞ୍ଜାମ ।



ଉତ୍କଳ କବି ମଧୁସୂଦନ ବିଦ୍ୟାଳୟ, ଭୁବନେଶ୍ୱର ସୁବର୍ଣ୍ଣ ଜୟନ୍ତୀ ଉତ୍ସବରେ ଉଦ୍‌ଘାଟିତ ପ୍ରତିମୂର୍ତ୍ତିରେ ମନ୍ତ୍ରୀ ଶ୍ରୀ ରାମକୃଷ୍ଣ ପଟ୍ଟନାୟକ, ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ, ଶ୍ରୀ ଶରତ କୁମାର କର ଓ ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀଙ୍କ ମାଲ୍ୟାର୍ପଣ ।

# ସମ୍ବାଦ ପରିକ୍ରମା

## ରାଜ୍ୟ ସଂସ୍କୃତି ପରିଷଦର ପ୍ରଥମ ବୈଠକ

ସମ୍ପ୍ରତି ରାଜ୍ୟ ସଂସ୍କୃତି ପରିଷଦର ପ୍ରଥମ ବୈଠକ ରାଜଭବନଠାରେ ଅନୁଷ୍ଠିତ ହୋଇଯାଇଛି । ଏଥିରେ ପରିଷଦର ସଭାପତି ତଥା ଓଡ଼ିଶାର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଅଧ୍ୟକ୍ଷତା କରିଥିଲେ । ରାଜ୍ୟପାଳ ତାଙ୍କ ସ୍ୱାଗତ ଭାଷଣରେ ସଂସ୍କୃତିର ସଂଜ୍ଞା ବର୍ଣ୍ଣନା କରିବାକୁ ଯାଇ ଏହା ପ୍ରଜ୍ଞା, ବିଶ୍ୱାସ, କଳା ଆଦର୍ଶ ନୀତି ଓ ପରମ୍ପରା ଇତ୍ୟାଦିର ସମଷ୍ଟି ବୋଲି କହିଥିଲେ ।

ମାନବ ସଂସ୍କୃତି ମାଧ୍ୟମରେ ହିଁ ସ୍ୱୟଂ ସମ୍ପୂର୍ଣ୍ଣ ହୋଇଯାଏ । ସଂସ୍କୃତି ସୃଜନଶୀଳତା ସ୍ତରରେ ପ୍ରକାଶିତ ହୁଏ ଏବଂ ଏହା ନିଖୁଣ ସ୍ୱାଧୀନତାକୁ ବୁଝାଏ । ଏହା ସ୍ଥାନ କାଳ ନିର୍ବିଶେଷରେ ମାନବ ଚିନ୍ତାଧାରାର ସାରାଂଶ ଓ ଏହା ଜୀବନକୁ ଅପୂର୍ବ ସୌନ୍ଦର୍ଯ୍ୟର ଆକାରେ ଉଦ୍‌ଭାସିତ କରେ ।

ବିଭିନ୍ନ ସମୟରେ ରାଜକୁମାର ପୁରୋହିତ ଏବଂ ପଣ୍ଡିତମାନେ ସଂସ୍କୃତିର ପ୍ରସାର କରିଛନ୍ତି ଏବଂ ବିଧ୍ୱଂସ କରିଛନ୍ତି । ମାତ୍ର ଏହାର ସାମୂହିକ ଅନ୍ତଃଶକ୍ତିକୁ ନିଶ୍ଚିହ୍ନ କରିଦେବା ତାଙ୍କ ପକ୍ଷେ ସମ୍ଭବ ହୋଇନାହିଁ ।

ଭାରତ ଅନେକବାର ବିଭିନ୍ନ ରାଜୁତିରେ ରହିଛି ମାତ୍ର ଏହାର ସାଂସ୍କୃତିକ ଏକତା ଏହାଦ୍ୱାରା ବ୍ୟାହତ ହୋଇନାହିଁ । ଆମର ଜାତୀୟ ତଥା ରାଜ୍ୟ ସରକାର ସାଂସ୍କୃତିକ ବିକାଶ କ୍ଷେତ୍ରରେ ଗୁରୁତ୍ୱ ଦେଉଛନ୍ତି । ଆମର ଏକାଡେମୀ ଓ ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନ ମଧ୍ୟ ଏ ଦିଗରେ ସାଧ୍ୟମତେ କାର୍ଯ୍ୟ କରୁଛନ୍ତି । ପରସ୍ପର ଏହି ସହଯୋଗରେ ଲକ୍ଷ୍ୟ ପୂରଣ କ୍ଷେତ୍ରରେ କାର୍ଯ୍ୟ କରିବାକୁ ସେ ଇଚ୍ଛା କରନ୍ତି ବୋଲି ରାଜ୍ୟପାଳ ପ୍ରକାଶ କରିଥିଲେ ।

ସଂସ୍କୃତିର ଭୂମିକା କହିଲେ ସାହିତ୍ୟ, କଳା ଭାସ୍କର୍ଯ୍ୟ, ସଙ୍ଗୀତ, ନୃତ୍ୟ, ନାଟକକୁ ବୁଝାଏ । ସଂସ୍କୃତି ପ୍ରେମୀଙ୍କର ମଧ୍ୟ ସେଠି ସ୍ଥାନ ରହିଛି । କୌଣସି ସାମାଜିକ ପରିବର୍ତ୍ତନରେ ସଂସ୍କୃତିର ଭୂମିକା ବାଦ୍ ଦେଇହେବ ନାହିଁ । ରାଜନୈତିକ, ଅର୍ଥନୈତିକ ତଥା ବୈଷୟିକ ବିଷୟ ବ୍ୟତୀତ ଦୀର୍ଘସ୍ଥାୟୀ ସାମାଜିକ ପରିବର୍ତ୍ତନରେ ସଂସ୍କୃତି କେନ୍ଦ୍ର ସ୍ଥାନ ଗ୍ରହଣ କରିଥାଏ ।

ସଂସ୍କୃତିର ମଣିଷ ସହଜ ଓ ଭଲରେ ଚଳିବା ଉଚିତ । ବିଭିନ୍ନ ସୃଜନଶୀଳ କଳାକାରମାନଙ୍କର ସାମାଜିକ ନିରାପତ୍ତା ତଥା ସାଧାରଣ କଲ୍ୟାଣ ଲାଗି ବିଭିନ୍ନ କାର୍ଯ୍ୟକ୍ରମ ସମ୍ମାନ ଓ ଶ୍ରଦ୍ଧା ସହ ହାତକୁ ନିଆଯିବା ଉଚିତ ।

ରାଜ୍ୟ ସାଂସ୍କୃତିକ ପରିଷଦର ପ୍ରଥମ ବୈଠକରେ ନିମ୍ନଲିଖିତ ନିଷ୍ପତ୍ତିମାନ ଗ୍ରହଣ କରାଯାଇଛି :

(କ) ଓଡ଼ିଆ, ଇଂରାଜୀ ଓ ହିନ୍ଦି ଭାଷାର ଏକ ମାସିକ ପତ୍ରିକା ପ୍ରକାଶ କରାଯିବ । ଉକ୍ତ ପତ୍ରିକାର ନାମ "ଓଡ଼ିଶା ଜରନାଲ୍" ।

(ଖ) ଓଡ଼ିଶା ସାଂସ୍କୃତିକ ପରିଷଦକୁ "ସୋସାଇଟି ରେଜିଷ୍ଟ୍ରେସନ୍ ଆକ୍ଟ" ବଳରେ ରେଜିଷ୍ଟ୍ରେସନ୍ କରାଯିବ । ସର୍ବଭାରତୀୟ ଏବଂ ରାଜ୍ୟସ୍ତରରେ ଯଥାକ୍ରମେ "କୋଣାର୍କ ସମ୍ମାନ" ଓ "ପ୍ଲାକ୍" ଦିଆଯାଇ କଳାକାରମାନଙ୍କୁ ସମ୍ମାନିତ କରାଯିବ ।

(ଗ) କଳାକାରମାନଙ୍କୁ ରେଳଗାଡ଼ିରେ ବିନା ଖର୍ଚ୍ଚରେ ଯିବା ଆସିବା କରିବା ପାଇଁ ଛାଡ଼ ଦିଆଯିବାକୁ ଭାରତ ସରକାରଙ୍କୁ ଅନୁରୋଧ କରାଯିବ । ବିଭିନ୍ନ ରାଜ୍ୟ ଓ କେନ୍ଦ୍ର ଶାସିତ ଅଞ୍ଚଳମାନଙ୍କୁ ଅନୁରୋଧ କରାଯିବ ଯେ ଏକାଡେମୀ ଓ ଅନ୍ୟାନ୍ୟ ସମ୍ମାନପ୍ରାପ୍ତ କଳାକାରମାନଙ୍କୁ ରାଜ୍ୟ ସରକାରଙ୍କ ଅତିଥି ରୂପେ ବିବେଚନା କରାଯିବ ।

(ଘ) ସମ୍ମାନପ୍ରାପ୍ତ କଳାକାରମାନଙ୍କୁ ବୀମା ଯୋଜନାରେ ସାମିଲ କରାଯିବ ଯାହା ଫଳରେ ରାଜ୍ୟରେ ୨୦୦ ଜଣ କଳାକାର ଉପକୃତ ହୋଇପାରିବେ ।

(ଙ) ରାଜଧାନୀରେ ଏକ "ସଂସ୍କୃତି ସୌଧ" ନିର୍ମାଣ କରାଯାଇ କଳାକାରମାନଙ୍କୁ ରହିବା ଓ କଳାର ବିକାଶ ପାଇଁ କାର୍ଯ୍ୟ କରିବାର ସୁଯୋଗ ଦିଆଯିବ ।

ସର୍ବଶେଷରେ କଳା ଓ ସଂସ୍କୃତିକୁ ବଞ୍ଚାଇ ରଖି କଳାକାରମାନଙ୍କ ସର୍ବବିଧ ଉନ୍ନତି ନିମିତ୍ତ ରାଜ୍ୟ ଓ ଭାରତ ସରକାରଙ୍କ ସହିତ ଆନ୍ତର୍ଜାତିକ କ୍ଷେତ୍ରରେ ସାହାଯ୍ୟ ନିଆଯିବ ।

## ଶିକ୍ଷାନୁଷ୍ଠାନ ଓ ସ୍ୱେଚ୍ଛାସେବୀ ସଂସ୍ଥାଗୁଡ଼ିକୁ ମୁଖ୍ୟମନ୍ତ୍ରୀଙ୍କ ଆହ୍ୱାନ

ଗଞ୍ଜାମ ଜିଲ୍ଲାର ବନ୍ୟା ପ୍ରପୀଡ଼ିତ ଲୋକମାନଙ୍କୁ ରିଲିଫ୍ ଯୋଗାଣ କ୍ଷେତ୍ରରେ ସର୍ବାଧିକ ସହାୟତା ପ୍ରଦାନ କରିବା ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଆହ୍ୱାନ ଜଣାଇଛନ୍ତି ।

ସଚିବାଳୟଠାରେ ଶିକ୍ଷାନୁଷ୍ଠାନ ଓ ସ୍ୱେଚ୍ଛାସେବୀ ସଙ୍ଗଠନମାନଙ୍କର ଏକ ବୈଠକରେ ଭାଷଣ ଦେଇ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ କହିଲେ ଯେ ସାମ୍ପ୍ରତିକ ପ୍ରଳୟଙ୍କରୀ ବନ୍ୟା ଯୋଗୁଁ ଗଞ୍ଜାମ ଜିଲ୍ଲାରେ ଅଭୂତପୂର୍ବ କ୍ଷୟକ୍ଷତି ହୋଇଛି । ବନ୍ୟାଗ୍ରସ୍ତ ଲୋକମାନଙ୍କର ଦୁଃଖଦୁର୍ଦ୍ଦଶା ଦୂର କରିବା ପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ ପୁନର୍ଗଠନ କାର୍ଯ୍ୟ ଜୋରସୋରରେ ଆରମ୍ଭ କରାଯାଇଛି । ସେ କହିଲେ ଯେ ବନ୍ୟାଞ୍ଚଳରେ ଗୃହ ନିର୍ମାଣ କାର୍ଯ୍ୟଗୁଡ଼ିକ ଅଗ୍ରାଧିକାର ଭିତ୍ତିରେ ହାତକୁ ନିଆଯାଇଛି । ବିଶେଷତଃ ହରିଜନ ଓ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳଗୁଡ଼ିକରେ ସ୍ୱତନ୍ତ୍ର କଲୋନୀମାନ ତୁରନ୍ତ ନିର୍ମାଣ କରିବା ଏକାନ୍ତ ଅପରିହାର୍ଯ୍ୟ ହୋଇପଡ଼ିଛି । ବ୍ୟାପକ ଫସଲହାନି ଓ ଲୋକମାନଙ୍କର ସମ୍ବଳ ସମ୍ପୂର୍ଣ୍ଣ ନଷ୍ଟ ହୋଇଯାଇଥିବା ଦୃଷ୍ଟିରୁ ସରକାର ହାତକୁ ନେଇଥିବା ପୁନର୍ଗଠନ କାର୍ଯ୍ୟରେ ଶିକ୍ଷାନୁଷ୍ଠାନ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକର ପୂର୍ଣ୍ଣ ସହଯୋଗର ଆବଶ୍ୟକତା ରହିଛି ।

ଟାଟା, ନାଲ୍କୋ, ଜେ: କେ:, ଓଡ଼ିଶା ଖଣି ନିଗମ, ଅଏଲ୍ ଇଣ୍ଡିଆ, କେୟାର୍, ଭାରତ ସେବାଶ୍ରମ ସଙ୍ଘ, ରାମକୃଷ୍ଣ ମିଶନ ଓ ସର୍ବୋଦୟ ରିଲିଫ୍ କମିଟି ପ୍ରଭୃତି ସଂସ୍ଥାମାନଙ୍କର ପ୍ରତିନିଧିମାନେ ଉକ୍ତ ବୈଠକରେ ଯୋଗ ଦେଇ ରିଲିଫ୍ ଓ ପୁନର୍ଗଠନ କାର୍ଯ୍ୟରେ ସର୍ବାଧିକ ସହଯୋଗ ପାଇଁ ପ୍ରତିଶ୍ରୁତି ଦେଇଥିଲେ । ଟାଟା କମ୍ପାନୀ ବନ୍ୟାଞ୍ଚଳରେ ରିଲିଫ୍, ପୁନର୍ବାସ ଓ ପୁନର୍ଗଠନ କ୍ଷେତ୍ରରେ ୫୦ ଲକ୍ଷ ଟଙ୍କାର ସହାୟତା ପାଇଁ ବୈଠକରେ ସମ୍ମତି ପ୍ରଦାନ କରିଥିଲେ ।

ଉକ୍ତ ବୈଠକରେ ରାଜସ୍ୱମନ୍ତ୍ରୀ ଶ୍ରୀ ସୁରେନ୍ଦ୍ର ନାଥ ନାୟକ, ଜଳସେଚନ ଓ ସଂସଦ ବ୍ୟାପାର ମନ୍ତ୍ରୀ ଶ୍ରୀ ବିଜୟ ମହାପାତ୍ର, ପଞ୍ଚାୟତିରାଜ ମନ୍ତ୍ରୀ ଡକ୍ଟର ଦାମୋଦର ରାଉତ, ସ୍ୱତନ୍ତ୍ର ରିଲିଫ୍ କମିଶନର ଶ୍ରୀ ପି: କେ: ଦେ, ମୁଖ୍ୟମନ୍ତ୍ରୀଙ୍କ ପ୍ରମୁଖ ସଚିବ ଶ୍ରୀ ପ୍ୟାରୀମୋହନ ମହାପାତ୍ର ଓ ରାଜସ୍ୱ ବିଭାଗ ସଚିବ ଶ୍ରୀ ଭାସ୍କର୍ ପଟ୍ଟନାୟକ ପ୍ରମୁଖ ଉପସ୍ଥିତ ରହି ଆଲୋଚନାରେ ଭାଗ ନେଇଥିଲେ ।

## ବିଂଶସୂତ୍ରୀ ଅନ୍ତର୍ଭୁକ୍ତ ବିଭିନ୍ନ ଶକ୍ତି ପ୍ରକଳ୍ପ କାର୍ଯ୍ୟକ୍ରମ

ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ବିଂଶସୂତ୍ରୀ କାର୍ଯ୍ୟକ୍ରମରେ ଗ୍ରାମ୍ୟ ବିଦ୍ୟୁତକରଣ, ପମ୍ପସେଟ୍‌କୁ ବିଦ୍ୟୁତ୍ ସଂଯୋଗ, ଉନ୍ନତ ଚୁଲ୍ଲୀ ଯୋଗାଣ ଏବଂ ବାୟୋଗ୍ୟାସ୍ ପ୍ଲାଣ୍ଟ ସ୍ଥାପନ ପ୍ରଭୃତି କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ । ଗତ ଅକ୍ଟୋବର ମାସରେ ରାଜ୍ୟର ୧୦୦ଟି ଗ୍ରାମକୁ ବିଦ୍ୟୁତ୍ ଯୋଗାଣ କରାଯାଇଛି । ଏହାକୁ ମିଶାଇ ଚଳିତ ଆର୍ଥିକ ବର୍ଷର ପ୍ରଥମ ୭ ମାସରେ ରାଜ୍ୟର ମୋଟ୍ ୭୯୩ଟି ଗ୍ରାମକୁ ବିଦ୍ୟୁତ୍ ଯୋଗାଇ ଦିଆଯାଇଛି । ସେହିପରି ଉକ୍ତ ସମୟ ମଧ୍ୟରେ କୃଷି ପାଇଁ ଉଦ୍ଦିଷ୍ଟ ୧,୬୫୪ଟି ପମ୍ପସେଟ୍‌କୁ ବିଦ୍ୟୁତ୍ ସଂଯୋଗ କରାଯାଇଛି । କେବଳ ଗତମାସରେ ବିଦ୍ୟୁତ୍ ସଂଯୋଗ କରାଯାଇଥିବା ପମ୍ପସେଟ୍‌ର ସଂଖ୍ୟା ହେଉଛି ୪୫୧ । ଚଳିତ ବର୍ଷ ମୋଟ ୫ ହଜାର ପମ୍ପସେଟ୍‌କୁ ବିଦ୍ୟୁତ୍ ସଂଯୋଗ କରାଯିବା ପାଇଁ ଲକ୍ଷ୍ୟ ରଖାଯାଇଛି ବୋଲି ଗତମାସ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ବିବରଣୀରୁ ପ୍ରକାଶ ।

ସେହିପରି ରାଜ୍ୟରେ ଉନ୍ନତ ଚୁଲ୍ଲୀ ବ୍ୟବହାର କ୍ରମଶଃ ବୃଦ୍ଧି ପାଉଥିବା ଦୃଷ୍ଟିରୁ ଗତ ଅପ୍ରେଲରୁ ଅକ୍ଟୋବର ମଧ୍ୟରେ ୨୮,୬୮୦ଟି ଉନ୍ନତ ଚୁଲ୍ଲୀ ଲୋକମାନଙ୍କୁ ଯୋଗାଇ ଦିଆଯାଇଛି । କେବଳ ଗତ ଅକ୍ଟୋବର ମାସରେ ଯୋଗାଇ ଦିଆଯାଇଥିବା ୬,୦୯୭ଟି ଚୁଲ୍ଲୀ ଏହାର ଅନ୍ତର୍ଭୁକ୍ତ । ଗତ ସାତମାସ ମଧ୍ୟରେ ରାଜ୍ୟରେ ମୋଟ୍ ୧,୩୪୬ଟି ବାୟୋଗ୍ୟାସ୍ ପ୍ଲାଣ୍ଟ ସ୍ଥାପନ କରାଯାଇଛି । କେବଳ ଗତ ଅକ୍ଟୋବର ମାସରେ ସ୍ଥାପିତ ହୋଇଥିବା ବାୟୋଗ୍ୟାସ୍ ପ୍ଲାଣ୍ଟ ସଂଖ୍ୟା ହେଉଛି ୧୨୬ । ଚଳିତ ବର୍ଷ ୬୦ ହଜାରଟି ଉନ୍ନତ ଚୁଲ୍ଲୀ ଓ ୭ ହଜାର ବାୟୋଗ୍ୟାସ ପ୍ଲାଣ୍ଟ ସ୍ଥାପନ ନିମନ୍ତେ ଲକ୍ଷ୍ୟ ରଖାଯାଇଛି ବୋଲି ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ବିବରଣୀରୁ ଜଣାପଡ଼ିଛି ।

## ଗଞ୍ଜାମ ଜିଲ୍ଲା ବନ୍ୟାଗ୍ରସ୍ତ ଅଞ୍ଚଳ ପାଇଁ ରବି ଫସଲ କାର୍ଯ୍ୟକ୍ରମ

ସମ୍ପ୍ରତି ଗଞ୍ଜାମ ଜିଲ୍ଲାର ବନ୍ୟା କ୍ଷତିଗ୍ରସ୍ତ ଅଞ୍ଚଳରେ କୃଷି ବିଭାଗ ପକ୍ଷରୁ ଚଳିତ ରବିଋତୁ ନିମନ୍ତେ ଏକ ବିଶେଷ ରବି କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଯାଉଛି ।

ଏହି କାର୍ଯ୍ୟକ୍ରମ ଅନୁଯାୟୀ ୩ ଲକ୍ଷରୁ ଊର୍ଦ୍ଧ୍ୱ ହେକ୍ଟର ଚାଷୋପଯୋଗୀ ଜମିରେ ଅଳ୍ପ ପାଣି ଆବଶ୍ୟକ ହେଉଥିବା ବିଭିନ୍ନ ରବି ଫସଲ ଉତ୍ପାଦନ ନିମନ୍ତେ ବ୍ୟବସ୍ଥା କରାଯାଇଛି । ତଦନୁସାରେ ପ୍ରାୟ ୩ ଲକ୍ଷ ହେକ୍ଟର ଜମିରେ ଡାଲିଜାତୀୟ ଫସଲ, ୫୩ ହଜାରରୁ ଊର୍ଦ୍ଧ୍ୱ ହେକ୍ଟର ଜମିରେ ତୈଳବୀଜ, ୧୭ ହଜାରରୁ ଊର୍ଦ୍ଧ୍ୱ ହେକ୍ଟର ଜମିରେ ଗହମ, ମକ୍କା, ମାଣ୍ଡିଆ ଆଦି ଫସଲ, ୮ ହଜାରରୁ ଊର୍ଦ୍ଧ୍ୱ ହେକ୍ଟର ଜମିରେ ଆଖୁ ଏବଂ ୮ ହଜାରରୁ ଊର୍ଦ୍ଧ୍ୱ ହେକ୍ଟର ଜମିରେ ଅନ୍ୟାନ୍ୟ ଫସଲ ଉତ୍ପାଦିତ ହେବ । ଏହା ବ୍ୟତୀତ ୨୪ ହଜାରରୁ ଊର୍ଦ୍ଧ୍ୱ ହେକ୍ଟର ଜମିରେ ବିଭିନ୍ନ ପନିପରିବା ଚାଷ କରାଯିବା ପାଇଁ ମଧ୍ୟ ସ୍ଥିର ହୋଇଛି । ପର୍ଯ୍ୟାପ୍ତ ଜଳସେଚନ ସୁବିଧା ଥିବା ୩ ହଜାର ହେକ୍ଟର ଜମିରେ ଧାନ ଫସଲ କରାଯିବାର କାର୍ଯ୍ୟକ୍ରମ ରହିଛି ।

ଏହି ପରିବର୍ତ୍ତିତ ରବି କାର୍ଯ୍ୟକ୍ରମ ନିମନ୍ତେ ଆବଶ୍ୟକୀୟ ୨୨ ହଜାର କ୍ୱିଣ୍ଟାଲ ଉନ୍ନତ ବିହନ ନିର୍ଦ୍ଧାରିତ ସମୟ ମଧ୍ୟରେ ଯୋଗାଇ ଦିଆଯିବା ପାଇଁ ପଦକ୍ଷେପ ନିଆଯାଇଛି । ବନ୍ୟା ପୂର୍ବରୁ ଜିଲ୍ଲାରେ ରବିଫସଲ ନିମନ୍ତେ ମାତ୍ର ୨ ହଜାର କ୍ୱିଣ୍ଟାଲ ଉନ୍ନତ ବିହନ ଯୋଗାଣ ପାଇଁ ଲକ୍ଷ୍ୟଧାର୍ଯ୍ୟ ହୋଇଥିଲା ।

ଜାତୀୟ ବିହନ ନିଗମ, ରାଜ୍ୟ ବିହନ ନିଗମ ଏବଂ ତୈଳବୀଜ ଉତ୍ପାଦକ ମହାସଙ୍ଘ ଅଗ୍ରାଧିକାର ଭିତ୍ତିରେ ବିହନ ଯୋଗାଣ କ୍ଷେତ୍ରରେ କୃଷି ବିଭାଗକୁ ସହାୟତା କରୁଛନ୍ତି । ମୁଗ ଓ ବିରି ବିହନର ଚାହିଦା ମେଣ୍ଟାଇବା ପାଇଁ ଗଞ୍ଜାମ ଜିଲ୍ଲାର ଅନ୍ୟାନ୍ୟ ଅଞ୍ଚଳରେ ମିଳୁଥିବା ଉନ୍ନତ ଧରଣର ବିହନ ସ୍ଥାନୀୟ ଭାବେ ସଂଗ୍ରହ କରାଯାଇ ଚାଷୀମାନଙ୍କୁ ଯୋଗାଇ ଦିଆଯାଉଛି । ଆମ ରାଜ୍ୟରେ ଉନ୍ନତ ଚିନାବାଦାମ ବିହନ ଅଭାବ ପରିଲକ୍ଷିତ ହେଉଥିବା ଦୃଷ୍ଟିରୁ ରାଜ୍ୟ ବାହାରୁ ଆମଦାନୀ ପାଇଁ ପଦକ୍ଷେପ ନିଆଯାଇଛି । ଠିକ୍ ସମୟରେ ଚାଷୀମାନଙ୍କୁ ଆବଶ୍ୟକୀୟ ବିହନ ଯୋଗାଣକୁ ତ୍ୱରାନ୍ୱିତ କରିବା ପାଇଁ ପ୍ରତ୍ୟେକ ବ୍ଲକ୍‌ରେ ରହିଥିବା ଦୁଇଟି ବିକ୍ରୟ କେନ୍ଦ୍ର ସହ ବନ୍ୟା କ୍ଷତିଗ୍ରସ୍ତ ଅଞ୍ଚଳମାନଙ୍କରେ ଆଉ ଅଧିକ ଦୁଇରୁ ତିନୋଟି ସ୍ୱତନ୍ତ୍ର ବିହନ ବିକ୍ରୟ କେନ୍ଦ୍ର ଖୋଲାଯାଉଛି ।

ଉନ୍ନତ ବିହନ ଛଡ଼ା ଚାଷ ପାଇଁ ଆବଶ୍ୟକ ହେଉଥିବା ରାସାୟନିକ ସାର ଓ ପୋକମରା ଔଷଧ ଆଦିର ଯୋଗାଣ ମଧ୍ୟ ବୃଦ୍ଧି କରାଯାଇଛି । ଗତବର୍ଷ ଗଞ୍ଜାମ ଜିଲ୍ଲାର ଚାଷୀମାନେ ମାତ୍ର ୬,୩୫୭ ମେଟ୍ରିକ୍ ଟନ୍ ସାର ଯୋଗାଇ ଦେବାର ବ୍ୟବସ୍ଥା ହୋଇଛି । ଫଳରେ ଚାଷୀମାନେ ସେମାନଙ୍କ ଚାହିଦା ଅନୁସାରେ ଠିକଣା ସମୟରେ ସାର ଓ ପୋକମରା ଔଷଧ ପାଇ ପାରିବେ । ଏଥିନିମନ୍ତେ ପ୍ରତ୍ୟେକ ବ୍ଲକ୍ ସ୍ଥିତ ୨ଟି ସାର ବିକ୍ରୟ କେନ୍ଦ୍ର ସମେତ ଜିଲ୍ଲାରେ ମୋଟ୍ ୧,୩୫୨ଟି ଏଭଳି କେନ୍ଦ୍ର ଖୋଲାଯାଇଛି ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ନଭେମ୍ବର ମାସ ପ୍ରଥମ ସପ୍ତାହରେ ଗଞ୍ଜାମ ଜିଲ୍ଲାରେ ପ୍ରଳୟଙ୍କରୀ ବନ୍ୟା ଫଳରେ ଜିଲ୍ଲାର ପ୍ରାୟ ୨୯ଟି ବ୍ଲକ୍‌ର ମୋଟ୍ ୧ ଲକ୍ଷ ୮୨ ହଜାର ହେକ୍ଟର ଜମିର ଫସଲ କ୍ଷତିଗ୍ରସ୍ତ ହୋଇଛି, ଯାହା ମଧ୍ୟରେ କେବଳ ଧାନଜମିର ଆୟତନ ୧ ଲକ୍ଷ ୭୦ ହଜାର ହେକ୍ଟରରୁ ଊର୍ଦ୍ଧ୍ୱ । ଏହା ବ୍ୟତୀତ ୨୬ ହଜାରରୁ ଊର୍ଦ୍ଧ୍ୱ ହେକ୍ଟର ଜମି ବାଲିଚର ହୋଇଯାଇଛି । ବନ୍ୟା ପରେ ପରେ ରାଜ୍ୟ କୃଷି ଓ ସମବାୟ ମନ୍ତ୍ରୀ ଶ୍ରୀ ଜଗନ୍ନାଥ ମଲ୍ଲିକ କୃଷି ନିର୍ଦ୍ଦେଶକ ଓ ବିଭିନ୍ନ ବିଭାଗୀୟ ଅଧିକାରୀଙ୍କ ଗହଣରେ ବନ୍ୟାଞ୍ଚଳ ପରିଦର୍ଶନ କରି ବନ୍ୟାଜନିତ କ୍ଷୟକ୍ଷତି ଅନୁଧ୍ୟାନ କରିଥିଲେ ଏବଂ ତାଙ୍କ ପରାମର୍ଶ କ୍ରମେ କ୍ଷତିଗ୍ରସ୍ତ ଅଞ୍ଚଳ ପାଇଁ କୃଷି ବିଭାଗ ପକ୍ଷରୁ ଏକ ବିଶେଷ ରବି କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଛି । ଏହାକୁ ସଫଳତାର ସହ କାର୍ଯ୍ୟକାରୀ କରିବା ଦିଗରେ ସରକାର ସର୍ବାଧିକ ଗୁରୁତ୍ୱ ଆରୋପ କରିଛନ୍ତି । ଏହା ଫଳରେ ବନ୍ୟାଜନିତ କ୍ଷୟକ୍ଷତି କେତେକାଂଶରେ ଭରଣା ହୋଇପାରିବା ସଙ୍ଗେ ସଙ୍ଗେ କ୍ଷତିଗ୍ରସ୍ତ ଚାଷୀଙ୍କ ମନୋବଳକୁ ଅତୁଟ ରଖିବାରେ ବିଶେଷ ସହାୟକ ହୋଇପାରିବ ବୋଲି ସରକାର ଆଶା କରନ୍ତି ।

## ରାଜ୍ୟରେ ବ୍ୟାପକ ନିଯୁକ୍ତି ସୃଷ୍ଟି ପାଇଁ ସ୍ୱ ଅଭିଯାନ ଆରମ୍ଭ ହେବ

ରାଜ୍ୟରେ ବେକାରୀ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ବ୍ୟା
ନିଯୁକ୍ତି ସୃଷ୍ଟି କରିବାକୁ ରାଜ୍ୟ ସରକାର ସୁଚିନ୍ତିତ ଯୋଜନା ପ୍ର
କରୁଛନ୍ତି ।

ସଙ୍ଗଠିତ କ୍ଷେତ୍ରରେ ଅଧିକ ନିଯୁକ୍ତି ସୁଯୋଗ ସୃଷ୍ଟି କ
ସମ୍ପର୍କରେ ସଚିବାଳୟଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନା
ଏକ ବୈଠକରେ ଏ ସମ୍ପର୍କରେ ସବିସ୍ତୃତ ସମୀକ୍ଷା କରିଥି
ଏହି ସମୀକ୍ଷାରୁ ଜଣାପଡ଼ିଛି ଯେ ଚଳିତ ବର୍ଷ ରାଜ୍ୟରେ ୧୦
ଶିକ୍ଷା କର୍ମୀ ଓ ୮,୦୦୦ ଶିକ୍ଷା ସେବକ ନିଯୁକ୍ତି କରିବା ପାଇଁ ପ୍ର
ଯୋଜନା କାର୍ଯ୍ୟକାରୀ କରାଯିବ । ଗ୍ରାମାଞ୍ଚଳରେ ପ୍ରାଥ
ଶିକ୍ଷାକୁ ଅଧିକ ବ୍ୟାପକ କରିବା ପାଇଁ ପ୍ରତି ଗ୍ରାମପଞ୍ଚାୟ
ଦୁଇଜଣ କରି ଶିକ୍ଷା ସେବକ ନିଯୁକ୍ତି କରିବା ପାଇଁ ରାଜ୍ୟ ସର
ନିଷ୍ପତ୍ତି ଗ୍ରହଣ କରିଛନ୍ତି । ଏହା ଫଳରେ ପ୍ରାୟ ୮,୦୦୦
ସେବକ ସମଗ୍ର ରାଜ୍ୟରେ ନିଯୁକ୍ତି ପାଇବେ । ସେମାନେ
ପ୍ରାଥମିକ ସ୍ତରରେ ଦୈନିକ ୪ ଘଣ୍ଟା କରି ଶିକ୍ଷାଦାନ କରି
ସେଥିପାଇଁ ସେମାନଙ୍କୁ ମାସିକ ୪୦୦ ଟଙ୍କା ଅନୁଦାନ ମି
ସେହିପରି ଭାବରେ ଶିକ୍ଷାକର୍ମୀ ଭାବେ ନିଯୁକ୍ତି ପାଉ
ଯୁବକମାନଙ୍କୁ ପ୍ରଥମ ଦୁଇବର୍ଷ ପାଇଁ ୪୦୦ ଟଙ୍କା ଓ ପରବ
ବର୍ଷରେ ୬୦୦ ଟଙ୍କା କରି ମାସିକ ବେତନ ଦିଆଯିବା
ନିୟମିତ ଭାବରେ ପ୍ରାଥମିକ ଶିକ୍ଷକ ଭାବେ ନିଯୁକ୍ତି ଦିଆ
ଚଳିତ ବର୍ଷ ଆଉ ୩,୦୦୦ ପ୍ରାଥମିକ ଶିକ୍ଷକ ନିଯୁକ୍ତି ଦିଆଯିବ
ବେକାର ତାଲିମପ୍ରାପ୍ତ ଗ୍ରାଜୁଏଟ୍‌ମାନଙ୍କୁ ନିଯୁକ୍ତି ସମସ୍ୟା
କରିବା ପାଇଁ ଉଚ୍ଚ ପ୍ରାଥମିକ ସ୍କୁଲର ପ୍ରଧାନ ଶିକ୍ଷକ ପ
ସେମାନଙ୍କୁ ଚାକିରୀ ଦିଆଯିବା ପାଇଁ ସରକାର ବିଚାର କ
ଏବଂ ଶିକ୍ଷା ବିଭାଗ ଅଧୀନସ୍ଥ ପଦଗୁଡ଼ିକ ପୂରଣ କରିବା
ଜିଲ୍ଲାସ୍ତରୀୟ ସିଲେକ୍‌ସନ୍ ବୋର୍ଡ଼ ଗଠନ କରିବାକୁ ମୁଖ୍ୟ
ନିର୍ଦ୍ଦେଶ ଦେଇଛନ୍ତି ।

ସେହିପରି ଭାବରେ ସ୍ୱାସ୍ଥ୍ୟ ବିଭାଗରେ ଆସନ୍ତା ଡିସେ
ମାସ ସୁଦ୍ଧା ଖାଲି ପଡ଼ିଥିବା ୬୯୪ଟି ଓ ଫେବୃଆରୀ ମାସ
୩,୧୩୪ଟି ପଦ ପୂରଣ କରାଯିବା ପାଇଁ ସରକାର ନିଷ୍ପତ୍ତି ଗ୍ର
କରିଛନ୍ତି । ନୂତନ ଭାବରେ ଗଢି ଉଠିଥିବା ପ୍ରାଥମିକ ସ୍ୱାସ୍ଥ୍ୟ
ଓ ଅତିରିକ୍ତ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରମାନଙ୍କ ପାଇଁ ଡା
ଫାର୍ମାସିଷ୍ଟ, ଏ: ଏନ୍: ଏମ୍: ଓ ଅନ୍ୟାନ୍ୟ ଚତୁର୍ଥ ଶ୍ରେଣୀ କ
ପାଇଁ ମୋଟ୍ ୧୪୯୮ଟି ପୋଷ୍ଟ ସରକାରଙ୍କ ମଞ୍ଜୁରୀ ଲ
କରିଛି । ଏହି ସବୁ 'ଚାକିରୀଗୁଡ଼ିକରେ ତାଲିମପ୍ରାପ୍ତ ଯୁବକମା
ଗ୍ରହଣ କରାଯିବ ଏବଂ ଜିଲ୍ଲାୱାରୀ ତାଲିମ ପ୍ରଦାନ ପାଇଁ ବ୍ୟ
କରାଯିବ ।

ରାଜ୍ୟସରକାର ଶକ୍ତି ବିଭାଗ ଅଧୀନରେ ଥିବା ଓଡ଼ିଶା ରା
ବିଦ୍ୟୁତ୍ ବୋର୍ଡ଼ରେ ୯,୦୦୦ଟି ଗ୍ରାମର ବିଦ୍ୟୁତ୍‌କରଣ ପାଇଁ ଚ
ବର୍ଷ ୧,୦୦୦ ଲୋକଙ୍କୁ ନିଯୁକ୍ତି ଦେବା ସ୍ଥିର କରି
ଲାଇସେନ୍ସପ୍ରାପ୍ତ ଇଞ୍ଜିନିୟରମାନଙ୍କୁ ଅଗ୍ରାଧିକାର ଭିତ୍ତିରେ ନି
ଦେବା ପାଇଁ ଏବଂ ପୂର୍ବରୁ କାର୍ଯ୍ୟ କରୁଥିବା ଏନ୍: ଏମ୍:
ମାନଙ୍କୁ ନିୟମିତ କରାଯିବା ପାଇଁ ମୁଖ୍ୟମନ୍ତ୍ରୀ ସ
କର୍ମକର୍ତ୍ତାମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ଏ କ୍ଷେତ୍ରରେ ୧,୦୦୦
ଏନ୍: ଏମ୍: ଆର୍: ସ୍ଥାୟୀ ନିଯୁକ୍ତି ପାଇବେ ଏବଂ ଅଧିକ ୩ ହ

ଯୁବକଙ୍କୁ ଏନ୍‌: ଏମ୍‌: ଆର୍‌: ଗୁକିରିରେ ରଖାଯାଇ ପାରିବ । ସେହିପରି ଭାବରେ ନିର୍ମାଣାଧୀନ ଇବ୍ ତାପଜ ବିଦ୍ୟୁତ୍ କେନ୍ଦ୍ର ପାଇଁ ମୋଟ ଏକ ହଜାର ଲୋକଙ୍କୁ ଗୁକିରି ଯୋଗାଇ ଦିଆଯାଇ ପାରିବ । ରାଜ୍ୟ ସରକାର ଶିକ୍ଷ ବିଭାଗ ଅଧୀନରେ ଥିବା ବିଭିନ୍ନ କର୍ପୋରେସନ୍ ଓ ଶିକ୍ଷ ନିର୍ଦ୍ଦେଶାଳୟରେ ଖାଲିଥିବା ମୋଟ୍ ୧,୦୭୯ଟି ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଶ୍ରେଣୀ ପଦ ପାଇଁ ମଧ ନିଯୁକ୍ତି ଯୋଗାଇ ଦେବେ ।

ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ଆସ ନିଯୁକ୍ତି କ୍ଷେତ୍ରରେ ସର୍ବାଧିକ ଗୁରୁତ୍ୱ ଆରୋପ କରି ରାଜ୍ୟର ୫୦,୦୦୦ ଜଣ ଯୁବକଙ୍କୁ ଆସ ନିଯୁକ୍ତି ମାଧ୍ୟମରେ କାମଧନ୍ଦା ଯୋଗାଇ ଦେବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି । ବିଭିନ୍ନ କର୍ପୋରେସନ୍‌ମାନଙ୍କରେ ଅଧିକ ସଂଖ୍ୟକ କର୍ମଚାରୀ କାର୍ଯ୍ୟରତ ଥିବାବେଳେ ନିଯୁକ୍ତି ଦେବା ସମୟରେ ୱାର୍କ ଲୋଡ୍‌କୁ ବିଚାର କରିବା ପାଇଁ ସେ ଗୁରୁତ୍ୱ ଦେଇଥିଲେ ।

ଏହି ବୈଠକରେ ଜଳସେଚନ ଓ ସଂସଦୀୟ ବ୍ୟାପାର ମନ୍ତ୍ରୀ ଶ୍ରୀ ବିଜୟ ମହାପାତ୍ର, ଶିକ୍ଷା ମନ୍ତ୍ରୀ ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀ, ଶିକ୍ଷା ରାଷ୍ଟ୍ରମନ୍ତ୍ରୀ ଡକ୍ଟର ଶ୍ରୀମତୀ କମଳା ଦାସ, ମୁଖ୍ୟ ଶାସନ ସଚିବ ଶ୍ରୀ ରମାକାନ୍ତ ମିଶ୍ର, ଉନ୍ନୟନ କମିଶନର ଶ୍ରୀ ସୁନ୍ଦରରାଜନ୍, ମୁଖ୍ୟମନ୍ତ୍ରୀଙ୍କ ପ୍ରମୁଖ ସଚିବ ଶ୍ରୀ ପ୍ୟାରୀମୋହନ ମହାପାତ୍ରଙ୍କ ସମେତ ସମ୍ପୃକ୍ତ ବିଭାଗର ଶାସନ ସଚିବ ଓ ପଦସ୍ଥ କର୍ମକର୍ତ୍ତାମାନେ ଉପସ୍ଥିତ ରହି ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ଅଭିଜ୍ଞ ମହିଳା କ୍ରୀଡ଼ାବିତ୍‌ଙ୍କ ଉପରେ ପ୍ରାମାଣିକ ଚଳଚ୍ଚିତ୍ର ନିର୍ମାଣ

ରାଜ୍ୟରେ ଖ୍ୟାତି ଅର୍ଜନ କରିଥିବା ମହିଳା କ୍ରୀଡ଼ାବିତ୍‌ମାନଙ୍କ ଉପରେ ଓଡ଼ିଶା ସରକାରଙ୍କ ପକ୍ଷରୁ ଏକ ପ୍ରାମାଣିକ ଚଳଚ୍ଚିତ୍ର ନିର୍ମାଣ କରାଯିବ ବୋଲି ରାଜ୍ୟ କ୍ରୀଡ଼ା, ପର୍ଯ୍ୟଟନ ଓ ସଂସ୍କୃତି ଏବଂ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ପ୍ରକାଶ କରିଛନ୍ତି ।

ଓଡ଼ିଶା ରାଜ କ୍ରୀଡ଼ା ପରିଷଦ ପକ୍ଷରୁ ସ୍ଥାନୀୟ ସୂଚନା ଭବନଠାରେ ବେଜିଂସ୍ଥ ଏକାଦଶ ଏସୀୟ କ୍ରୀଡ଼ା ପ୍ରତିଯୋଗିତାରେ ରୌପ୍ୟ ପଦକ ହାସଲ କରିଥିବା କୁମାରୀ ପ୍ରଣତି ମିଶ୍ର ଏବଂ ଅନ୍ୟ ଦୁଇଜଣ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ କ୍ରୀଡ଼ାବିତ୍ କୁମାରୀ ରଚିତା ପଣ୍ଡା ଓ ଶ୍ରୀ ପ୍ରସନ୍ନ କୁମାର ଦାସଙ୍କୁ ରାଜସ୍ତରୀୟ ସମ୍ବର୍ଦ୍ଧନା ଉତ୍ସବରେ ମୁଖ୍ୟ ଅତିଥି ରୂପେ ଯୋଗଦେଇ ମନ୍ତ୍ରୀ ଶ୍ରୀ କର କହିଲେ ଯେ ନିର୍ଭୀକତା ହିଁ ପ୍ରତ୍ୟେକ ପ୍ରତିଭାର ବଡ଼ ଉପାଦାନ। ରାଜ୍ୟ ସରକାର ଅନ୍ତର୍ନିହିତ କଳା ଓ ପ୍ରତିଭାର ବିକାଶ ପାଇଁ ଛାତ୍ରାବାସ ସ୍ଥାପନ କରି ଏଥିରେ ରହୁଥିବା କ୍ରୀଡ଼ାବିତ୍‌ମାନଙ୍କୁ ବର୍ଦ୍ଧିତ ହାରରେ ସାହାଯ୍ୟ ପ୍ରଦାନ କରୁଛନ୍ତି । ଏହା ଫଳରେ ରାଜ୍ୟରେ କ୍ରୀଡ଼ା କ୍ଷେତ୍ରରେ ଏକ ନୂତନ ବାତାବରଣ ସୃଷ୍ଟି ହେବା ସଙ୍ଗେ ସଙ୍ଗେ ପ୍ରତିଭାବାନ କ୍ରୀଡ଼ା ପ୍ରେମୀମାନଙ୍କୁ ସୃଷ୍ଟି କରିବାରେ ସହାୟକ ହୋଇଛି । ସେ କହିଲେ ଯେ ଗାଁ ଗହଳିରେ ପ୍ରଚଳିତ ଥିବା କବାଡ଼ି, ହକି, ଭଲିବଲ୍ ଆଦି ଖେଳକୁ ଅଧିକ ପ୍ରୋତ୍ସାହନ ଦିଆଯାଉ ଉନ୍ନତ ଖେଳାଳୀ ସୃଷ୍ଟି କରାଯାଉଛି । ଖେଳକୁଦର ପ୍ରସାର ପାଇଁ ରାଜ୍ୟ ସରକାର ନଅଲକ୍ଷ ଟଙ୍କାର ଆର୍ଥିକ ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ରାଜଧାନୀସ୍ଥିତ କଳିଙ୍ଗ ଷ୍ଟାଡିୟମକୁ ଆନ୍ତର୍ଜାତିକ ଷ୍ଟାଡିୟମରେ ପରିଣତ କରି ଏଠାରେ ସିନ୍ଥେଟିକ୍ ଟ୍ରାକ୍ ୧୯୯୨ ମସିହା ମଇ ମାସ ସୁଦ୍ଧା ଶେଷ କରିବାକୁ ନିଷ୍ପତ୍ତି ନେଇଛନ୍ତି ବୋଲି ଶ୍ରୀ କର ପ୍ରକାଶ କରିଥିଲେ । ଶ୍ରୀ କର କହିଲେ ଯେ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ସହଯୋଗରେ କୃତୀ ତଥା ପ୍ରତିଭାବାନ ଖେଳାଳୀମାନଙ୍କୁ ସମସ୍ତ ପ୍ରକାର ସୁବିଧା ସୁଯୋଗ ଯୋଗାଇ ଦେବା ପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ ଉଦ୍ୟମ ଅବ୍ୟାହତ ରହିଛି । ସର୍ବଭାରତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ଖ୍ୟାତି ଅର୍ଜନ କରିଥିବା ଓଡ଼ିଶାର କୃତୀ କ୍ରୀଡ଼ାବିତ୍‌ମାନଙ୍କୁ ଉଚ୍ଚତର ତାଲିମ୍ ପାଇଁ ସାହାଯ୍ୟ ଯୋଗାଇ ଦିଆଯିବା ସଙ୍ଗେ ସଙ୍ଗେ ସେମାନଙ୍କୁ ଆଗୁଆ କୋଚିଂ ବ୍ୟବସ୍ଥା ଯୋଗାଇ ଦେବା ପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ କୌଣସି କଟକଣା ଓ ଅର୍ଥର ଅଭାବ ରହିବ ନାହିଁ । ମନ୍ତ୍ରୀ ଶ୍ରୀ କର କହିଲେ ଯେ ପ୍ରତିଭାବାନ କୃତୀ କ୍ରୀଡ଼ାବିତ୍‌ମାନଙ୍କୁ ସମ୍ବାଦପତ୍ର ତଥା ଗଣମାଧ୍ୟମ ଜରିଆରେ ଅଧିକ ଉତ୍ସାହିତ କରିବା ଦରକାର । ଯଦ୍ୱାରା ସେମାନଙ୍କର ଅନ୍ତର୍ନିହିତ କଳା ନିର୍ଭୀକ ଭାବେ ପରିସ୍ଫୁଟନ ହୋଇପାରିବ । କୁସ୍ତି କସରତରେ କୃତିତ୍ୱ ଅର୍ଜନ କରିଥିବା ୫ ଜଣ ସବ୍ ଜୁନିୟର ଖେଳାଳୀଙ୍କୁ ଅଧିକ କୋଚିଂ ଦେବା ନିମନ୍ତେ ୨୧ ଦିନ ପାଇଁ ବାଙ୍ଗାଲୋର ପଠାଯିବ ବୋଲି ମନ୍ତ୍ରୀ ଶ୍ରୀ କର କହିଥିଲେ ।

ଏହି ଉତ୍ସବରେ କ୍ରୀଡ଼ା ନିର୍ଦ୍ଦେଶକ ଶ୍ରୀ ଅନାଦି ସାହୁ ଅଧ୍ୟକ୍ଷତା କରି କହିଲେ ଯେ କ୍ରୀଡ଼ାବିତ୍‌ମାନଙ୍କୁ ବିଜ୍ଞାନ ସମ୍ମତ କ୍ରୀଡ଼ା କୌଶଳ ଯୋଗାଇଦେଲେ, ସେମାନେ ନିଶ୍ଚିତ ରୂପେ ରାଜ୍ୟ ତଥା ଦେଶ ପାଇଁ ଗୌରବ ଆଣିବାରେ ସହାୟକ ହୋଇପାରିବେ ।

ଏହି ଉତ୍ସବରେ ମନ୍ତ୍ରୀ ଶ୍ରୀ କର ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ କ୍ରୀଡ଼ାବିତ୍ କୁମାରୀ ପ୍ରଣତି ମିଶ୍ରଙ୍କୁ ନଗଦ ୨୫ ହଜାର ଟଙ୍କା ଓ ମାନପତ୍ର ସହ ସମ୍ମାନିତ କରିବା ସଙ୍ଗେ ସଙ୍ଗେ କୁମାରୀ ରଚିତା ପଣ୍ଡାଙ୍କୁ ଉପଢୌକନ ଓ ମାନପତ୍ର ପ୍ରଦାନ କରିଥିଲେ । କୃତୀ କ୍ରୀଡ଼ାବିତ୍ ଶ୍ରୀ ପ୍ରସନ୍ନ କୁମାର ଦାସଙ୍କୁ ସମ୍ମାନିତ କରାଯାଇଥିଲେ ହେଁ ସେ ଏହି ଉତ୍ସବରେ ଯୋଗ ଦେଇପାରି ନଥିଲେ ।

ଶେଷରେ କ୍ରୀଡ଼ା ବିଭାଗ ଉପନିର୍ଦ୍ଦେଶକ ଶ୍ରୀ ଇନ୍ଦ୍ରମଣି ସାମନ୍ତରାୟ ଧନ୍ୟବାଦ ଅର୍ପଣ କରିଥିଲେ ।

## ବିଦ୍ୟାଳୟର ଉନ୍ନତି ନିମନ୍ତେ ସର୍ବଦା ସରକାରୀ ସାହାଯ୍ୟ ଉପରେ ନିର୍ଭର କରିବା ଅନୁଚିତ

—ଶିକ୍ଷା ରାଷ୍ଟ୍ରମନ୍ତ୍ରୀ ଡାଃ(ଶ୍ରୀମତୀ) ଦାସ

ଭଦ୍ରଖ ନିକଟବର୍ତ୍ତୀ ସାହାଡ଼ା ଗ୍ରାମରେ ଏକ ବର୍ଣ୍ଣାଢ୍ୟ ପରିବେଶ ମଧ୍ୟରେ ଅନୁଷ୍ଠିତ ଲାଲାଜୀ ଉଚ୍ଚ ଇଂରାଜୀ ବିଦ୍ୟାଳୟର ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ରୂପେ ଯୋଗଦେଇ ଶିକ୍ଷା ରାଷ୍ଟ୍ରମନ୍ତ୍ରୀ ଡାଃ(ଶ୍ରୀମତୀ) କମଳା ଦାସ ନାରୀ ଶିକ୍ଷାର ପ୍ରସାର ଉପରେ ଗୁରୁତ୍ୱ ଆରୋପ କରିଥିଲେ । ସାହାଡ଼ା ଗ୍ରାମ ପଞ୍ଚାୟତ ଭଳି ଏକ ଅନୁନ୍ନତ ଅଞ୍ଚଳରେ ସ୍ଥାନୀୟ ଜନସାଧାରଣଙ୍କ ସହଯୋଗରେ ଗୋଟିଏ ବାଳିକା ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପନ କରାଯାଇ

ନାରୀ ଶିକ୍ଷାର ଉନ୍ନତି କଳ୍ପେ ଯେଉଁ ଉଦ୍ୟମ ହେଉଛି, ସେଥିପାଇଁ ଶିକ୍ଷା ରାଷ୍ଟ୍ରମନ୍ତ୍ରୀ ଜନସାଧାରଣଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଇଥିଲେ । ଜନସଂଖ୍ୟା ଅନୁପାତରେ ଆମ ଦେଶର ନାରୀ ସଂଖ୍ୟା ଅର୍ଦ୍ଧେକ ହେଲେ ମଧ୍ୟ ସେମାନେ ଆଜି ସୁଦ୍ଧା ସମାଜରେ ଅବହେଳିତ ଅବସ୍ଥାରେ ଅଛନ୍ତି । ଶିକ୍ଷା କ୍ଷେତ୍ରରେ ମଧ୍ୟ ସେମାନେ ବହୁ ନିମ୍ନରେ ଅଛନ୍ତି । ତେଣୁ ନାରୀ ସମାଜର ସର୍ବାଙ୍ଗୀନ ବିକାଶ ନିମନ୍ତେ ଶିକ୍ଷା ଏକାନ୍ତ ଅପରିହାର୍ଯ୍ୟ ହୋଇପଡ଼ିଛି । ସେମାନେ ଶିକ୍ଷିତା ହେଲେ ଭବିଷ୍ୟତରେ ଏକ ଶୃଙ୍ଖଳିତ ସମାଜ ରୂପେ ଆମେ ମୁଣ୍ଡ ଟେକିପାରିବା – ଏଥିରେ ଦ୍ୱିମତ ନାହିଁ । ଏ ଦିଗରେ ସରକାର ଯଥାସାଧ୍ୟ ପ୍ରୋତ୍ସାହନ ଦେଉଛନ୍ତି । କିନ୍ତୁ ରାଜ୍ୟର ସୀମିତ ସମ୍ବଳ ଦୃଷ୍ଟିରୁ ବିଦ୍ୟାଳୟମାନଙ୍କର ସମସ୍ତ ଅଭାବ ପୂରଣ କରିବା ସବୁ କ୍ଷେତ୍ରରେ ସମ୍ଭବ ନୁହେଁ । ତଥାପି ଉକ୍ତ ଅନୁଷ୍ଠାନର ଉନ୍ନତି ପାଇଁ ଯଥାଶକ୍ତି ସାହାଯ୍ୟ କରିବାକୁ ଶ୍ରୀମତୀ ଦାସ ପ୍ରତିଶ୍ରୁତି ଦେଇଥିଲେ । ଶେଷରେ ଶିକ୍ଷା ରାଷ୍ଟ୍ରମନ୍ତ୍ରୀ ବିଭିନ୍ନ ଦିଗରେ ଦକ୍ଷତା ହାସଲ କରିଥିବା କୃତୀ ଛାତ୍ରୀମାନଙ୍କୁ ପୁରସ୍କାର ବିତରଣ କରିଥିଲେ ।

ଶ୍ରମ ଓ ନିଯୁକ୍ତି ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ସାମଲ ଏହି ଉତ୍ସବରେ ମୁଖ୍ୟବକ୍ତା ରୂପେ ଯୋଗଦେଇ ତାଙ୍କ ଅଭିଭାଷଣରେ ସ୍ଥାନୀୟ ସମସ୍ୟାର ସମାଧାନ ଓ ଉକ୍ତ ଅଞ୍ଚଳର ଉନ୍ନତି ପାଇଁ ଜନ ସହଯୋଗ କାମନା କରିଥିଲେ । ଆସନ୍ତା ବର୍ଷ ଏକ ଆୟୁର୍ବେଦ ଚିକିତ୍ସାଳୟ ପ୍ରତିଷ୍ଠା ପାଇଁ ମଧ୍ୟ ଶ୍ରମ ରାଷ୍ଟ୍ରମନ୍ତ୍ରୀ ପ୍ରତିଶ୍ରୁତି ଦେଇଥିଲେ । ଉତ୍ସବ ଶେଷରେ ମନ୍ତ୍ରୀ ମହୋଦୟଙ୍କ ଆତ୍ମ ନିଯୁକ୍ତି ଯୋଜନାର ଋଣ ପାଶ୍ ବହି, ବାର୍ଦ୍ଧକ୍ୟ ଭତ୍ତା ଓ ଋଣ ଛାଡ଼ ସାର୍ଟିଫିକେଟ୍ ହିତାଧିକାରୀମାନଙ୍କୁ ବଣ୍ଟନ କରିଥିଲେ ।

## ସଙ୍ଗୀତ ଏକାଡେମୀ ପୁରସ୍କାର ବୃଦ୍ଧି ସହ "ଭଞ୍ଜ ପୁରସ୍କାର" ଦିଆଯିବ

–ସଂସ୍କୃତି ମନ୍ତ୍ରୀ ଶ୍ରୀ କର

ରାଜ୍ୟରେ ଶିଳ୍ପୀ, କଳାକାର ଓ ସାଧକମାନଙ୍କୁ ଉତ୍ସାହିତ ତଥା ସମ୍ମାନିତ କରିବା ପାଇଁ ସଂସ୍କୃତି ବିଭାଗ ପକ୍ଷରୁ ବ୍ୟାପକ ପଦକ୍ଷେପ ଗ୍ରହଣ କରାଯାଉଛି । ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର ପୁରସ୍କାର ବାବଦ ଅର୍ଥ ୫ ହଜାର ଟଙ୍କାରୁ ୧୦ ହଜାର ଟଙ୍କାକୁ ବୃଦ୍ଧି କରାଯିବା ସଙ୍ଗେ ସଙ୍ଗେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ନାମରେ ପ୍ରତିବର୍ଷ ୨୫ ହଜାର ଟଙ୍କାର ଏକ ସ୍ୱତନ୍ତ୍ର ପୁରସ୍କାର ପ୍ରଦାନ କରାଯିବ ବୋଲି କ୍ରୀଡ଼ା, ସଂସ୍କୃତି ଓ ପର୍ଯ୍ୟଟନ ଏବଂ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ଘୋଷଣା କରିଛନ୍ତି ।

ସମ୍ପ୍ରତି ଏଠାରେ ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ ଛାତ୍ର ସଂସଦର ଏକାଦଶ ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ରୂପେ ଯୋଗଦେଇ ମନ୍ତ୍ରୀ ଶ୍ରୀ କର କହିଲେ ଯେ ରାଜ୍ୟର ବୟୋଜ୍ୟେଷ୍ଠ ବିଶିଷ୍ଟ କଳାକାରମାନଙ୍କର ଜୀବନୀ ଓ କୃତୀ ଉପରେ ସଂସ୍କୃତି ବିଭାଗ ପକ୍ଷରୁ ଭିଡିଓ କ୍ୟାସେଟ୍ ପ୍ରସ୍ତୁତ କରାଯିବ । ତାଙ୍କ ବିଭାଗ ପକ୍ଷରୁ ଆୟୋଜିତ ହେଉଥିବା କୋଣାର୍କ ଉତ୍ସବରେ ରାଜ୍ୟର ସମସ୍ତ ପ୍ରତିଭାବାନ କଳାକାରମାନଙ୍କୁ ଅଂଶ ଗ୍ରହଣର ସୁଯୋଗ ମିଳିବ । ପ୍ରତ୍ୟେକ ଜିଲ୍ଲାରେ ସାଂସ୍କୃତିକ କେନ୍ଦ୍ର ପ୍ରତିଷ୍ଠା କରାଯାଇ ଓଡ଼ିଶୀ ସଙ୍ଗୀତ ଓ ନୃତ୍ୟର ବିକାଶ ସାଧନ କରାଯିବ ।

ଶ୍ରୀ କର କହିଲେ ଯେ ୨୦ ଲକ୍ଷ ଟଙ୍କା ଅଟକଳରେ ଏକ କଳାକାର ସାହାଯ୍ୟ ପାଣ୍ଠି ଖୋଲିବାକୁ ରାଜ୍ୟ ସରକାର ବ୍ୟବସ୍ଥା କରିଛନ୍ତି । ପ୍ରଥମ ପର୍ଯ୍ୟାୟରେ ଏ ବାବଦକୁ ୬ ଲକ୍ଷ ଟଙ୍କା ବରାଦ କରାଯାଇ ସାରିଛି । କଳାକାରମାନଙ୍କୁ ପ୍ରୋତ୍ସାହନ ଦେବା କ୍ଷେତ୍ରରେ ଅର୍ଥର ଅଭାବ ପ୍ରତିବନ୍ଧକ ସୃଷ୍ଟି କରିବ ନାହିଁ ବୋଲି ସେ ଆଶା ପୋଷଣ କରିଥିଲେ । ସଙ୍ଗୀତ ମହାବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କର ବିଭିନ୍ନ ଦାବୀ ସମ୍ପର୍କରେ ଉଲ୍ଲେଖ କରି ସଂସ୍କୃତି ମନ୍ତ୍ରୀ କହିଲେ ଯେ କଳା ଓ ସାଂସ୍କୃତିକ ଅନୁଷ୍ଠାନଗୁଡ଼ିକୁ ସରକାରୀ ଅନୁଦାନ ପରିମାଣ ବୃଦ୍ଧି କରିବା ପାଇଁ ସରକାର ବିଚାର କରୁଛନ୍ତି । ପ୍ରତ୍ୟେକ ସ୍କୁଲ ଓ କଲେଜରେ ସଙ୍ଗୀତ ତଥା ନୃତ୍ୟ ବିଭାଗ ଖୋଲିବା ସମ୍ପର୍କରେ ସେ ଶିକ୍ଷା ମନ୍ତ୍ରୀଙ୍କ ସହିତ ଆଲୋଚନା କରିବେ । ସଙ୍ଗୀତ ମହାବିଦ୍ୟାଳୟର ବିଭିନ୍ନ ଛୋଟ ବଡ଼ ଅଭାବ ଅସୁବିଧା ଖୁବ୍ ଶୀଘ୍ର ଦୂର କରାଯିବ ବୋଲି ଶ୍ରୀ କର ପ୍ରତିଶ୍ରୁତି ଦେଇଥିଲେ ।

ମହାବିଦ୍ୟାଳୟର ଅଧ୍ୟକ୍ଷ ଡକ୍ଟର ଦାମୋଦର ହୋତାଙ୍କ ପୌରୋହିତ୍ୟରେ ଅନୁଷ୍ଠିତ ଏହି ଉତ୍ସବରେ ବିଶିଷ୍ଟ ଓଡ଼ିଶୀ ସଙ୍ଗୀତଜ୍ଞ ପଣ୍ଡିତ ମାର୍କଣ୍ଡେୟ ମହାପାତ୍ର ସମ୍ମାନିତ ଅତିଥି ଓ ସାମ୍ବାଦିକ ଶ୍ରୀ ପ୍ରଦୋଷ ପଟ୍ଟନାୟକ ମୁଖ୍ୟବକ୍ତା ରୂପେ ଯୋଗ ଦେଇଥିଲେ । ମହାବିଦ୍ୟାଳୟ ଛାତ୍ର ସଂସଦର ସଭାପତି ଶ୍ରୀ କିଶୋର କୁମାର ରାଉତ, ଉପ ସଭାପତି ଶ୍ରୀ ମନୋଜ କୁମାର ତ୍ରିପାଠୀ ଓ ସମ୍ପାଦକ ଶ୍ରୀ ଜିତେନ୍ଦ୍ର ପଟ୍ଟନାୟକ ସେମାନଙ୍କ ଭାଷଣରେ କଲେଜର ବିଭିନ୍ନ ସମସ୍ୟା ପ୍ରତି ମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିବା ସଙ୍ଗେ ସଙ୍ଗେ ସେ ସବୁର ପ୍ରତିକାର ପାଇଁ ଦାବୀ କରିଥିଲେ । ସଙ୍ଗୀତ ମହାବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହେଉଥିବା କଳାକାରମାନଙ୍କ ପାଇଁ ସ୍ଥାୟୀ ନିଯୁକ୍ତି ବ୍ୟବସ୍ଥା, ଛାତ୍ରଛାତ୍ରୀମାନଙ୍କ ଲାଗି ସ୍ଥାୟୀ ଛାତ୍ରାବାସ ଓ ଛାତ୍ରୀ ନିବାସ ନିର୍ମାଣ, ବିଭିନ୍ନ ବିଭାଗରେ ଖାଲି ପଡ଼ିଥିବା ଅଧ୍ୟାପକ ଓ ଅଧ୍ୟାପିକା ପଦବୀ ପୂରଣ କରିବା, ମାସିକ ଷ୍ଟାଇପେଣ୍ଡ ପରିମାଣ ବୃଦ୍ଧି ଏବଂ ମହାବିଦ୍ୟାଳୟର ସମ୍ପ୍ରସାରଣ ପାଇଁ ସେମାନେ ଦାବୀ କରିଥିଲେ । ଶେଷରେ ଛାତ୍ର ସଂସଦର ଉପଦେଷ୍ଟା ଅଧ୍ୟାପକ ଗୁଣମଣି ଜେନା ଧନ୍ୟବାଦ ଅର୍ପଣ କରିବା ପରେ ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ମନୋଜ୍ଞ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଇଥିଲା ।

## ଭାରତୀୟ ଆନ୍ତର୍ଜାତିକ ମେଳାରେ ଓଡ଼ିଶା ମଣ୍ଡପ ଉଚ୍ଚ ପ୍ରଶଂସିତ

ଚଳିତ ବର୍ଷ ଭାରତୀୟ ଆନ୍ତର୍ଜାତିକ ବାଣିଜ୍ୟ ମେଳାରେ ଖୋଲାଯାଇଥିବା ଓଡ଼ିଶା ମଣ୍ଡପ ସାଜ ସଜ୍ଜା ଓ ପ୍ରଦର୍ଶନ ଦୃଷ୍ଟିରୁ ଉଚ୍ଚ ପ୍ରଶଂସିତ ହୋଇପାରିଛି । ନଭେମ୍ବର ୧୪ ତାରୁ ୨୭ ତାରିଖ ପର୍ଯ୍ୟନ୍ତ ଚାଲିଥିବା ଏହି ମେଳାରେ ଓଡ଼ିଶା ମଣ୍ଡପକୁ କୋଣାର୍କ ପ୍ରସିଦ୍ଧ ସୂର୍ଯ୍ୟ ମନ୍ଦିର ଢାଞ୍ଚାରେ ନିର୍ମାଣ କରାଯାଇଥିଲା ଏବଂ ଏଥିରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ସମେତ ଓଡ଼ିଶା କ୍ଷୁଦ୍ର ଶିଳ୍ପ ସଂସ୍ଥା, ଚର୍ମ ନିଗମ, ହସ୍ତ ଶିଳ୍ପ ନିଗମ, ହସ୍ତତନ୍ତ ନିଗମ

ନାଲ୍‌କୋ, କୋଣାର୍କ ଟେଲିଭିଜନ, ଓଡ଼ିଶା ଟେକ୍ସଟାଇଲ୍ ମିଲ୍‌ସ, ଓଡ଼ିଶା ବୁଣାକାର ସମିତି, ଓରେଡ଼ା, ପର୍ଯ୍ୟଟନ ବିଭାଗ ପ୍ରମୁଖ ଅଂଶ ଗ୍ରହଣ କରିଥିଲେ । ଓଡ଼ିଶାର ବିଭିନ୍ନ ଶିଳ୍ପ ସଂସ୍ଥା ପକ୍ଷରୁ ଉତ୍ପାଦିତ ବସ୍ତୁ ଏହି ମଣ୍ଡପରେ ପ୍ରଦର୍ଶିତ ହୋଇଥିଲା ।

ନଭେମ୍ବର ୧୫ ତାରିଖ ଦିନ ପ୍ରଗତି ମଇଦାନ୍‌ର ଲାଲଚୌକ ରଙ୍ଗମଞ୍ଚରେ ଅନୁଷ୍ଠିତ ଓଡ଼ିଶା ଦିବସ ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ଉଦ୍‌ଘାଟନ କରିଥିଲେ । ଗଞ୍ଜାମ ଜିଲ୍ଲାର ନରେନ୍ଦ୍ରପୁର କଳା ବିକାଶ କେନ୍ଦ୍ର ପକ୍ଷରୁ ରଣପା ଓ ଚଢ଼େୟା ନୃତ୍ୟ ଓ ଭୁବନେଶ୍ୱର ଏକାମ୍ର ଥିଏଟରସ୍ ପକ୍ଷରୁ ଶ୍ରୀକୃଷ୍ଣ ରାସଲୀଳା ଓଡ଼ିଶା ଦିବସ ଉପଲକ୍ଷେ ପ୍ରଦର୍ଶିତ ହୋଇଥିଲା ଏବଂ ନୃତ୍ୟ ବିଶେଷ ଆକର୍ଷଣୀୟ ହୋଇ ପାରିଥିଲା ।

ଓଡ଼ିଶାର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା, ତ୍ରିପୁରା ମୁଖ୍ୟମନ୍ତ୍ରୀ, ଆନ୍ତର୍ଜାତିକ ବାଣିଜ୍ୟ ମେଳାର ଅଧ୍ୟକ୍ଷ ତଥା ବହୁ ବିଶିଷ୍ଟ ବ୍ୟକ୍ତି ଓଡ଼ିଶା ମଣ୍ଡପ ପରିଦର୍ଶନ କରି ଏହାର ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ ।

## ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିକୁ ଦାନ

ଗଞ୍ଜାମ ଜିଲ୍ଲାର ବନ୍ୟା ପ୍ରପୀଡ଼ିତ ଜନସାଧାରଣଙ୍କ ସାହାଯ୍ୟାର୍ଥେ କୃଷି ଓ ସମବାୟ ମନ୍ତ୍ରୀ ଶ୍ରୀ ଜଗନ୍ନାଥ ମଲ୍ଲିକ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ହାତରେ କୃଷି ଓ ସମବାୟ ବିଭାଗ ଅଧୀନସ୍ଥ ବିଭିନ୍ନ କର୍ପୋରେସନ୍‌ମାନଙ୍କ ତରଫରୁ ଏକଲକ୍ଷ ଏକାବନ ହଜାର ଟଙ୍କାର ବ୍ୟାଙ୍କ୍ ଡ୍ରାଫ୍‌ଟ ପ୍ରଦାନ କରିଛନ୍ତି । କଟକ ଅର୍ବାନ୍ ବ୍ୟାଙ୍କ୍ ୫୧ ହଜାର ଟଙ୍କା, ଭୁବନେଶ୍ୱର ଅର୍ବାନ୍ ସମବାୟ ବ୍ୟାଙ୍କ୍ ୨୧ ହଜାର ଟଙ୍କା, ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କ୍ ୫୦ ହଜାର ଟଙ୍କା, ଓଡ଼ିଶା କୃଷି ଶିଳ୍ପ ନିଗମ ୧୦ ହଜାର ଟଙ୍କା, ଓଡ଼ିଶା ରାଜ୍ୟ ସମବାୟ ଗୃହ ନିର୍ମାଣ ନିଗମ ୧୧ ହଜାର ଟଙ୍କା ଓ ଷ୍ଟେଟବ୍ୟାଙ୍କ୍ଅଫ୍ ଇଣ୍ଡିଆ ଷ୍ଟାଫ୍ ଆସୋସିଏସନ୍ ସମବାୟ ସମିତି ୮ ହଜାର ଏହିପରି ମୋଟ ଏକଲକ୍ଷ ଏକାବନ ହଜାର ଟଙ୍କା ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ ରାମକୃଷ୍ଣ ପଟ୍ଟନାୟକ ଓ କୃଷି ସଚିବ ଶ୍ରୀ ଅଭୟ ରଥଙ୍କ ଉପସ୍ଥିତିରେ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିକୁ ଦାନ କରାଯାଇଛି ।

## କୁକୁଡ଼ା ପାଳନ କେନ୍ଦ୍ର ସ୍ଥାପନ ପାଇଁ ବ୍ୟାଙ୍କ୍ ସହାୟତା

—ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ

ଗତ ନଭେମ୍ବର ୨୪ ତାରିଖ ଦିନ ସଚିବାଳୟରେ ନାବାର୍ଡ଼ ଓ ବିଭିନ୍ନ ବ୍ୟବସାୟିକ ବ୍ୟାଙ୍କର ପ୍ରତିନିଧିମାନଙ୍କ ସହିତ କୁକୁଡ଼ା ପାଳନ କେନ୍ଦ୍ର ସ୍ଥାପନ କାର୍ଯ୍ୟକ୍ରମରେ ଋଣ ସହାୟତା ପ୍ରଦାନ ସଂକ୍ରାନ୍ତରେ ଏକ ବୈଠକ ଅନୁଷ୍ଠିତ ହୋଇଥିଲା । ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଏଥିରେ ଅଧ୍ୟକ୍ଷତା କରିଥିଲେ ।

ପଶୁପାଳନ ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର ରାଜ୍ୟରେ କୁକୁଡ଼ା ଅଣ୍ଡା ଚାହିଦା ଥିବାରୁ ଅନ୍ୟ ରାଜ୍ୟରୁ ବହୁ ପରିମାଣରେ ଅଣ୍ଡା ଆସି ବିକ୍ରୟ ହେଉଛି ଏବଂ ଦୈନିକ ୧୩ ଲକ୍ଷ ଅଣ୍ଡା ଆବଶ୍ୟକ ହେଉଥିବା ସ୍ଥଳେ ରାଜ୍ୟ ମଧ୍ୟରେ କେବଳ ୪ ଲକ୍ଷ ଅଣ୍ଡା ଉତ୍ପାଦିତ ହେଉଛି ବୋଲି କହିଥିଲେ । କୁକୁଡ଼ା ପାଳନ ବ୍ୟବସାୟର ଉଜ୍ଜ୍ୱଳ ଭବିଷ୍ୟତ ଦୃଷ୍ଟିରୁ ଏବଂ ଶିକ୍ଷିତ ବେକାର ଯୁବକଙ୍କୁ ଆତ୍ମନିଯୁକ୍ତି ଯୋଗାଇବା ସକାଶେ ବ୍ରହ୍ମପୁର, ପୁରୀ, ଭୁବନେଶ୍ୱର, କଟକ, ପାରାଦ୍ୱୀପ, ଅନୁଗୁଳ, ସମ୍ବଲପୁର ଓ ରାଉରକେଲା ସମେତ ରାଜ୍ୟର ବିଭିନ୍ନ ସହରର ଆଖପାଖ ଅଞ୍ଚଳରେ ମୋଟ ୨ ହଜାର ୫ ଶହ କୁକୁଡ଼ା ପାଳନ କେନ୍ଦ୍ର ପ୍ରତିଷ୍ଠା ପାଇଁ ରାଜ୍ୟ ସରକାର ଉଦ୍ୟମ କରୁଛନ୍ତି ବୋଲି ରାଷ୍ଟ୍ରମନ୍ତ୍ରୀ ପ୍ରକାଶ କରିଥିଲେ ।

ପଶୁପାଳନ ବିଭାଗ ପକ୍ଷରୁ ହଜାରେଟି କୁକୁଡ଼ା ପାଳନ ବ୍ୟବସ୍ଥା ସହିତ ପ୍ରତି କେନ୍ଦ୍ର ପାଇଁ ୧ ଲକ୍ଷ ୪୪ ହଜାର ଟଙ୍କା ଏବଂ ୫ ହଜାରଟି କୁକୁଡ଼ା ପାଳନ ବ୍ୟବସ୍ଥା ସହିତ ପ୍ରତି କେନ୍ଦ୍ର ପାଇଁ ୬ ଲକ୍ଷ ୫୨ ହଜାର ଟଙ୍କା ଖର୍ଚ୍ଚ ହେବ ବୋଲି ଅଟକଳ କରାଯାଇଛି ।

ଏହି କାର୍ଯ୍ୟକ୍ରମରେ ନାବାର୍ଡ଼ ଅର୍ଥ ମଞ୍ଜୁର କରିଥିଲେ ମଧ୍ୟ ସମ୍ପୃକ୍ତ ବ୍ୟାଙ୍କ୍‌ମାନେ ସିକ୍ୟୁରିଟି ଓ ଗ୍ୟାରେଣ୍ଟିରେ ନିର୍ଦ୍ଦିଷ୍ଟ ନୀତି ନଥିବା ଆଳରେ ଋଣ ପ୍ରଦାନ କରୁନଥିବା ବିଷୟରେ ଆଲୋଚନା ବେଳେ ପ୍ରକାଶ ପାଇଥିଲା । ଏହି କେନ୍ଦ୍ର ପ୍ରତିଷ୍ଠା ପାଇଁ ଉଦ୍ୟୋଗୀ ବ୍ୟକ୍ତିମାନଙ୍କୁ ଉପଯୁକ୍ତ ତାଲିମ ପ୍ରଦାନ କରିବା ପାଇଁ ବୈଠକରେ ନିଷ୍ପତ୍ତି ହୋଇଥିଲା ।

ବ୍ୟାଙ୍କ୍ ପ୍ରତିନିଧିମାନଙ୍କୁ ଏହି କାର୍ଯ୍ୟକ୍ରମର ଗୁରୁତ୍ୱ ଓ ଅର୍ଥନୈତିକ ଅଭିବୃଦ୍ଧି ସଂକ୍ରାନ୍ତରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଅବଗତ କରାଇଥିଲେ ଏବଂ ଋଣ ସହାୟତା ପ୍ରଦାନ କ୍ଷେତ୍ରରେ ସହଯୋଗ କରିବା ପାଇଁ ପରାମର୍ଶ ଦେଇଥିଲେ ।

ବିଭିନ୍ନ ବ୍ୟାଙ୍କର ପ୍ରତିନିଧିମାନେ କୁକୁଡ଼ା ପାଳନ କେନ୍ଦ୍ର ପ୍ରାଇମେରୀ ଇଉନିଟ୍‌କୁ ସିକ୍ୟୁରିଟି ରୂପେ ଗ୍ରହଣ କରି ଋଣ ପ୍ରଦାନ କରିବେ ବୋଲି ସମ୍ମତି ପ୍ରଦାନ କରିଥିଲେ । ବୈଠକରେ ଅନ୍ୟମାନଙ୍କ ସହିତ ବିଭାଗୀୟ ଶାସନ ସଚିବ ଶ୍ରୀ ପ୍ରଦୀପ କୁମାର ମହାନ୍ତି, ନିର୍ଦ୍ଦେଶକ ଶ୍ରୀ ଗୋକୁଳ ଚନ୍ଦ୍ର ପତି, ଷ୍ଟେଟ ବ୍ୟାଙ୍କ୍ ରିଜିଓନାଲ୍ ମ୍ୟାନେଜର ଶ୍ରୀ ଜି: ସି: ସେନାପତି, ଇଉ: ବି: ଆଇ: ଜୋନାଲ୍ ମ୍ୟାନେଜର ଶ୍ରୀ ଏସ୍: ଦତ୍ତ, ୟୁ: କୋ: ବ୍ୟାଙ୍କର ଏ: ଜି: ଏମ୍: ଶ୍ରୀ ପି: ସି: ଓ୍ୱାହୀ, ସେଣ୍ଟ୍ରାଲ୍ ବ୍ୟାଙ୍କର ଆଞ୍ଚଳିକ ମ୍ୟାନେଜର ଶ୍ରୀ ଏଚ୍: କେ: କର, ବ୍ୟାଙ୍କ୍ ଅଫ୍ ଇଣ୍ଡିଆର ରିଜିଓନାଲ୍ ମ୍ୟାନେଜର ଡଃ ଏନ୍: କେ: ଖାରୀ ଏବଂ ନାବାର୍ଡ଼ ମ୍ୟାନେଜର ଶ୍ରୀ ବି: କେ: ଭଟ୍ଟାଚାର୍ଯ୍ୟ ପ୍ରମୁଖ ଯୋଗ ଦେଇଥିଲେ ।

## ନିଖିଳ ଭାରତ କ୍ଷୁଦ୍ର ଓ ମଧ୍ୟମ ସମ୍ବାଦପତ୍ର ସମ୍ପାଦକ ପରିଷଦ ପ୍ରତିନିଧିମାନଙ୍କ ସହ ମୁଖ୍ୟମନ୍ତ୍ରୀଙ୍କ ଆଲୋଚନା

ସମ୍ବାଦପତ୍ରକୁ ଏକ ଶିଳ୍ପ ରୂପେ ଘୋଷଣା କରିବାକୁ ଏବଂ କ୍ଷୁଦ୍ର ଓ ମଧ୍ୟମ ସମ୍ବାଦପତ୍ରମାନଙ୍କ ପାଇଁ ବିଜ୍ଞାପନ ସହାୟତା ବୃଦ୍ଧି କରିବାକୁ ସରକାର ବିଚାର କରିବେ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ

ପଟ୍ଟନାୟକ ଆଜି ନିଖିଳ ଭାରତ କ୍ଷୁଦ୍ର ଓ ମଧ୍ୟମ ସମ୍ବାଦପତ୍ର ସମ୍ପାଦକ ପରିଷଦ, ଓଡ଼ିଶା ଶାଖାର ଏକ ପ୍ରତିନିଧି ଦଳଙ୍କୁ ପ୍ରତିଶ୍ରୁତି ଦେଇଛନ୍ତି ।

ପରିଷଦର ସଭାପତି ବିଧାୟକ ଡକ୍ଟର ପ୍ରସନ୍ନ କୁମାର ପାଟଶାଣୀଙ୍କ ନେତୃତ୍ୱରେ ଏହି ପ୍ରତିନିଧି ଦଳ ଗତ ନଭେମ୍ବର ୨୪ ତାରିଖ ଦିନ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କୁ ସଚିବାଳୟଠାରେ ସାକ୍ଷାତ କରିଥିଲେ । ସରକାରୀ ବିଜ୍ଞାପନ ପ୍ରଦାନ କ୍ଷେତ୍ରରେ କ୍ଷୁଦ୍ର ଓ ମଧ୍ୟମ ସମ୍ବାଦପତ୍ରଙ୍କୁ ଅଧିକ ଗୁରୁତ୍ୱ ଦେବା ପାଇଁ ଏବଂ ରାଜ୍ୟ ସରକାରଙ୍କ ବିଜ୍ଞାପନ ବାବଦ ବଜେଟ୍ ବୃଦ୍ଧି କରିବା ପାଇଁ ଏହି ପ୍ରତିନିଧିମାନେ ମୁଖ୍ୟମନ୍ତ୍ରୀଙ୍କଠାରେ ଅନୁରୋଧ କରିଥିଲେ । ସବୁ ସାମ୍ବାଦିକ ଓ ସମ୍ପାଦକମାନଙ୍କ ପାଇଁ ଭୁବନେଶ୍ୱରଠାରେ ତଥ୍ୟ ସୂଚନା ପାଠାଗାର, ଦୂର ସଞ୍ଚାର ଓ ପଠନାଗାରର ବ୍ୟବସ୍ଥା ଥାଇ ଏକ ପ୍ରେସ୍ ସେଣ୍ଟର ସ୍ଥାପନ କରିବା ପାଇଁ ସେମାନେ ପରାମର୍ଶ ଦେଇଥିଲେ । ଆଲୋଚନା ସମୟରେ କର୍ଣ୍ଣାଟକ ଢାଞ୍ଚାରେ ଏକ ପ୍ରେସ୍ ଏକାଡେମୀ ସ୍ଥାପନ, ସମ୍ପାଦକମାନଙ୍କୁ ଟିକେଟ ପତ୍ର ପ୍ରଦାନ ଓ ସେମାନଙ୍କ ଅଫିସ୍ ପାଇଁ ସରକାରୀ ଗୃହ ଯୋଗାଇବା ଆଦି ପ୍ରସଙ୍ଗ ଉତ୍ଥାପନ କରାଯାଇଥିଲା ।

ମୁଖ୍ୟମନ୍ତ୍ରୀଙ୍କ ସାହାଯ୍ୟ ପାଣ୍ଠିକୁ ସମ୍ପାଦକ ପରିଷଦ ତରଫରୁ ୫୦୧ ଟଙ୍କା ପ୍ରଦାନ କରାଯାଇଥିଲା ।

ଏହି ପ୍ରତିନିଧି ଦଳରେ ସାଧାରଣ ସମ୍ପାଦକ ଶ୍ରୀ ବିଜୟ କୁମାର ରାଉତରାୟ, ଉପଦେଷ୍ଟା ଶ୍ରୀ ରାମହରି ମିଶ୍ର, କାର୍ଯ୍ୟକାରୀ ସଭ୍ୟ ସର୍ବଶ୍ରୀ ରବି ମିଶ୍ର, ସଞ୍ଜୟ କୁମାର ପ୍ରଧାନ, ବାସୁଦେବ ମଲ୍ଲିକ ଓ ଆର୍: ସି: ଦଳ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କୁ ସାକ୍ଷାତ କରି ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ଅତ୍ୟାବଶ୍ୟକ ସାମଗ୍ରୀ ବଣ୍ଟନ ନିମନ୍ତେ ଯୋଗାଣ ମନ୍ତ୍ରୀଙ୍କ ନିର୍ଦ୍ଦେଶ

—ମନ୍ତ୍ରୀ ଶ୍ରୀ ହରିଚନ୍ଦନ

ରାଜ୍ୟରେ ଅତ୍ୟାବଶ୍ୟକ ସାମଗ୍ରୀ ବଣ୍ଟନ ବ୍ୟବସ୍ଥାକୁ ଶୃଙ୍ଖଳିତ ଏବଂ ତ୍ୱରାନ୍ୱିତ କରିବା ଉଦ୍ଦେଶ୍ୟରେ ଜିଲ୍ଲା ତଥା ସବ୍‌ଡିଭିଜନ୍ ସ୍ତରରେ ନାଗରିକ କମିଟିଗୁଡ଼ିକ ଖୁବ୍ ଶୀଘ୍ର ଗଠନ କରିବା ପାଇଁ ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ କହିଛନ୍ତି । ଏ ସମ୍ପର୍କରେ ସମସ୍ତ ପ୍ରସ୍ତାବ ଜିଲ୍ଲାପାଳ ମାନେ ସରକାରଙ୍କୁ ତୁରନ୍ତ ପଠାଇବାକୁ ସେ ନିର୍ଦ୍ଦେଶ ଦେଇଛନ୍ତି । ଗ୍ରାମାଞ୍ଚଳରେ ମଧ୍ୟ ଅତ୍ୟାବଶ୍ୟକ ସାମଗ୍ରୀ ସୁଷମ ବଣ୍ଟନ ନିମନ୍ତେ ବ୍ଲକ୍ ସ୍ତରରୁ ଆରମ୍ଭ କରି ୱାର୍ଡ଼ ପର୍ଯ୍ୟନ୍ତ ଏଭଳି ନାଗରିକ କମିଟିମାନ ତୁରନ୍ତ ଗଠନ ନିମନ୍ତେ, ଶ୍ରୀ ହରିଚନ୍ଦନ ଜିଲ୍ଲାପାଳମାନଙ୍କୁ ପରାମର୍ଶ ଦେଇଛନ୍ତି ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ସମ୍ପ୍ରତି ଚିନି, କିରୋସିନି, ପାମୋଲିନ୍ ତେଲ ଆଦି ଅତ୍ୟାବଶ୍ୟକ ସାମଗ୍ରୀ କ୍ଷେତ୍ରରେ କେତେକ ସ୍ଥାନରେ ବିଶୃଙ୍ଖଳା ଦେଖାଦେବା ସଙ୍ଗେ ସଙ୍ଗେ ଖାଉଟିମାନେ ଏସବୁ ସାମଗ୍ରୀ ପାଉନଥିବା ଅଭିଯୋଗ ସରକାରଙ୍କ ନିକଟରେ ପହଞ୍ଚୁଛି । ଏହି ପରିପ୍ରେକ୍ଷୀରେ ଉପରୋକ୍ତ କମିଟିଗୁଡ଼ିକ ଗଠିତ ହେଲେ ବଣ୍ଟନ ବ୍ୟବସ୍ଥା ଶୃଙ୍ଖଳିତ ଓ ତ୍ୱରାନ୍ୱିତ କରାଯାଇପାରିବ ଏବଂ କଣ୍ଟ୍ରୋଲ୍ ସାମଗ୍ରୀ ହେରଫେର କରୁଥିବା ଡିଲର, ହୋଲସେଲର ଏବଂ ଷ୍ଟୋରେଜ୍ ଏଜେଣ୍ଟଙ୍କୁ ନିୟନ୍ତ୍ରଣ କରିବା ସହଜସାଧ୍ୟ ବୋଲି ଶ୍ରୀ ହରିଚନ୍ଦନ ପ୍ରକାଶ କରିଛନ୍ତି ।

କିରୋସିନି ଏବଂ ପାମୋଲିନ୍ ତେଲ ବଣ୍ଟନ କ୍ଷେତ୍ରରେ କ୍ର କେତେକ ଅବ୍ୟବସ୍ଥା ଏବଂ ଦୁର୍ନୀତି ଘଟଣା ସରକାରଙ୍କ ଦୃଷ୍ଟିକୁ ଆସିଛି । ଏ ସମ୍ପର୍କରେ ବିଧିବଦ୍ଧ ତଦନ୍ତ କରି ଉପଯୁକ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଛି ବୋଲି ଯୋଗାଣ ମନ୍ତ୍ରୀ କହିଛନ୍ତି । ଏହାଛଡ଼ା ଇତିମଧ୍ୟରେ ଦୁର୍ନୀତିଗ୍ରସ୍ତ ଲିପ୍ତ ବହୁ ଡିଲର୍, ଷ୍ଟୋରେଜ୍ ଏଜେଣ୍ଟ, ସବ୍ ହୋଲସେଲରଙ୍କ ଲାଇସେନ୍‌ସ ବାତିଲ କରାଯାଇଛି ଏବଂ ସମ୍ପୃକ୍ତ କର୍ମଚାରୀଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରାଯାଇଛି । ସମସ୍ତ ଅଭିଯୋଗକୁ ଦ୍ରୁତ ତଦନ୍ତ କରି ସମ୍ପୃକ୍ତ ବ୍ୟକ୍ତିମାନଙ୍କୁ ଦୃଢ଼ ହସ୍ତରେ ଦମନ କରାଯିବ ବୋଲି ଶ୍ରୀ ହରିଚନ୍ଦନ ପ୍ରତିଶ୍ରୁତି ଦେଇଛନ୍ତି ।

ଅତ୍ୟାବଶ୍ୟକ ସାମଗ୍ରୀର ସୁଷମ ବଣ୍ଟନ କ୍ଷେତ୍ରରେ ସଚେତନ ଖାଉଟୀମାନେ ସରକାରଙ୍କ ସହ ସହଯୋଗ କରିବା ସଙ୍ଗେ ସଙ୍ଗେ ଏ ଦିଗରେ କୌଣସି ବିଶୃଙ୍ଖଳା ଅଥବା ହେରଫେର ଦେଖାଗଲେ ସମ୍ପୃକ୍ତ ଯୋଗାଣ ବିଭାଗ କର୍ତ୍ତୃପକ୍ଷଙ୍କ ଦୃଷ୍ଟିକୁ ତୁରନ୍ତ ଆଣିବା ପାଇଁ ଶ୍ରୀ ହରିଚନ୍ଦନ ଖାଉଟୀମାନଙ୍କୁ ଅନୁରୋଧ କରିଛନ୍ତି ।

## ୪୨ତମ ଜାତୀୟ ସମର ଶିକ୍ଷାର୍ଥୀ ବାହିନୀ ଦିବସ ପାଳିତ

ଗତ ନଭେମ୍ବର ମାସ ୨୪ ତାରିଖ ଦିନ ସ୍ଥାନୀୟ ଏକ ନମ୍ବର ଖୋଲପଡ଼ିଆରେ ୪୨ତମ ଜାତୀୟ ସମର ଶିକ୍ଷାର୍ଥୀ ବାହିନୀ ଦିବସ ପାଳିତ ହୋଇଯାଇଛି । ଏଥିରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ବିଭିନ୍ନ ବାହିନୀର ଶିକ୍ଷାର୍ଥୀମାନଙ୍କ ମିଳିତ ପ୍ୟାରେଡ୍‌ରେ ଅଭିବାଦନ ଗ୍ରହଣ କରିବା ସଙ୍ଗେ ସଙ୍ଗେ ସେ ଜଣେ ବୟୋବୃଦ୍ଧ ପୁରାତନ କ୍ୟାଡେଟ୍ ଭାବେ ଜାତୀୟ ସମର ଶିକ୍ଷାର୍ଥୀ ବାହିନୀର ଛାତ୍ରଛାତ୍ରୀମାନଙ୍କ ଉଜ୍ଜ୍ୱଳମୟ ଭବିଷ୍ୟତ କାମନା କରିଥିଲେ । ଏହି ଅବସରରେ ମୁଖ୍ୟମନ୍ତ୍ରୀ ବିଭିନ୍ନ କ୍ଷେତ୍ରରେ କୃତିତ୍ୱ ହାସଲ କରିଥିବା ୩୮ ଜଣ କ୍ୟାଡେଟ୍‌ଙ୍କୁ ପଦକ ଓ ଆର୍ଥିକ ପୁରସ୍କାର ପ୍ରଦାନ କରିଥିଲେ ।

ଏହି ଅବସରରେ ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ବିଭିନ୍ନ ରାଜ୍ୟର ବେଶଭୂଷାରେ ସୁସଜ୍ଜିତ ହୋଇ ଜାତୀୟ ଏକତାର ନିଦର୍ଶନ ସ୍ୱରୂପ ଏକ ମନୋଜ୍ଞ ନୃତ୍ୟ ପରିବେଷଣ କରାଯାଇଥିଲା । ପା ଛାତ୍ରମାନଙ୍କ ଦ୍ୱାରା ବିଭିନ୍ନ ବିମାନ ମଡେଲ୍ ଚାଳନା, ସୈନିକ ସ୍କୁ ଛାତ୍ରମାନଙ୍କ ଦ୍ୱାରା ବ୍ୟାୟାମ, ନୌବାହିନୀ ଶିକ୍ଷାର୍ଥୀମାନଙ୍କ ଦ୍ୱା ପତାକା ମାଧ୍ୟମରେ ସଙ୍କେତ ପ୍ରେରଣ କୌଶଳ ଓ ପଶୁ ଚିକି ମହାବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ଅଶ୍ୱାରୋହଣ କୌଶ ପ୍ରଦର୍ଶିତ ହୋଇଥିଲା ।

ଏନ୍: ସି: ସି: ନିର୍ଦ୍ଦେଶାଳୟ ଦ୍ୱାରା ଆୟୋଜିତ ଏହି ଉତ୍ସବ ମିଳିତ ପ୍ୟାରେଡ୍‌କୁ ମେଜର୍ ଜି: ଏସ୍: ମିଶ୍ର ପରିଚାଳ କରିଥିଲେ ।

## ବିଂଶ ସୂତ୍ରୀ କାର୍ଯ୍ୟକ୍ରମର ଅଗ୍ରଗତି

ଚଳିତ ଆର୍ଥିକ ବର୍ଷ (୧୯୯୦–୯୧) ଆରମ୍ଭରୁ ଗତ ଅକ୍ଟୋବ ମାସ ଶେଷ ଯାଏ ସାତମାସ ମଧ୍ୟରେ ସମନ୍ୱିତ ଗ୍ରାମ୍ୟ ଉନ୍ନ

କାର୍ଯ୍ୟକ୍ରମ (ଆଇ. ଆର୍. ଡି. ପି.)ରେ ସର୍ବମୋଟ ୩୯ ହଜାର ୨୭୮ଟି ଦରିଦ୍ର ପରିବାର ଉପକୃତ ହୋଇଛନ୍ତି । ଗତ ଅକ୍ଟୋବର ମାସରେ ଏଥିରେ ଉପକୃତ ହୋଇଥିବା ପରିବାରଙ୍କ ସଂଖ୍ୟା ହେଉଛି ୯,୫୯୨ । ଚଳିତ ଆର୍ଥିକ ବର୍ଷ ମଧ୍ୟରେ ମୋଟ ୧ ଲକ୍ଷ ୧୪ ହଜାର ୫୯ଟି ପରିବାରଙ୍କୁ ଏହି କାର୍ଯ୍ୟକ୍ରମରେ ଉପକୃତ କରାଯିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ବୋଲି ବିଂଶ ସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ସମ୍ପର୍କୀୟ ବିବରଣୀରୁ ଜଣାପଡ଼ିଛି ।

ଜବାହର ରୋଜଗାର ଯୋଜନାରେ ଚଳିତ ଆର୍ଥିକ ବର୍ଷ ଆରମ୍ଭରୁ ଅର୍ଥାତ୍ ଗତ ଅପ୍ରେଲରୁ ଅକ୍ଟୋବର ପର୍ଯ୍ୟନ୍ତ ସାତମାସ ମଧ୍ୟରେ ପ୍ରାୟ ୭୬ ଲକ୍ଷ ୫୭ ହଜାର ଶ୍ରମ ଦିବସ ସୃଷ୍ଟି କରାଯାଇ ଗ୍ରାମାଞ୍ଚଳ ଲୋକଙ୍କୁ କାମଧନ୍ଦା ଯୋଗାଇ ଦିଆଯାଇଛି । କେବଳ ଗତ ଅକ୍ଟୋବର ମାସରେ ସୃଷ୍ଟି କରାଯାଇଥିବା ପ୍ରାୟ ୧ ଲକ୍ଷ ୪ ହଜାର ଶ୍ରମ ଦିବସ ଏହାର ଅନ୍ତର୍ଭୁକ୍ତ ।

ଏହାବ୍ୟତୀତ ଉକ୍ତ ସମୟ ମଧ୍ୟରେ ମୋଟ ୬୦୫ଟି କ୍ଷୁଦ୍ର ଶିଳ୍ପ ୟୁନିଟ୍ ସ୍ଥାପନ କରାଯାଇଛି । ତନ୍ମଧ୍ୟରେ ଗତ ମାସରେ ସ୍ଥାପନ କରାଯାଇଥିବା ୨୪୩ଟି ୟୁନିଟ୍ ଏହାର ଅନ୍ତର୍ଭୁକ୍ତ । ଚଳିତ ଆର୍ଥିକ ବର୍ଷରେ ମୋଟ ୧,୬୨୦ଟି କ୍ଷୁଦ୍ର ଶିଳ୍ପ ୟୁନିଟ୍ ସ୍ଥାପନ ନିମନ୍ତେ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ବୋଲି ଗତ ଅକ୍ଟୋବର ମାସ ବିଂଶ ସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ସମ୍ପର୍କୀୟ ବିବରଣୀରୁ ପ୍ରକାଶ ।

## ସମସ୍ତ ବ୍ଲକ୍ ମହକୁମା ସହ ଟେଲିଫୋନ୍ ସଂଯୋଗ ସ୍ଥାପିତ ହେବ

—ଶ୍ରୀ ଭାଗବତ ବେହେରା

ବାଣିଜ୍ୟ ଓ ପରିବହନ ମନ୍ତ୍ରୀ ଶ୍ରୀ ଭାଗବତ ବେହେରାଙ୍କ ପୌରହିତ୍ୟରେ ଅନୁଷ୍ଠିତ ଏକ ବୈଠକରେ ରାଜ୍ୟରେ ଟେଲିଫୋନ୍ ଯୋଗାଯୋଗ ଏବଂ ଡାକ ପରିବହନ ସମ୍ପର୍କରେ ବିସ୍ତୃତ ଆଲୋଚନା ହୋଇଥିଲା । ଶ୍ରୀ ବେହେରା ଓଡ଼ିଶାରେ ଟେଲିଫୋନ୍ ସୁବିଧାର ପ୍ରସାର, କଟକ ଓ ଭୁବନେଶ୍ୱର ସହର ମଧ୍ୟରେ ଏସ୍. ଟି. ଡି. ପରିବର୍ତ୍ତେ "ଲୋକାଲ୍ କଲ୍" ସୁବିଧା ପ୍ରଚଳନ, ଗ୍ରାମାଞ୍ଚଳରେ ବିଶେଷ କରି ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଅଧିକ ସଂଖ୍ୟକ ଡାକଘର ସ୍ଥାପନ, ନିୟମିତ ଡାକ ବ୍ୟାଗ୍ ପ୍ରେରଣ, ଡାକ ଓ ଟେଲିଫୋନ୍ ସମ୍ପର୍କରେ ସର୍ବସାଧାରଣଙ୍କ ଆପତ୍ତି ଅଭିଯୋଗର ସମାଧାନ ଉପରେ ଗୁରୁତ୍ୱ ଦେଇଥିଲେ । ଆଲୋଚନାରେ ଅଂଶ ଗ୍ରହଣ କରି ଟେଲିଫୋନ୍ ଜେନେରାଲ୍ ମ୍ୟାନେଜର୍ ସୂଚାଇଥିଲେ ଯେ ଚଳିତ ବର୍ଷ ମଧ୍ୟରେ ରାଜ୍ୟର ସମସ୍ତ ୩୧୪ଟି ବ୍ଲକ୍ ମହକୁମା ସହିତ ଟେଲିଫୋନ୍ ସଂଯୋଗ ସ୍ଥାପିତ ହେବ । ବର୍ତ୍ତମାନ ବାକି ଥିବା ୩ଟି ମହକୁମାର କାର୍ଯ୍ୟ ଚାଲିଛି । ସେହିପରି ରାଜ୍ୟର ୫୬ଟି ସବ୍‌ଡିଭିଜନ୍ ମଧ୍ୟରୁ ୨୬ଟିରେ ଏସ୍. ଟି. ଡି. ସୁବିଧା ଦିଆଯାଇଛି ଏବଂ ଚଳିତ ଯୋଜନା କାଳରେ ଅବଶିଷ୍ଟ ସବ୍‌ଡିଭିଜନ୍‌ରେ ଏହି ସୁବିଧା ଯୋଗାଇ ଦିଆଯିବ । ନୟାଗଡ ସହରରେ ୧୯୯୧–୯୨ ସୁଦ୍ଧା ଏସ୍. ଟି. ଡି. ସୁବିଧା ମିଳିପାରିବ ବୋଲି କହିଥିଲେ ।

କଟକ ଓ ଭୁବନେଶ୍ୱର ସହର ମଧ୍ୟରେ ହେଉଥିବା ଟେଲିଫୋନ୍ କଲଗୁଡ଼ିକୁ ଏସ୍. ଟି. ଡି. ପରିବର୍ତ୍ତେ ଲୋକାଲ୍ କଲ୍ ରୂପେ ଧରାଯିବା ପାଇଁ ହୋଇଥିବା ଦାବୀ ସମ୍ପର୍କରେ ଜେନେରାଲ୍ ମ୍ୟାନେଜର୍ କହିଲେ ଯେ ଆଗାମୀ ଆର୍ଥିକ ବର୍ଷରୁ ୪୦ କିଲୋମିଟର ଦୂରତ୍ୱ ମଧ୍ୟରେ "ସ୍ୱଳ୍ପ ଦୂରତା ଶୁଳ୍କ ପ୍ରଣାଳୀ" ପ୍ରବର୍ତ୍ତନ କରାଯାଉଥିବା ଯୋଗୁଁ କଟକ–ଭୁବନେଶ୍ୱର ମଧ୍ୟରେ ଟେଲିଫୋନ୍ ଶୁଳ୍କ ବର୍ତ୍ତମାନ ତୁଳନାରେ ଦୁଇ ତୃତୀୟାଂଶ କମିଯିବ । ଏହା ଫଳରେ ଟେଲିଫୋନ୍ ଗ୍ରାହକମାନେ ବିଶେଷ ଉପକୃତ ହୋଇପାରିବେ । ଗଞ୍ଜାମ ଜିଲ୍ଲାର ବନ୍ୟା ବିପନ୍ନ ଅଞ୍ଚଳରେ ଅଗ୍ରାଧିକାର ଭିତ୍ତିରେ ଟେଲିଫୋନ୍ ଓ ଟେଲିଗ୍ରାମ୍ ସଂଯୋଗ ବ୍ୟବସ୍ଥା ହାତକୁ ନିଆଯାଇଛି ଏବଂ ଚଳିତ ମାସ ଶେଷ ସୁଦ୍ଧା ଏହା ସମ୍ପୂର୍ଣ୍ଣ ହେବ ବୋଲି ସୂଚନା ଦେଇଥିଲେ ।

ମୁଖ୍ୟ ପୋଷ୍ଟ ମାଷ୍ଟର ଜେନେରାଲ୍ ଆଲୋଚନା କାଳରେ ସୂଚାଇଥିଲେ ଯେ ରାଜ୍ୟର ସର୍ବମୋଟ୍ ୪,୩୯୫ଟି ଗ୍ରାମ ପଞ୍ଚାୟତ ମଧ୍ୟରୁ ଏ ପର୍ଯ୍ୟନ୍ତ ୪,୩୦୦ଟି ପଞ୍ଚାୟତରେ ଡାକଘର ଖୋଲାଯାଇଛି ଏବଂ ୧୯୯୨ ମାର୍ଚ୍ଚ ସୁଦ୍ଧା ଅବଶିଷ୍ଟ ୯୫ଟି ପଞ୍ଚାୟତରେ ଖୋଲାଯିବ । ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ପ୍ରଚଳିତ ନିୟମାବଳୀକୁ କୋହଳ କରାଯାଇ ଡାକଘର ଖୋଲାଯାଉଛି ବୋଲି କହିଥିଲେ ।

ରାଜ୍ୟର ବିଭିନ୍ନ ଅଞ୍ଚଳକୁ ନିୟମିତ ଡାକ ବ୍ୟାଗ୍ ପଠାଯିବା ସମ୍ପର୍କରେ ମଧ୍ୟ ଏହି ବୈଠକରେ ଆଲୋଚନା ହୋଇଥିଲା । ପୂର୍ବଭଳି ଓଡ଼ିଶା ରାଜ୍ୟ ପରିବହନ ନିଗମ ବସ୍‌ରେ ଡାକ ବ୍ୟାଗ୍ ପ୍ରେରଣ ନିମନ୍ତେ ପରିବହନ ମନ୍ତ୍ରୀ ସମ୍ମତି ପ୍ରଦାନ କରିଥିଲେ । ଏହାଛଡ଼ା ଘରୋଇ ବସ୍‌ରେ ମଧ୍ୟ ଡାକ ବ୍ୟାଗ୍ ନେବା ଆଣିବା କରାଯିବା ନିମନ୍ତେ ପରମିଟ୍‌ରେ ସର୍ତ୍ତ ରହିବ । ଏହା ଫଳରେ ଘରୋଇ ବସ୍ ମଧ୍ୟ ନିୟମିତ ଡାକ ବ୍ୟାଗ୍ ନେବା ଆଣିବା ନିମନ୍ତେ ବାଧ୍ୟ ହେବେ ।

ଏହି ବୈଠକରେ ବାଣିଜ୍ୟ ଓ ପରିବହନ ସଚିବ, ପରିବହନ କମିଶନର୍, ଓଡ଼ିଶା ସର୍କଲ୍‌ର ମୁଖ୍ୟ ପୋଷ୍ଟ ମାଷ୍ଟର ଜେନେରାଲ୍, ଟେଲିଫୋନ ଜେନେରାଲ ମ୍ୟାନେଜର୍ ଏବଂ ଓଡ଼ିଶା ରାଜ୍ୟ ପରିବହନ ନିଗମର ମୁଖ୍ୟ ପରିଚାଳନା ନିର୍ଦ୍ଦେଶକ ଯୋଗଦାନ କରିଥିଲେ ।

## ଗଞ୍ଜାମ ବନ୍ୟାଞ୍ଚଳରେ ରିଲିଫ୍ କାର୍ଯ୍ୟକ୍ରମ

ସମ୍ପ୍ରତି ଗଞ୍ଜାମ ବନ୍ୟାଞ୍ଚଳରେ ରାଜ୍ୟ ସରକାରଙ୍କ ପକ୍ଷରୁ ରିଲିଫ୍ କାର୍ଯ୍ୟ ଜାରି ରଖାଯାଇଛି । ନଭେମ୍ବର ୨୪ ତାରିଖ ସୁଦ୍ଧା ମିଳିଥିବା ବିବରଣୀ ଅନୁଯାୟୀ ବନ୍ୟାକ୍ଳିଷ୍ଟ ଲୋକମାନଙ୍କ ମଧ୍ୟରେ ୧,୯୯୩.୫୧ କ୍ୱିଣ୍ଟାଲ୍ ଚୁଡ଼ା, ୧୦୭.୮୧ କ୍ୱିଣ୍ଟାଲ ଗୁଡ଼ ଏବଂ ୨୩.୧୬୬ କ୍ୱିଣ୍ଟାଲ୍ ଚାଉଳ ବଣ୍ଟନ କରାଯାଇଛି । ସେହିପରି ୨୨ ବସ୍ତା ବିସ୍କୁଟ୍ ଓ ଚକୋଲେଟ୍ ଏବଂ ୬୩୦.୫୦ କିଲୋ ଲିଟର କିରୋସିନି ବନ୍ୟାକ୍ଳିଷ୍ଟ ଲୋକମାନଙ୍କ ମଧ୍ୟରେ ବଣ୍ଟନ କରାଯାଇଛି । ବନ୍ୟା ସମୟରେ ପାଣି ଘେର ମଧ୍ୟରେ ଥିବା ଲୋକମାନଙ୍କୁ ମୋଟ୍ ୩୯୦.୮୪ କ୍ୱିଣ୍ଟାଲ୍ ଖାଦ୍ୟ ସାମଗ୍ରୀ ବିତରଣ କରାଯାଇଥିବା ଏହି ବିବରଣୀରୁ ପ୍ରକାଶ । ଆହୁରି ଜଣାଯାଇଛି ଯେ ବନ୍ୟା ଦୁର୍ଗତ ଲୋକମାନଙ୍କ ମଧ୍ୟରେ ୧୦ ହଜାର ଖଣ୍ଡ ଧୋତି, ୧୦ ହଜାର ଖଣ୍ଡ ଶାଢ଼ୀ ଓ ୩୦,୧୧୪ଟି ପିଲାମାନଙ୍କ ପୋଷାକ ବଣ୍ଟନ କରାଯାଇଛି । ଏହାବ୍ୟତୀତ ୨୦ ହଜାର ଖଣ୍ଡ କମ୍ବଳ

ମଧ୍ୟ ବଣ୍ଟନ କରାଯାଇଥିବା ଏହି ବିବରଣୀରୁ ପ୍ରକାଶ । ଘରଦ୍ୱାର ଭାସିଯାଇଥିବା ଲୋକମାନଙ୍କୁ ଅସ୍ଥାୟୀ ବାସଗୃହ ନିର୍ମାଣ ବାବଦରେ ୨,୫୦୦ଟି ଟାର୍ପୋଲିନ୍ ଏବଂ ୬୫ଟି ପଲିଥିନ୍ ରୋଲ୍ ମଧ୍ୟ ଦିଆଯାଇଛି ।

ବନ୍ୟାଗ୍ରସ୍ତ ଲୋକମାନଙ୍କୁ ସ୍ୱାସ୍ଥ୍ୟ ସେବା ଯୋଗାଇ ଦେବା ଉଦ୍ଦେଶ୍ୟରେ ୧୭ ଜଣ ବରିଷ୍ଠ ମେଡିକାଲ୍ ଅଫିସରଙ୍କ ସମେତ ୫୧ ଜଣ ଡାକ୍ତର, ୧୧୦ ଜଣ ସ୍ୱାସ୍ଥ୍ୟ ପରିଦର୍ଶକ, ୫୯ ଜଣ ଫାର୍ମାସିଷ୍ଟ ଏବଂ ୩୩୮ ଜଣ କର୍ମଚାରୀଙ୍କୁ ମୁତୟନ କରାଯାଇଥିଲା । ପୂର୍ବରୁ ୧୭ଟି ଭ୍ରାମ୍ୟମାଣ ଚିକିତ୍ସା ଦଳ ଏହି ଅଞ୍ଚଳରେ ଚିକିତ୍ସା କାର୍ଯ୍ୟ କରୁଥିବା ବେଳେ ବର୍ତ୍ତମାନ ୪ଟି ଦଳ କାର୍ଯ୍ୟରତ ରହିଛନ୍ତି । ବିବରଣୀରୁ ଜଣାଯାଏ ଯେ ସେମାନେ ୨୬,୬୪୬ଟି କୂଅ ଓ ପୋଖରୀ, ୪୪୮ଟି ଅନ୍ୟାନ୍ୟ ଜଳାଶୟ ବିଶୋଧନ କରିଛନ୍ତି । ଏହି ଅଞ୍ଚଳରେ ସେମାନେ ୨ ଲକ୍ଷ ୩୪ ହଜାର ୨୨୮ ଜଣଙ୍କୁ ବିଭିନ୍ନ ରୋଗ ପ୍ରତିଷେଧକ ଟୀକା ଏବଂ ୫୦,୯୧୬ ଜଣଙ୍କର ସାଧାରଣ ରୋଗ ଚିକିତ୍ସା, ୧୬,୦୬୪ ଜଣଙ୍କର ସଂକ୍ରାମକ ରୋଗ ଚିକିତ୍ସା କରିଥିବା ସଙ୍ଗେ ସଙ୍ଗେ ୧ ଲକ୍ଷ ୭୩ ହଜାର ୨୪୮ଟି ହାଲୁଜେନ୍ ବଟିକା ମଧ୍ୟ ଲୋକମାନଙ୍କ ମଧ୍ୟରେ ବଣ୍ଟନ କରିଥିଲେ । ଏହି ଅଞ୍ଚଳରେ ୫୨ଟି ଚିକିତ୍ସା କେନ୍ଦ୍ର ମଧ୍ୟ କାର୍ଯ୍ୟ କରୁଛି ।

ବନ୍ୟାଞ୍ଚଳର ଗୃହପାଳିତ ପଶୁ ସମ୍ପଦର ଜୀବନ ରକ୍ଷା ଦିଗରେ ମଧ୍ୟ ବିଭିନ୍ନ ପଦକ୍ଷେପ ଗ୍ରହଣ କରାଯାଇଥିବାର ଏହି ବିବରଣୀରୁ ଜଣାଯାଇଛି । ଏହି ଅଞ୍ଚଳରେ ୧୨,୫୩୩ ବସ୍ତା ଗୋ-ଖାଦ୍ୟ ଏବଂ ୨୬୪ କ୍ୱିଣ୍ଟାଲ୍ ନଡ଼ା ଯୋଗାଇ ଦିଆଯାଇଛି । ମୋଟ୍ ୧୪,୯୦୬ଟି ଗାଈଗୋରୁଙ୍କର ଚିକିତ୍ସା କରାଯାଇଛି । ମୋଟ୍ ୧୬,୯୩୭ଟି ଗାଈଗୋରୁଙ୍କୁ ବିଭିନ୍ନ ରୋଗ ପ୍ରତିଷେଧକ ଟୀକା ଦିଆଯାଇଛି ।ଏହି ସବୁ ଅଞ୍ଚଳକୁ ମୋଟ୍ ୧ ଲକ୍ଷ ୮୪ ହଜାର ଟଙ୍କାର ଔଷଧ ପଠାଯାଇଛି ।

## ବାସହୀନଙ୍କୁ ଘରଡିହ ଯୋଗାଣରେ ସଫଳତା

ବିଂଶ ସୂତ୍ରୀ କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ ଜନସାଧାରଣଙ୍କ ନିମନ୍ତେ ଗୃହ ନିର୍ମାଣ କାର୍ଯ୍ୟକ୍ରମ ଅନୁଯାୟୀ ଗତ ଅକ୍ଟୋବର ମାସରେ ୫୫୬ ଜଣ ବାସହୀନ ଲୋକଙ୍କୁ ସରକାରଙ୍କ ତରଫରୁ ଘରଡିହ ଯୋଗାଇ ଦିଆଯାଇଛି । ଏହାକୁ ମିଶାଇ ଚଳିତ ଆର୍ଥିକ ବର୍ଷ ଆରମ୍ଭରୁ ଅଦ୍ୟାବଧି ପ୍ରାୟ ୧୧ ହଜାର ୬୨୬ ଜଣଙ୍କୁ ଘରଡିହ ଯୋଗାଇ ଦିଆଯାଇଛି । ଚଳିତ ବର୍ଷ ୧୫ ହଜାର ବାସହୀନଙ୍କୁ ଘରଡିହ ଯୋଗାଇ ଦିଆଯିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ବର୍ତ୍ତମାନ ସୁଦ୍ଧା ଚଳିତ ଆର୍ଥିକ ବର୍ଷ ପାଇଁ ଥିବା ଧାର୍ଯ୍ୟ ଲକ୍ଷ୍ୟର ଶତକଡ଼ା ୭୭-୯୧ ଭାଗ ସଫଳତା ଏ କ୍ଷେତ୍ରରେ ହାସଲ ହୋଇପାରିଛି ବୋଲି ଅକ୍ଟୋବର ମାସ ବିଂଶ ସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ବିବରଣୀରୁ ପ୍ରକାଶ ।

ଚଳିତ ବର୍ଷ ଏପ୍ରିଲଠାରୁ ଅକ୍ଟୋବର ମାସ ମଧ୍ୟରେ ମୋଟ୍ ୨୬୭ ଜଣଙ୍କୁ ନିଜ ନିଜର ବାସଗୃହ ନିର୍ମାଣ ନିମନ୍ତେ ଆର୍ଥିକ ସହାୟତା ଯୋଗାଇ ଦିଆଯାଇଛି । କେବଳ ଗତ ମାସରେ ଏଥିପାଇଁ ଆର୍ଥିକ ସହାୟତା ଯୋଗାଇ ଦିଆଯାଇଥିବା ଲୋକଙ୍କ ସଂଖ୍ୟା ହେଉଛି ୬୯ ।

ସେହିପରି ଇନ୍ଦିରା ଆବାସ ଯୋଜନାରେ ୧୯୯୦-୯୧ ଆରମ୍ଭରୁ ବର୍ତ୍ତମାନ ପର୍ଯ୍ୟନ୍ତ ତଫସିଲଭୁକ୍ତ ଜାତି ଓ ଉପଜାତିର ମୋଟ୍ ୧,୨୫୫ ଜଣ ଲୋକ ବାସଗୃହ ପାଇଛନ୍ତି । ତନ୍ମଧ୍ୟରେ ଅକ୍ଟୋବର ମାସରେ ପାଇଥିବା ୩୮୧ ଜଣ ତଫସିଲଭୁକ୍ତ ଜାତି ଓ ଉପଜାତିର ଲୋକ ଅନ୍ତର୍ଭୁକ୍ତ । ଚଳିତ ଆର୍ଥିକ ବର୍ଷରେ ଏହି କାର୍ଯ୍ୟକ୍ରମରେ ମୋଟ୍ ୫,୭୦୭ ଜଣ ଉପକୃତ ହେବା ପାଇଁ ଲକ୍ଷ୍ୟ ରଖାଯାଇଛି ।

ଆର୍ଥିକ ଦୁର୍ବଳ ଶ୍ରେଣୀ ଲୋକଙ୍କୁ ୧୬୪ଟି ଓ ନିମ୍ନ ଆୟକାରୀ ବ୍ୟକ୍ତିଙ୍କୁ ୧,୧୮୬ଟି ବାସଗୃହ ଯୋଗାଇ ଦିଆଯାଇଛି । କେବଳ ଗତ ମାସରେ ଏଥିରେ ଉପକୃତଙ୍କ ସଂଖ୍ୟା ହେଉଛି ଯଥାକ୍ରମେ ୧୪ ଓ ୯୮ ବୋଲି ଗତ ଅକ୍ଟୋବର ମାସ ବିଂଶ ସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ବିବରଣୀରୁ ଜଣାପଡ଼ିଛି ।

## ଓଡ଼ିଶା ପ୍ରଶାସନିକ ନ୍ୟାୟାଧିକରଣଙ୍କ ଦ୍ୱାରା ମାମଲା ଫଇସଲା

ଗତ ସେପ୍ଟେମ୍ବର ଓ ଅକ୍ଟୋବର ମାସରେ ଯଥାକ୍ରମେ ୫,୬୪୧ ଓ ୫,୪୫୧ଟି ବିଭିନ୍ନ କିସମର ମାମଲା ଓଡ଼ିଶା ପ୍ରଶାସନିକ ନ୍ୟାୟାଧିକରଣଙ୍କ ବିଚାରାଧୀନ ଥିଲା । ସେଥିମଧ୍ୟରୁ ସେପ୍ଟେମ୍ବର ମାସରେ ୪୨୮ଟି ଓ ଅକ୍ଟୋବର ମାସରେ ୨୩୦ଟି ମାମଲା ବିଚାରକୁ ନିଆଯାଇ ଫଇସଲା କରାଯାଇଛି ।

## ୧୫ ହଜାର ପୁରୁଷ ଓ ମହିଳାଙ୍କ ଅସ୍ତ୍ରୋପଚାର

ପରିବାର କଲ୍ୟାଣ କାର୍ଯ୍ୟକ୍ରମରେ ଗତ ଅକ୍ଟୋବର ମାସରେ ମୋଟ୍ ୧୫ ହଜାର ୨୬ ଜଣ ପୁରୁଷ ଓ ମହିଳା ଜନ୍ମ ନିୟନ୍ତ୍ରଣ ଅସ୍ତ୍ରୋପଚାର କରିଛନ୍ତି । ତନ୍ମଧ୍ୟରୁ ମହିଳାଙ୍କ ସଂଖ୍ୟା ୧୩ ହଜାର ୪୫୮ ବୋଲି ଜଣାଯାଇଛି । ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ନିର୍ଦ୍ଦେଶାଳୟ ପକ୍ଷରୁ ପ୍ରକାଶିତ ବିବରଣୀରେ ଏହି ତଥ୍ୟ ପ୍ରକାଶ ପାଇଛି ।

ସନ୍ତାନ ଜନ୍ମ ବ୍ୟବଧାନ ସମୟ ବୃଦ୍ଧି ଉଦ୍ଦେଶ୍ୟରେ ଏହି ମଧ୍ୟରେ ୧୩,୯୯୦ ଜଣ ମହିଳା "ଲୁପ୍" ଗ୍ରହଣ କରିଛନ୍ତି । ରାଜ୍ୟର ସ୍ୱାସ୍ଥ୍ୟ କେନ୍ଦ୍ରଗୁଡ଼ିକରେ ୭୪,୬୪୬ଟି ଗର୍ଭ ନିରୋଧ ବଟିକା ଏବଂ ନଅ ଲକ୍ଷ ୬୬ ହଜାର ୮୦ଟି ନିରୋଧ ବଣ୍ଟନ କରାଯାଇଛି । ସାର୍ବଜନୀନ ଟୀକାଦାନ କାର୍ଯ୍ୟକ୍ରମରେ ଏହିମାସ ମଧ୍ୟରେ ୫୮,୨୨୬ ଜଣ ଗର୍ଭବତୀ ମହିଳାଙ୍କୁ ଧନୁଷ୍ଟଙ୍କାର ପ୍ରତିଷେଧକ ଟୀକା ଦିଆଯାଇଥିଲା । ଏହାବ୍ୟତୀତ ୬୪,୯୦୬ ଜଣ ଶିଶୁଙ୍କୁ ଡି. ପି. ଟି., ୬୪,୭୧୯ ଜଣ ଶିଶୁଙ୍କୁ ପୋଲିଓ, ୭୮,୯୫୭ ଜଣ ଶିଶୁଙ୍କୁ ବି. ସି. ଜି. ଏବଂ ୪୬,୪୮୬ ଜଣ ଶିଶୁଙ୍କୁ ମିଳିମିଳା ରୋଗ ପ୍ରତିଷେଧକ ଟୀକା ଦିଆଯାଇଥିଲା ।

ପୁଷ୍ଟିକର ଖାଦ୍ୟ ଅଭାବଜନିତ ରକ୍ତହୀନତା ରୋଗରେ ପୀଡ଼ିତ ୬୫,୭୬୮ ଜଣ ମହିଳା, ୧,୫୫,୫୦୩ ଜଣ ଶିଶୁ ଚିକିତ୍ସା କରାଯିବା ସଙ୍ଗେ ସଙ୍ଗେ ୧,୪୬,୯୧୭ ଭିଟାମିନ୍ "ଏ" ବଟିକା ବଣ୍ଟନ କରାଯାଇଥିଲା ।

# ମୋ ବାପା – ମୋ ସ୍ମୃତି

ଦୀପ୍ତି ପଟ୍ଟନାୟକ

ଅନୁଗୁଳ ମେଳା । ବିସ୍ତୃତ ଅଞ୍ଚଳରେ ବାଉଁଶ ପାଡିଆରେ କୁଡ଼ିଆଟିମାନ ଧାଡ଼ି ଧାଡ଼ି ହୋଇ ତିଆରି ହୋଇଥାଏ । ପରିବାର ନେଇ ଯାଇଥିବା କର୍ମୀମାନଙ୍କ ପାଇଁ ସ୍ୱତନ୍ତ୍ର ବଖରା । ବହୁ ଜନସମାଗମ ଲାଗି ରହିଥାଏ । ମୁଁ ଓ ମୋ ଭାଇ ପାବକ ହାତ ଧରାଧରି ହୋଇ ବୁଲୁଥାଉ । ରୋଷଘର ଆମକୁ ଖୁବ୍ ଭଲ ଲାଗେ । ଛୋଟ ଛୋଟ ବୁନ୍ଦା ପରି ପନିପରିବା ଗଦା ହୋଇଥାଏ । ହଜାରରୁ ଅଧିକ ଲୋକ ଖାଉଥିବେ । ପଙ୍ଗତରେ ବସି ଖାଇବାର ଆନନ୍ଦ କିଏ କଳନା କରିବ ! ନେତୀ ଓ କର୍ମୀମାନଙ୍କ ଉପରେ ରନ୍ଧା ଦାୟିତ୍ୱ । ମୋ ବୋଉ ଶଶୀବାଳା କାନୁନ୍‌ଗୋ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ଅସହଯୋଗ ଆନ୍ଦୋଳନରେ ଜେଲ୍ ବରଣ କରିଥିବା ବେଳେ ପୂଜ୍ୟା ରମାଦେବୀ, ମାଳତୀ ଦେବୀଙ୍କ ତତ୍ତ୍ୱାବଧାନରେ ରନ୍ଧା ବଢ଼ାର ତାଲିମ ପାଇଥାଏ । ତେଣୁ ସେ ଏହିପରି ମେଳାମାନଙ୍କରେ ରୋଷଘରର ଗୋଟିଏ କିଛି ଦାୟିତ୍ୱ ନେଇଥାଏ । ଖାଇବା ବେଳ ହେଲେ ସମସ୍ତେ ସମସ୍ତଙ୍କୁ ଲୋଡନ୍ତି । ମୁରୁଜ ଚିତା ଠା'କୁ ଠା' ପଡ଼ିଥାଏ । ଝିଅମାନେ ବୋଧହୁଏ ତାହା କରୁଥିଲେ ।

ଆମେ ଛୋଟ ହେଲେ ବି ବାପାଙ୍କ ଏପଟେ ସେପଟେ ବଡ଼ମାନଙ୍କ ସଙ୍ଗରେ ବସିଯାଉ । ସେଦିନ ଭାଇର ମୋର ହାତ ଛଡ଼ାଛଡ଼ି ହୋଇଗଲା। ତାକୁ ୨/୩ ବର୍ଷ ଓ ମତେ ୪/୫ ବର୍ଷ ହୋଇଥିବ କି କଅଣ । ସେ କିନ୍ତୁ ଗହଳି ଭିତରେ ବାପାଙ୍କ ପାଖରେ ପହଞ୍ଚି ଖବର ଦେଇଦେଲା — "ଦେ" ହଜିଯାଇଛି । ପଙ୍ଗତରୁ ଉଠିବା ମନା । ଯେତେ ଘର ଯେତେ ବଖରା ମୁଁ ପଶି ପଶି ସବୁ ଖୋଜିଲେ ବି ଆମ ଘରଟି ପାଉନଥାଏ । ଜଣେ କେହି ଭଦ୍ରଲୋକ ମତେ ଖାଇବା ଯାଗାକୁ ନେଇଗଲେ । କହିଲେ — "ବାପା କିଏ ଚିହ୍ନ" । ମୁଁ ତାଙ୍କ କାନ୍ଧରୁ ଖସିଯାଇ ବାପାଙ୍କ ପାଖେ ହାଜର । ହଜିଲା ଜିନିଷ ମିଳିବା ପରେ ଯେଉଁ ଆନନ୍ଦ ମିଳେ ସେଦିନ ତା'ର ସ୍ୱାଦ ପାଇବାର କଳ୍ପନାକୁ ଏବେ ଭାବୁଛି — ଶିହରି ହେଉଛି !!! "ବାପା" ବୋଲି ମୋ ହୃଦୟ ଭିତରେ ଏକ ବ୍ୟକ୍ତିତ୍ୱ ଆଙ୍କି ହୋଇଯାଇଥିଲା । ସେହି ଦିନଠାରୁ ୧୯୯୦ ଜୁନ୍ ୨୨ ତାରିଖ ସକାଳ ୯ଟା ୪୫ ପର୍ଯ୍ୟନ୍ତ ମୋ ବାପାଙ୍କୁ ମୋ ଭିତରେ ମୁଁ ଏଭଳି ସାଇତି ରଖିଥିଲି ତା'ର କଳନା କେବେ କରିପାରି ନଥିଲି କି ପାରିବି ନାହିଁ । ଚାରିବର୍ଷ ବୟସରେ ହଜିଯାଇଥିଲି ସିନା ଚାଳିଶ ବର୍ଷ ଧରି ବାନ୍ଧି ରଖିଥିବା "ସମ୍ପଦ" ମୁଁ ହଜାଇଦେଲି ଜୁନ୍ ୨୨, ୧୯୯୦ ମସିହାରେ — ପରମ ପୂଜନୀୟ ନୀତିକ, ବିରାଟ ମଣିଷ ମୋର ପିତୃଦେବ ବିନୋଦ କାନୁନ୍‌ଗୋଙ୍କୁ ।

## ଭିନ୍ନ ଦିଗନ୍ତ :

ଆଜି ୧୯୯୦ ଡିସେମ୍ବର ୨ ତାରିଖ । ଉତ୍କଳ ପ୍ରସଙ୍ଗର ସହ ସମ୍ପାଦକଙ୍କ ଫୋନ୍ ପାଇଲି । ସେ ମୋ ଘରୁ ଫେରିଛନ୍ତି । ମତେ ପାଇନାହାନ୍ତି । ମୋର ଦିପଦ ଅନୁଭୂତି ଲେଖିବି । ସାମ୍ନାରେ ମୋ ବାପାଙ୍କର ପ୍ରତିଛବି । କାନରେ ମୋର ବାଜି ଉଠୁଛି ଏପ୍ରିଲ୍ ୩୦, ୧୯୯୦ ସନ୍ଧ୍ୟାର କଥା । ଆମ ସଙ୍ଗରେ ଦିଜଣ ବିଶିଷ୍ଟ ଭଦ୍ରଲୋକ ଯାଇଥିଲେ ବାପାଙ୍କର ସାଧନାପୀଠ ମଲ୍ଲୀପୁରରେ ତାଙ୍କୁ ଦେଖିବା ପାଇଁ । ୬୦ ବର୍ଷର କର୍ମମୟ ଜୀବନର ପୂର୍ତ୍ତି ଉପଲକ୍ଷେ ମୁଁ ମୋ ଟେପ୍‌ରେକର୍ଡ଼ରଟି ନେଇଥିଲି ବାପାଙ୍କୁ ଦେଇ ଆସିବି ଓ ତାଙ୍କ କଥା ନେଇ ଆସିବି ମୋ କ୍ୟାସେଟ୍‌ରେ । ମୋ ମଝିଆ ଭାଇ ଦୀପକ ଯିଏ କି ନିଜକୁ ଉତ୍ସର୍ଗ କରି ଦେଇଛି କେବଳ ବାପାଙ୍କ ଅସମ୍ପୂର୍ଣ୍ଣ କାର୍ଯ୍ୟକୁ ସମ୍ପୂର୍ଣ୍ଣ କରିବା ପାଇଁ ବାପାଙ୍କର ଜଣେ ଅତି ଅନ୍ତରଙ୍ଗ ସହକାରୀ ବଂଶୀଧର ପଟ୍ଟନାୟକଙ୍କ ହାତରେ ନୂଆ ଟେପ୍‌ରେକର୍ଡ଼ରଟିଏ ପଠାଇଥିଲା ତାଙ୍କର ମନ କଥା ଗୁଣ୍ଠି ରଖିବା ପାଇଁ । "ଜଣକ ମୁହଁ ଶୁଖିଗଲାରେ — ଭାଇ ତା'ର ଭାରି ସୁଲାଖ୍" କହି କହି ଚଦର ଘୋଡ଼େଇ ହୋଇ ଧାଇଁ ଆସିଲେ ଆମ ପାଖକୁ । କହିଲେ ଅରୁ ଆସିଲେ ନିଶ୍ଚୟ କେହି ଆସିଥିବେ — ରେଡି ହୋଇ ରହ । ମୋ କଥାତକ ତା' କ୍ୟାସେଟ୍‌କୁ ଉଠାଇ ଦେ ବଇଁଶୀ ।

ତାଙ୍କରି ସେଦିନ ୯୦ ମିନିଟ କଥାରୁ ମୁଁ ଗୋଟିଏ ବାକ୍ୟକୁ ଗ୍ରହଣ କରିନେଲି । "କୌଣସି ନୈତିକ ସ୍ଖଳନ ନଘଟାଇ, ସତ୍ ଉପାୟରେ ଅର୍ଥ ଉପାର୍ଜନ କରି ସ୍ୱଚ୍ଛଳ ଜୀବନ ଯାପନ କରିବା ହିଁ ମୋ ପିଲାଟିକୁ ମୋର ଉପଦେଶ ।" ସେଦିନ ସେ ମସ୍ତିଷ୍କ ଓ କଲମ ଦୁଇଟି ଜିନିଷ ଭଗବାନଙ୍କୁ ମାଗିଥିଲେ ପ୍ରଥମ ଥର ପାଇଁ ।

୧୯୬୨। "ପବନ" ଉପରେ ବହିଟିଏ ବାହାର କରି ସାଇକେଲ୍‌ରେ ଆସି ପହଞ୍ଚିଗଲେ ଗାଁରେ। "ପବନ"କୁ ଧରି ଆଣିଛି – ପବନକୁ ଧର ଧର – ପାଟିକଲେ। ଆମେ ଧରିବାକୁ ଚେଷ୍ଟା କଲୁ – ମୁହଁ ମାଡ଼ି ପଡ଼ିଲୁ ସିନା ପବନକୁ ଧରିପାରିଲୁ ନାହିଁ। ଶାଗୁଆ ରଙ୍ଗର ଛୋଟ ବହିଟିକୁ କାଢ଼ି ଦେଖାଇ ପବନ, ପାଣି, ଆକାଶ ଉପରେ ଆମକୁ ବୁଝାଇଦେଲେ।

୧୯୬୪ ଜାନୁଆରୀ ପହିଲା ଦିନ ସଙ୍କଳ୍ପ ନେଇ ଗୋଟିଏ ଟଙ୍କା ଧରି ବାପା ଚାଲିଆସିଥିଲେ ଏକ ପ୍ରସ୍ଥୀ ହୋଇ। ଓଡ଼ିଆ ଏନ୍‌ସାଇକ୍ଲୋପେଡ଼ିଆ ବା ଜ୍ଞାନମଣ୍ଡଳର କାର୍ଯ୍ୟ ଆରମ୍ଭ ପୂର୍ବରୁ ସେ ପ୍ରଥମ ଖଣ୍ଡଟି ପ୍ରକାଶ କରିଦେଇଥିଲେ। ଆମେ ଥାଉ ଗାଁରେ। ବୋଉ ଉପରେ ଗାଁ, ଘର, ବାଡ଼ି ବଗିଚା, ଧାନ, ନଡ଼ିଆ ଆଦି ଶୃଙ୍ଖଳର ଦାୟିତ୍ୱ। ଘର କଥା ବୁଝିବା ତ ଦୂରର କଥା ସେହି କେତେବର୍ଷ ଘରକୁ ଯାଉଛନ୍ତି କି ନାହିଁ ସନ୍ଦେହ। ବୋଉ ମୋର ନିଜକୁ ବଳି ଦେଇ ବାପାଙ୍କୁ ବଡ଼ କରିବାରେ ଏଭଳି ଦାୟିତ୍ୱ ମୁଣ୍ଡାଇ ମୁଣ୍ଡାଇ ଚାଲିଥିଲା। ତା'ରି କାର୍ଯ୍ୟ ଆମ ଗାଁର ମହିଳାମାନଙ୍କୁ ସଂସ୍କାର ଦେଇଥିଲା।

ସମସ୍ତେ ଜାଣନ୍ତି – ୧୯୬୦ ଡିସେମ୍ବର ୨ ତାରିଖରେ "ଜ୍ଞାନମଣ୍ଡଳ"ର ପ୍ରଥମ ଖଣ୍ଡ ଉଦ୍‌ଘାଟନ ହେଲା, ଡକ୍ଟର ହରେକୃଷ୍ଣ ମହତାବ ମୁଖ୍ୟମନ୍ତ୍ରୀ ଥିବାବେଳେ। କଟକ ଭୁବନେଶ୍ୱରର ୧୨୦ ଜଣ ମାନ୍ୟଗଣ ବ୍ୟକ୍ତିଙ୍କୁ ଡକାଯାଇଥିଲା। ଜଣେ କେହି ଆସି ନଥିବାର ମୋର ମନେ ପଡୁଛି। ସେଦିନର ଆନନ୍ଦ କିଏ କଳନା କରିବ! ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ବଳାଇ ପାଳିତ, କାଳୀ ବାବୁ ପ୍ରଭୃତି ବହୁ ରାତି ପର୍ଯ୍ୟନ୍ତ ଆନନ୍ଦରେ ବିଭୋର ହୋଇ ପଡୁଥିଲେ। ୧୨ ଫୁଟରେ ୨୦ ଫୁଟ ସେହି ଘରଟି – ଅନ୍ଧ କବାଟରେ କବାଟରେ କବାଡ଼ି ବଲାକବାଟ ବୋଲି ଥାଇ ଦେଇଥାନ୍ତି। ଖାଲି କରାହୋଇ ନାଲି ଗାଲିଚ୍ ବିଛା ହୋଇଥାଏ – ମୋର ସାନ ଭାଇ ଦୁଇଜଣ ଦୀପକ ଓ ଆଲୋକ ୬ ଓ ୪ ବର୍ଷର। ସଫଳତାର ତୃପ୍ତି ସେହିଦିନ ହିଁ ବାପାଙ୍କ ଚେହେରାରେ ଫୁଟି ଉଠିଥିଲା। ଆଜି ୧୯୯୦ ଡିସେମ୍ବର ଦୁଇରେ ଦେବସ୍ଥାନ ରୂପର ପ୍ରତିଛବି ପାହାଡ଼ାରୁ ଆମ ସମସ୍ତଙ୍କ ମାନସପଟରେ ନାଚି ଉଠୁଛି। ୩୦ ବର୍ଷ ଧରି ପାଳି ଆସୁଥିବା ଦିନଟି ଆଜି ଶୂନ୍ୟ।

ଜ୍ଞାନମଣ୍ଡଳ ଦୁଇ ଖଣ୍ଡ ବାହାରି ଥିଲେ ବି ୧୯୬୩ ମସିହା ବେଳକୁ ବାପା ପୁରାପୁରି ଏକାଟିଆ ସେହି ନିମ୍ବଚୌଡ଼ି ଘରେ ରହୁଥାନ୍ତି। ମୋ ବଡ ଭାଇ ପାବକ (କେନେରାଲ୍ ସେକ୍ରେଟାରୀ, ଜ୍ଞାନମଣ୍ଡଳ) କେବଳ କଟକ ଚାଲି ଆସିଥାଏ ହାଇସ୍କୁଲ୍‌ରେ ନାଁ ଲେଖାଇବା ପାଇଁ। ବାପା ଅନୁଭବ କଲେ ଗାଁରେ ପିଲାମାନେ ରହିଲେ ବାହାର ଦୁନିଆ ସାଙ୍ଗରେ ଖାପ୍ ଖୁଆଇ ଚଳିପାରିବେ ନାହିଁ। ତେଣୁ ଜଣକ ପରେ ଜଣକୁ ଆଣିବାକୁ ଭାବିଲେ। ଦୀପକ ଆସିଗଲା ତା'ର କିଛି ଦିନ ପରେ। ମୋ କଥା ତାଙ୍କ ମନରେ କ'ଣ ଥିଲା ତାହା ସେ ହିଁ ଜାଣୁଥିଲେ।

ଦିନେ ସନ୍ଧ୍ୟାବେଳେ ଗାଁରେ ବାପାଙ୍କୁ ଦେଖିଲି ଖୁବ୍ ଖୁସି ମନରେ। କିଛି ସୁବିଧା ହୋଇଗଲେ ଘରକୁ ବହୁ ପ୍ରକାର ଜିନ ନେଇ ବାପା ସାଇକେଲରେ ପହଞ୍ଚନ୍ତି। କିନ୍ତୁ ଆଜି କ'ଣ ଜିପ୍‌ରେ ଆସିଛନ୍ତି – ଆନନ୍ଦ ଶତ ଗୁଣିତ ହୋଇଗଲା। ମତେ ଚୁପ୍‌କରି ଡାକି କହିଲେ, ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମତେ ମା' ବୋଲି ହିଁ ଡାକୁଥିଲେ। କଟକ ଯିବା। ସେଠାରେ ତୁ ପାଠ ପଢ଼ା ଶୁଣି ଆରମ୍ଭ କରିନୁ। ଏକା ଚଳି ପାରିବୁ ନାହିଁ ?" ଆନନ୍ଦ – ବିଷାଦଭରା "ହଁ"ଟିଏ କରି ବୋଉ ପାଖକୁ ଦଉଡ଼ି ଗଲି। ବୋଉ ବାପାଙ୍କୁ କ'ଣ କହିଲା କେଜାଣି – ତାକୁ ଉତ୍ତର ଦେବାରୁ ମୁଁ ଶୁଣିଲି – ଯିଏ ଭଲ ହେବ ସେ ସବୁଠାରେ ହିଁ ଭଲରେ ରହିବ ଖରାପ ହେବାକୁ ଗଢ଼ିଲେ ପେଡ଼ି ଭିତରେ ରଖିଲେ ବି ଖରାପ ହେବ।" ଏହି କଥା ପଦକ ମୋ ଜୀବନର ଗତିକୁ ସମ୍ପୂର୍ଣ୍ଣ ବଦଳାଇ ଦେଲା।

ବାପାଙ୍କ ନିର୍ଭିକପଣିଆ ଅତି ଉଚ୍ଚକୋଟୀର। ଦାରିଦ୍ର୍ୟ କେବେ ତାଙ୍କ ମନକୁ ସ୍ପର୍ଶ କରିନଥିଲା। ଥରେ ଯାହା କହିଦେଉଥିଲେ ତାହା ଥିଲା ତାଙ୍କର ପ୍ରଥମ ଓ ଶେଷ କଥା। ଘଟଣାଚକ୍ରରେ ଯଦି କିଛି ଅସୁବିଧା ଉପୁଜୁଥିଲା ତେବେ ଅବା ବ୍ୟତିକ୍ରମ ହେଉଥିଲା। ମତେ ଥରେ ଗୋଟିଏ ଘଟଣାରେ କହିଥିଲେ – "ମା' ଜୀବନରେ ଥରେ "ତ୍ରୁଟି" ହେବୁ – ଯେଭଳି ଦ୍ୱିତୀୟ ଥର ପାଇଁ ମୁହାଁମୁହିଁ ହେବାକୁ ନପଡ଼େ।" ଏହି କଥା ପଦକ ମୋର ପାଥେୟ ହୋଇଛି।

୧୯୬୩ରେ ମତେ ଆସିବାକୁ ପଡ଼ିଲା। ମୋ ସାନଭାଇ ଫେନ୍ନୁନା (ଡାକ୍ତର ଆଲୋକ କାନୁନ୍‌ଗୋ) ବୋଉ ପାଖରେ ଗାଁରେ ଥାଏ। ଗୃହ ଶିକ୍ଷକ ଜଣେ ତା' ପାଇଁ ନିଯୁକ୍ତ ହୋଇଥାନ୍ତି। ମୁଁ ପାଠ ପଢ଼ିବା ପାଇଁ ଆସିଲେ ବି ବାପାଙ୍କ ପରିଶ୍ରମ ବା ଦିନରାତି ଖଟଣି ଦେଖି ମୋ ମନ ଅନ୍ୟ ଦିଗକୁ ଯାଇପାରିଲା ନାହିଁ। ରାତିରୁ ବାପା ଉଠନ୍ତି। ଚୁପ୍‌ଚାପ୍ ଲେଖନ୍ତି ବସି – ଟେବୁଲ୍ ଲ୍ୟାମ୍ପଟି ଲାଗେ। ମୋ ନିଦ ଭାଙ୍ଗିଯାଏ। ଗ୍ୱ' କରି ଦିଏ – ଆସ୍ତେ ଆସ୍ତେ ଅଗଣାଟିକୁ ଓଳାଇ ସଫା କରି ଦିଏ। ଅଗଣାରେ ଥିବା କନିଆରୀ ଗଛରୁ ଖୁବ୍ ପତ୍ର ଝଡୁଥାଏ ସେତେବେଳେ। ବାପା ଆସି ସାହାଯ୍ୟ କରନ୍ତି ପତ୍ର ଉଠାଇ ଦେବାରେ। ପର ଦିନ ମୁଁ ଉଠିଲା ବେଳକୁ ଅଗଣା ସଫା। କ୍ରମେ ବାପାଙ୍କର ସମସ୍ତ ଦାୟିତ୍ୱ ମୁଁ ବହନ କରିଗଲି। ଖିଆଦ ହେଲାବେଳେ ବାପା ମତେ ଇଂରାଜୀ ଗ୍ରାମାର ପଢ଼ାନ୍ତି। ଷ୍ଟେଟସ୍‌ମ୍ୟାନ୍ କାଗଜରୁ ଶବ୍ଦ ସଂଗ୍ରହ କରେ। ପର ଦିନ ପାଇଁ ତାହା ମୋର ଅଧ୍ୟୟନର ମାଧ୍ୟମ। ଅଧ୍ୟୟନ ଅଧ୍ୟାପନାର ଫଳକ ମୁଁ ସେତେବେଳେ ବୁଝି ପାରିଲି – ଯେତେବେଳେ ୧୦ ମିନିଟ୍‌ର ପାଠ ମୋ ପାଇଁ ଅସରନ୍ତି ହୋଇ ପଡୁଥିଲା।

ସେହି ଛୋଟ ଘରେ ଅଖା ବସ୍ତା କେତୋଟି ଗଦାମରା ହୋଇଥାଏ। ଭେଙ୍କଟରମଣ ଥାନ୍ତି କଲେକ୍ଟର ବା ସେମିତି କଥଣ। ପ୍ରଥମେ ସେ ତାଙ୍କ ପତ୍ନୀ ଲୀଳା ଭେଙ୍କଟରମଣଙ୍କ ସହିତ ସରକାରୀ ଭିଜିଟ୍‌ରେ ଆସିଥିଲେ। ବାପା ମତେ ତାଙ୍କ ପାଖକୁ ଡାକିଲେ। ମୁଁ ଓ ମୋ ସାନଭାଇ ଦୁଇଜଣଙ୍କୁ ଦେଖାଇ କହିଲେ – ଏମାନେ ମୋର ସାହାଯ୍ୟକାରୀ। ବସ୍ତାରେ କ'ଣ ରଖିଛନ୍ତି ବୋଲି ସେମାନେ ପଚାରିଦେଲେ।

ପରଦିନ ଖିଆର ସମୟରେ ମୁଁ ପଚାରିଲି – କି କି ଜିନିଷ ଏଥିରେ ଅଛି ? ବାପା ଟିକିଏ ହସିଲେ। କହିଲେ – "ମା'ଲୋ ଅମୂଲ୍ୟ ରତ୍ନ। ଯେତେ ଯେତେ ଖବରକାଗଜ, ପତ୍ର ପତ୍ରିକା ମୁଁ ପଢୁଛି ତା'ର ସାରଟକ କାଟିକରି ସାଇତିଛି। କେବେ ସୁବିଧା ହେଲେ ତାକୁ ଫାଇଲିଙ୍ଗ୍ କରିଦେବା। ମୁଁ କହିଲି ତାକୁ ସଜାଡ଼ି ଦେବା"।

ସେତେବେଳେ ଆମ ଜ୍ଞାନମଣ୍ଡଳ ପରିବାରର ସଂଖ୍ୟା ହୋଇଥାଏ ୬। ଶୀର ଜଣେ ଅତି ନିଜର ଲୋକଙ୍କର ବଦଳି ହୋଇଥାଏ କଟକ। ସେ ଥାଆନ୍ତି — ଆଉ ଜଣଙ୍କୁ ମୋ ପାଇଁ ବାଲିକୁଦାରୁ ବାପା ଡାକି ଆଣିଥିଲେ ଗୋବିନ୍ଦ ଚନ୍ଦ୍ର ଦାସଙ୍କୁ। ସେ ସ୍ୱାଧୀନତା ସଂଗ୍ରାମରେ କିଛି କାମ କରିଥିଲେ।

ବାପା କହିଲେ — ଯେତେ ଅକ୍ଷର ଅଛି ସବୁ ଅକ୍ଷର ଅନୁସାରେ ଏଗୁଡ଼ିକ ସଜଡ଼ାଯାଉ। ଛ' ଜଣ ଆମେ ଥାଉ — ଦୋଳ ଦାଇ, କୁସୁ ଦାଇ ଏମାନେ ଅଳ୍ପ ଦୂରରେ ଥାନ୍ତି। ସମସ୍ତଙ୍କୁ ଲୋଡ଼ି ଫାଇଲ ସଜଡ଼ା କାମ ଆରମ୍ଭ ହେଲା — ଦଶଜଣ ହେଲେ କାମ ଆରମ୍ଭ ହୋଇଯାଏ। ଜଣକ ଭାଗରେ ୪ଟି ଲେଖା ଅକ୍ଷର ପଡ଼େ। ସ୍ୱର ବର୍ଣ୍ଣ, ବ୍ୟଞ୍ଜନ ବର୍ଣ୍ଣ। ଛୋଟ ଅକ୍ଷର ଯଥା—ଇ, ଉ ଆଦି ଥାଏ ଦୀପକ ଭାଗରେ। "କଚଟତପ" ପଦ୍ଧତି ପ୍ରୟୋଗ କରି ଅଳ୍ପ ଜାଗାରେ କିପରି କଟିଙ୍ଗସଗୁଡ଼ିକ ରହିବ ଅଭିଜ୍ଞତାରୁ ଜଣାପଡ଼ିଲା। ସେହି କାମ ଗୋଟିଏ ଟେବୁଲରେ ହିଁ ବାପା ଓ ମୁଁ ଶହ ଶହ ସଂଖ୍ୟାରେ କରିଦେଇଛି।

ସମସ୍ତେ କହି ଲାଗନ୍ତି — ଲେଖୁନ କାହିଁକି — ବୋଉ କହେ ଅନ୍ୟମାନେ କୁହନ୍ତି — ବାପା କିନ୍ତୁ ସେମାନଙ୍କୁ କିଛି କହନ୍ତି ନାହିଁ। ସନ୍ଧ୍ୟାବେଳେ ମତେ ସାଙ୍ଗରେ ନେଇ ବିଭିନ୍ନ ବନ୍ଧୁଙ୍କ ଘରକୁ ଯାନ୍ତି ଓ ରାସ୍ତାରେ ତାଙ୍କ ମନ କଥା କହି କହି ଚାଲନ୍ତି। ଯାହା ଶେଷ ସମୟ ପର୍ଯ୍ୟନ୍ତ ଥିଲା — ମନ କଥା ମତେ କହିବାରୁ ମୁଁ ସେତେବେଳେ ଯାହା ଗ୍ରହଣ କରିନଥିଲି ପରବର୍ତ୍ତୀ ସମୟରେ ସେହି ସମସ୍ତର ଚଳଣି ରୁଚିକୁ କିଛି ଭାବରେ ଆଦରି ନେଲି।

ଫାଇଲ କାମ ତ ଅସରନ୍ତି। ହଜାର ଦି ହଜାରରୁ ବଢ଼ି ବଢ଼ି ୩୦ ହଜାରରୁ ଊର୍ଦ୍ଧ୍ୱ ଫାଇଲ ଏବେ ଜ୍ଞାନମଣ୍ଡଳ ଅଫିସ୍‌ରେ। କାମ ବଢ଼ିଲା। ଆଉ ସେହି ଘ ର ଚଳିଲା ନାହିଁ। ବହି, ମାଗାଜିନ୍, ଦୈନିକ କାଗଜର ସଂଖ୍ୟା ବଢ଼ି ବଢ଼ି ଚାଲିଲା। ପାବକ ଓ ମୁଁ ଭିନ୍ନ ଭିନ୍ନ ସମୟରେ ଡିକ୍ଟେସନ୍ ନେବା ଅଭ୍ୟାସ କଲୁ। ସହରର ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କର ବାପାଙ୍କ ସହିତ ବନ୍ଧୁତା ଓ ଯା' ଆସ ଫଳରେ ଆମେ ପିଲାମାନେ ସେହି ଛୋଟିଆ ଘରେ ନୀରବରେ ଚଳିବାରେ ଅଭ୍ୟସ୍ତ ହୋଇଯାଇଥାଉ। ଦିନରେ ଅଫିସ ଓ ରାତିରେ ସମସ୍ତେ ଏକାଠି ଶୋଇପଡ଼ନ୍ତି। ମୋ ପାଇଁ ଗୋଟିଏ ଖଟ ଥାଏ — କାରଣ ମୋର ତିନିଭାଇ। ଏହିପରି ବାରବର୍ଷରୁ ଊର୍ଦ୍ଧ୍ୱ କାଳ ସେହି ଘରେ ଜ୍ଞାନମଣ୍ଡଳର ମୂଳଦୁଆ ମଜବୁତ୍ ହେଉଥିଲା।

୧୯୬୬ ମସିହାରେ ବାରବାଟୀ ଷ୍ଟାଡିୟମକୁ ଅଫିସ୍ ଉଠିଗଲା। ୬୦୦ ସ୍କୋୟାରଫିଟ୍‌ର ଏହି ଘରେ କେତେ ସ୍ମୃତି ବିସ୍ମୃତିର କଥା ଘଟିଯାଇଛି। ସଜଡ଼ାଯାଇଥିବା କଟିଙ୍ଗସ୍‌ଗୁଡ଼ିକୁ ସୁନ୍ଦର ଭାବରେ ଫାଇଲିଙ୍ଗ୍ କରାଯାଇଛି। ଆମକୁ କିନ୍ତୁ ସେହି ନିମ୍ବଚୌଡ଼ି ଘରେ କିଛି ଦିନ ରହିବାକୁ ପଡ଼ିଥିଲା। ସକାଳ ୭ଟା ଜଳଖିଆ ଖାଇ ବାପାଙ୍କ ପାଇଁ ନେଇ ମୁଁ ଚାଲିଆସେ ଯେ ରାତି ୯ଟା ବେଳେ ଫେରେ। ଭିନ୍ନ ଭିନ୍ନ କାମ କରିବାକୁ ହୁଏ। ବାରଘଣ୍ଟା କଠିନ ପରିଶ୍ରମ ଓ ଦୁଇଘଣ୍ଟା ବିଶ୍ରାମ।

ଏମେ କାମ କରିବାର ସମୟ, ସାକ୍ଷାତ ସମୟ ଅଲଗା କରିବାକୁ ଆମେ ବାଧ ହେଲୁ। ଲେଖାପଢ଼ା ସମୟରେ କେହି ଆସିଗଲେ ଆଉ ଲେଖିବା ସମ୍ଭବ ହୁଏ ନାହିଁ। ଆମେ ତିନିଜଣ ହୋଇଯାଇଥାଉ ଡିକ୍ଟେସନ୍ ନେବା ପାଇଁ। ନୃସିଂହ ଚରଣ ସାହୁ ନିମ୍ବଚୌଡ଼ି ଘରୁ ଆମମାନଙ୍କ ସାଙ୍ଗରେ ଯୋଗଦେଇଥାଏ। ସେ ରେଭେନ୍ସା କଲେଜରେ ପଢ଼େ, ବାପାଙ୍କ ପାଖରେ କିଛି ସମୟ ଡିକ୍ଟେସନ୍ ନିଏ ଓ ଅନ୍ୟ କିଛି ସମୟରେ ଚୌଦ୍ୱାରକୁ ଯାଏ। "ପ୍ରଜାତନ୍ତ୍ର"ରେ ଜହୁରୀ ଭାଇ ଦାୟିତ୍ୱ ତୁଲାଇବା ପରେ ବି ସେ ଆସେ ଡିକ୍ଟେସନ୍ ନେବା ପାଇଁ। ଆମର ଯେଉଁ "ଜ୍ଞାନମଣ୍ଡଳ" ପରିବାର ତା' ଭିତରେ ସ୍ୱରାଜ୍ୟ (ବିଶ୍ୱାଳ), ନୃସିଂହଙ୍କର ସ୍ଥାନ ଅଲଗା ଥିଲା।

## ଧରାବନ୍ଧା କାମ — ଷ୍ଟାଡିୟମରେ :

ମୋର ଏଭଳି ଧରାବନ୍ଧା ନିୟମ ହୋଇଯାଇଥିଲା ଯେ ବାପା ଯେଉଁଥିରେ ବ୍ୟସ୍ତ ଥିଲେ ବି ମୁଁ ସକାଳ ୭ଟାରୁ ରାତି ୯ଟା ପର୍ଯ୍ୟନ୍ତ ନିର୍ଦ୍ଧାରିତ କାମଗୁଡ଼ିକ କରିଯାଉଥିଲି। ଫାଇଲଗୁଡ଼ିକର ସଂଖ୍ୟା ନିର୍ଣ୍ଣୟ କରିବା, ଫ୍ଲାଇଲିଫ୍ ଉପରେ ସୁନ୍ଦର ଅକ୍ଷରରେ ନାଁ ଲେଖିବା, ଫାଇଲ୍ ଭିତରେ କେତେ ଜଣଙ୍କର ଲେଖା ରହିଲା ତା'ର ତାଲିକା କରି ପ୍ରତି ଫାଇଲ୍‌ରେ ରଖିବା କାମ ଥିଲା ମୋର। ଲେଖକମାନଙ୍କ ତାଲିକା ଅଲଗା ହେଉଥିଲା। ତେଣୁ ଜଣେ ଲେଖକଙ୍କର କେତେ ଫାଇଲ୍‌ରେ ଲେଖା ଅଛି ତାହା ସହଜରେ ଜଣାପଡ଼ି ଯାଉଥିଲା। ୧୫ ହଜାର ଫାଇଲ୍ ଓ ମୁଁ ସାତ ବର୍ଷକାଳ ଖୁଡ଼େଇ ତୁଡ଼େଇ ହେଉଥିଲୁ।

## ଦପ୍ତରୀଙ୍କ ଦାୟିତ୍ୱ :

ମଝିରେ ମଝିରେ କଟିଙ୍ଗ୍ କରିବା, ପେଷ୍ଟିଙ୍ଗ୍ କରିବା କାମ ମୁଁ ଓ ମୋର ଭାଇମାନଙ୍କୁ କରିବାକୁ ପଡ଼ିଥାଏ। ସ୍କୁଲ୍‌ରେ ପଢୁଥିଲେ ବି ଅବସର ସମୟରେ କାମରେ ସାହାଯ୍ୟ କରିବାରେ ଦୀପକ ଓ ଆଲୋକ କେବେ ପଛାଇ ନାହାନ୍ତି। ଦପ୍ତରୀ ଭାବରେ ଲୋକନାଥ ସିଂହ ମୂଳରୁ ଥାନ୍ତି — ପ୍ରହରାଜଙ୍କ ଭାଷାକୋଷରୁ ବିଦାହୋଇ। ଦୁଇଟଙ୍କା ମଜୁରୀ ଶେଷ ସମୟ ପର୍ଯ୍ୟନ୍ତ ପାଇ ଆସିଛନ୍ତି — ଦୁଇବର୍ଷ ଶଯ୍ୟାଶାୟୀ ଥିବା ଅବସ୍ଥାରେ ମଧ୍ୟ। ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କୁ ବାପା ପଇସା ଦେଇଛନ୍ତି। ତାଙ୍କ ଅନୁପସ୍ଥିତିରେ ଆମକୁ ତାଙ୍କ କାମ କରାଇବାରେ ଅଭ୍ୟାସ କରାଉଥିଲେ ବାପା।)

ସୁନ୍ଦର କରି ସବୁ କାମ ତୁଲାଇ ନପାରିଲେ ସମସ୍ତଙ୍କ ସାମ୍ନାରେ ହିଁ ଗାଳି ଖାଇବାକୁ ହୁଏ। କେହି ମିଛ କହିଦେଲେ ନିଆଁବାଣ ହୋଇ ଉଠୁଥିଲେ। ତେଣୁ ଆମେ ମିଛ କହୁଥିଲେ ବି ବାପାଙ୍କୁ କେବେ ମିଛ କହୁନଥିଲୁ। ବାପା ସବୁବେଳେ କହୁଥିଲେ — ମୋ ପିଲାଙ୍କୁ ମୁଁ ଗୋଟିଏ ମିଛ ଶିଖାଇଛି — କେହି ଆସିଲେ କହିବେ ବାପା ଘରେ ନାହାନ୍ତି — ଅନ୍ୟଟି ଆମେ ବେଳେ ବେଳେ ତାଙ୍କ ମନକୁ ସରସ ସୁନ୍ଦର କରି ରଖିବା ପାଇଁ କହିଦେଉ। ସେଥିପାଇଁ ଆମମାନଙ୍କୁ ବହୁ ପ୍ରମାଦ ଭିତର ଦେଇ ଗତି କରିବାକୁ ହୋଇଛି।

ମୋର ବିବାହ ବୟସ ହୋଇଥିଲେ ବି ଆମେ ଏଭଳି "ଜ୍ଞାନମଣ୍ଡଳ" କାର୍ଯ୍ୟ ସହିତ ସଂଶ୍ଳିଷ୍ଟ ହୋଇଥାଉ ଯେ ବାପା ଚିନ୍ତା କରିପାରନ୍ତି ନାହିଁ ମତେ ଅଲଗା କରିଦେଲେ "ଜ୍ଞାନମଣ୍ଡଳ" କାମ ହୋଇପାରିବ। ବହୁ ସମାଲୋଚନା ଶୁଣିବାକୁ ହୋଇଛି।

ସାମର୍ଥ୍ୟ କଥା ଉଠିଛି। ମୁଁ ଏଭଳି ଛାଇପରି ତାଙ୍କ ସହିତ ଲାଗିଥାଏ ଯେ ଚିନ୍ତା କରିବାକୁ ଅବସର ପାଆନ୍ତି ନାହିଁ। ପୂଜ୍ୟ ବିଶ୍ୱନାଥ ଦାସ ଗଭୀର ଭାବରେ ଆସିଥାନ୍ତି "ଜ୍ଞାନମଣ୍ଡଳ" କାର୍ଯ୍ୟାଳୟକୁ। ଦେଖା ଶୁଣା ପରେ ମୋ ଉପସ୍ଥିତିରେ ପଚାରିଦେଲେ — ବିନୋଦ, ଛିଅ କଥା କ'ଣ କରୁଛ ? ହଠାତ୍ ବାପାଙ୍କ ମୁହଁ ଶୁଖିଗଲା — ତାଙ୍କ ଆସିବାର ସରସତା ସତେ ଯେପରି ନଷ୍ଟ ହୋଇଯିବ। ମୁଁ ସଙ୍ଗେ ସଙ୍ଗେ କହିଲି — "ଆମ କାମ ନସରିଲେ କିଛି ହେବ ନାହିଁ।" ତା'ପରେ ମୁଁ ଦେଖୁଛି ବାପା ସବୁ କାମ ଦାମ ଭିତରେ ମତେ ଦେଖନ୍ତି ଓ ତାଙ୍କ ମୁହଁ ଶୁଖିଯାଏ।

୧୯୬୮ ମସିହା। ସପ୍ତମ ଓ ଅଷ୍ଟମ ଦୁଇଖଣ୍ଡ "ଜ୍ଞାନମଣ୍ଡଳ" ଲାଗ୍ ଲାଗ୍ ହୋଇ ବାହାରିଗଲା। ସପ୍ତମ ଖଣ୍ଡର ପାଣ୍ଡୁଲିପି ଦେଖିଲେ ଜଣାପଡ଼ିବ ମୁଁ ସମଗ୍ର ବହିଟି ସାତ ଦିନ ଭିତରେ ଡିକ୍ଟେସନ୍ ନେଇଯାଇଥିଲି। କେତେକ ନିଜସ୍ୱ ଲେଖା ବାପା ନିଜେ ଲେଖନ୍ତି। ଭାଇର ବି. ଏ. ପରୀକ୍ଷା। ତାକୁ ବ୍ୟସ୍ତ କରାନ୍ତୁଏ ନାହିଁ। ନୃସିଂହ ଅନ୍ୟ କାମରେ ଟିକିଏ ଅଧିକ ସମୟ ବ୍ୟସ୍ତ ରହୁଥାଏ। କବାଟ କିଳି ଫୁଲସ୍କେପ୍ ସାଇଜର କାଗଜ ୪୦ ଖଣ୍ଡ ହୋଇଗଲେ ମୁଁ ହାଲିଆ ହୋଇଯାଏ। ବାପା କୁହନ୍ତି — ତୁ ମା' ଶୋଇପଡ ମୁଁ ଲେଖୁଚି। ଦିନ ରାତି ନମାନି ଦୁଇଖଣ୍ଡ ବହି ବାହାର କରି ତା'ର ବିକ୍ରି ପଇସାରେ ମୋ ବାହାଘର ବାପା କରିଦେଲେ ଡକ୍ଟର ଅରବିନ୍ଦ ପଟ୍ଟନାୟକଙ୍କ ସଙ୍ଗରେ। ମୋ ଶ୍ୱଶୁର ଘର ଓଡ଼ିଶାର କେତୋଟି ବିଶିଷ୍ଟ ପରିବାର ମଧ୍ୟରୁ ଅନ୍ୟତମ। ଗ୍ରାମଡିହ ବେବର୍ତ୍ତା ପରିବାର। ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ଆଗରେ ବାପା ଏହି ପରିବାରର ପରିଚୟ ଦେଉଥିଲେ। ଜେଜେ ଶ୍ୱଶୁର ଶ୍ରୀଧର ପଟ୍ଟନାୟକ ଖୋର୍ଦ୍ଧାର ଅନରାରୀ ମାଜିଷ୍ଟ୍ରେଟ୍ ଥିବାବେଳେ ବିଲାତ ରାଣୀ ତାଙ୍କୁ ଯେଉଁ ପ୍ରଶଂସା ପତ୍ର ଦେଇଥିଲେ ତାହା ଏବେ ବି ବାପାଙ୍କ ଫାଇଲରେ ଅଛି। ପୂଜ୍ୟ ଆଚାର୍ଯ୍ୟ ହରିହର, କୃପାସିନ୍ଧୁ ହୋତା ସ୍ୱାଧୀନତା ସଂଗ୍ରାମ ସମୟରେ ଗ୍ରାମଡିହରେ ସମୟେ ସମୟେ ଯାଉଥିଲେ। ସେମାନଙ୍କ ପ୍ରଭାବ ମଧ୍ୟ ଏ ପରିବାରରେ କିଛି କମ୍ ନଥିଲା। ମୋ ପାଇଁ ଯେଉଁ ଉତ୍ତେଜନା, ଉଦ୍‌ବେଗର ସୃଷ୍ଟି ହୋଇଥିଲା ତାହାର ଶିକାର ହେଲେ ଡାଇବେଟିସ୍ ରୋଗରେ। ଆସିବାର ଆଠଦିନେ ଜାଣିଲି ବାପାଙ୍କର ସ୍ୱାସ୍ଥ୍ୟ ଭାଙ୍ଗିପଡ଼ିଛି — ଶଯ୍ୟାଶାୟୀ। କିନ୍ତୁ କେତେକ ଅନ୍ଧ ବିଶ୍ୱାସ ପାଇଁ ସେହି ଅବସ୍ଥାରେ ମତେ ଛାଡ଼ିବାକୁ କୁଣ୍ଠା ପ୍ରକାଶ ପାଉଥିଲା। କିନ୍ତୁ ପରବର୍ତ୍ତୀ ସମୟରେ ମୁଁ କାହାରି କଥା ଶୁଣିନଥିଲି — କାହାରି ପରାମର୍ଶ ଲୋଡ଼ିନଥିଲି — ମନେପଡ଼ିଲା ମାତ୍ରେ ଧାଇଁଯାଉଥିଲି ଦେଖିବା ପାଇଁ। ୧୯୬୯ରୁ ୧୯୯୦ ଜୁନ୍ ୨୭ ତାରିଖ ପର୍ଯ୍ୟନ୍ତ। ଜ୍ଞାନମଣ୍ଡଳ, ଶିଶୁ ଜ୍ଞାନମଣ୍ଡଳ ଯେତେବେଳେ ମୋ ସାହାଯ୍ୟ ଲୋଡ଼ିଛନ୍ତି ମୁଁ ଘର, ସଂସାର, ପିଲା ସବୁକୁ ଏଡ଼ାଇ ଧାଇଁଥିଲି ମୋ ବାପାଙ୍କୁ ବାନ୍ଧି ରଖିବା ପାଇଁ।

## ତାତ୍ସଲ୍ୟ ଅତି ଚମତ୍କାର :

ଦିନେ ଖାଇବସିଛୁ। କହିଲେ—ମତେ ଖାଲି ବହିବିଆ ହେଉଛି ମୁଁ କାଇଁ ଲେଖୁନି। ତୁ ବି କହିଲୁଣି ବୋଲି ଗିରିଜା (ପଟ୍ଟନାୟକ) କହୁଥିଲା — ନିଜର ତ ଯୋଗ୍ୟତା ନାହିଁ ଧାଡ଼ିଏ ଲେଖିବା ପାଇଁ, ଖାଲି ବାହାଦୁରୀ। ମୁଁ ଏକା ଦମ୍‌ରେ ୭ ବର୍ଷ ପରିଶ୍ରମ କରି "ପାକଶାସ୍ତ୍ର" ବୋଲି ଖଣ୍ଡିଏ ରନ୍ଧା-ବଢ଼ା ଲେଖିଲିଣି। ମୀରା କାନୁନ୍‌ଗୋ ବେକେରୀ ବିଭାଗ ଲେଖିଛନ୍ତି ସେ ବହିର। ମୀରା ଘରେ ବାପା ବସିଥିଲେ। ଖାଇ ବସିବୁ — ସେ କହିଲା ଆମେ ଗୋଟିଏ ବହି ଛାପିବୁ। ଚମକି ପଡ଼ିଲେ। ବହିର ଖାଦ୍ୟ ଓ ଶରୀର ବିଭାଗଟି ଛପା ସରି ଆଉ ୫ ଫର୍ମା ହୋଇଯାଇଥାଏ। ଅସନ୍ତୋଷ, ଭୁଲ ଛାପା ହୋଇଛି। ଦୁଇଟି ଫର୍ମା ରଖି ଅବଶିଷ୍ଟ ୩୦୦ ପୃଷ୍ଠା ଜ୍ଞାନମଣ୍ଡଳ ଛପା ହେଉଥିବା ପ୍ରେସ୍‌ରେ ଛାପିଦେଲେ। ଶବ୍ଦ ବଦଳାଇ ଉପଯୁକ୍ତ ଶବ୍ଦ ଖଞ୍ଜି ପ୍ରୁଫ୍ ସଂଶୋଧନ କରିବା ଦାୟିତ୍ୱ ବାପାଙ୍କର ଥିଲା। ଛ' ମାସରେ ବହି ସରିଗଲା — ଆନନ୍ଦ ଓ ସନ୍ତୋଷ କଥା ଲେଖିପାରୁ ନାହିଁ।

୧୯୮୪ ମସିହାରେ ମୋ ଡାଏରୀରେ ନିଜ ବିଷୟରେ ଭବିଷ୍ୟତ ବାଣୀ ଟିପି ରଖିଛି — "୧୯୯୨ରେ ବିନୋଦ କାନୁନ୍‌ଗୋ ଆଉ ଏ ସଂସାରରେ ନଥିବେ। ପରିଣତ ବୟସରେ ତାଙ୍କର ମୃତ୍ୟୁ ହୋଇ ଯାଇଥିବ। ସମସ୍ତଙ୍କ ମୁହଁରେ ତାଙ୍କ କଥା"।

ମୋ ଭାଉଜ ଦୁର୍ଗାବତୀ ତାଙ୍କର ଅତି ଆଦରର ବୋହୂ। ତା'ର ସମସ୍ତ ଯୋଗ୍ୟତା ଥାଇ ଶ୍ୱଶୁରଙ୍କ ସେବାରେ ନିଜକୁ ଉତ୍ସର୍ଗ କରି ଦେଇଥିଲା। ମଇ ୨୨ ତାରିଖ। ବାଥ୍‌ରୁମ୍‌ରେ ପଡ଼ିଯିବାର ଠିକ୍ ୭ ଦିନ। ମୁଁ ଦିନ ରାତି ସବୁବେଳେ ଜାଗ୍ରତ ରହୁଥିଲି। ଡିଲାକ୍ସେସନ୍ ପାଇଁ ଲାଉଞ୍ଜରେ ଥିବା ଖଟ ଉପରେ ଗଡ଼ି ପଡିଛି କି ନାହିଁ ବାପା ନିଜେ ଆସି ନଇଁପଡ଼ି ମତେ ଉଠାଇ ଦେଲେ। "ଦୁର୍ଗାକୁ ଟିକିଏ ଡାକ", ମୁଁ ଧାଇଁଗଲି ଭାଇମାନେ, ବୋଉ ଓ ଦୁର୍ଗା ଦୂରରେ ବସିଥିଲେ ବାପାଙ୍କୁ ମୋ ଦାୟିତ୍ୱରେ ଛାଡ଼ିଦେଇ। ସେ ପର୍ଯ୍ୟନ୍ତ ସମସ୍ତେ ନିଶ୍ଚିନ୍ତ ଥିଲେ। ମୁଣ୍ଡ ଫାଟିଗଲେ ବି ସେ ଖୁବ୍ ସତେଜ ଥାନ୍ତି। ନିଜ କାମ କାହାକୁ କରିବାକୁ ଦିଅନ୍ତି ନାହିଁ। (ଏଇଟା ତାଙ୍କର ସବୁ ଦିନର ଅଭ୍ୟାସ।)

ଦୁର୍ଗା ଓ ମୁଁ ଦୁଇ ପାଖରେ ବସିବୁ — ହଠାତ୍ ଉଠି ବସିପଡ଼ିଲେ....."ନିର୍ବାଣ! ନିର୍ବାଣ! ସମାଧି ସମାଧି।" ବୋଲି କହି ଉଠିଲେ। ମୁହୂର୍ତ୍ତେ ବିଳମ୍ବ ନକରି ପୁଣି କହି ଉଠିଲେ — "ବିଦାୟ ମା' ବିଦାୟ"। ବ୍ଲଡ ସୁଗାର ତ କମୁନଥିଲା। ପ୍ରଫେସରମାନେ ବି ତାଙ୍କୁ ଚିକିତ୍ସା କରିବା ପାଇଁ ସ୍ୱତଃ ଆସୁଥିଲେ। ଡାକ୍ତର ଆଲୋକ ଯେଉଁ ସ୍ୱାସ୍ଥ୍ୟ — ରେକର୍ଡ ରଖୁଚି ତାହା ଏକ ପୁସ୍ତକ ହେବ। ମୋର ମନେପଡ଼ିଗଲା ମୋ ଡାଏରୀ କଥା। ମାସଟିଏ ଖାଲି ତାଙ୍କ ଶରୀରକୁ ଆମେ ଯତ୍ନ ନେଲୁ ସିନା!

ତାଙ୍କ ସହିତ ୨୭ ବର୍ଷର କର୍ମମୟ ଜୀବନରେ ମୋର କେତେ ସ୍ମୃତି କେତେ ବିସ୍ମୃତି ପଥରେ ନିଜକୁ ହଜାଇ ଦେଉଛି ସିନା — ହଜି ଯାଇଥିବା "ଅମୂଲ୍ୟ ରତ୍ନ" ଆଉ ପାଉନି।

କେବେ କାହାକୁ କିଛି ମାଗି ନଥିବା ମଣିଷ ଗଲା ଏପ୍ରିଲ୍ ୧୦ରେ ୬୦ ବର୍ଷ କର୍ମମୟ ଜୀବନର ପୂର୍ତ୍ତି ଉପଲକ୍ଷେ ଭଗବାନଙ୍କୁ "କଲମ" ଓ "ମସ୍ତିଷ୍କ"କୁ ଦୁଇଟି ବର୍ଷ ପାଇଁ ମାତ୍ର ମାଗିଥିଲେ। କିନ୍ତୁ ଭଗବାନ ବଡ଼ ନିଷ୍ଠୁର — ଦୁଇମାସରେ ତାଙ୍କୁ ନେଇଗଲେ।

ଲେଖିବସିଲେ ଅନୁଭୂତି ସରିବ ନାହିଁ — ତାଙ୍କ ଜୀବନୀ ବା ଆତ୍ମ ଜୀବନୀ କଥା ଯେତେବେଳେ କହୁଥିଲି ବାପା କହୁଥିଲେ — "ମୋ ଜୀବନୀ ତ ଦୁଇ ପୃଷ୍ଠାରୁ ଅଧିକ ହେବ ନାହିଁ ମୋ ମାଆ।"

ମୁଁ ଏବେ କେତେଗୁଡ଼ା ପୃଷ୍ଠା ଲେଖିଲିଣି।



ପଟଚିତ୍ର ଛନ୍ଦ ଶିଳ୍ପୀ—ଶ୍ରୀକାନ୍ତ କୁମାର ରାଉତ

# ଶ୍ରୀ ଗୀତଗୋବିନ୍ଦ

(କବି ଜୟଦେବ କୃତ)



ପ୍ରହରାଜ ସତ୍ୟନାରାୟଣ ନନ୍ଦ

## ଏକାଦଶ ସର୍ଗ

ବହୁତ ସମୟ ଅନୁନୟ ଆଉ ବିନୟ ପରେ,
ମୃଗାକ୍ଷୀ ରାଧା ପ୍ରସନ୍ନା ହେଲେ ପୁଲକ ଭରେ ।
ଅନ୍ତ ରାଗର ଶେଷ ଆସ୍ୱାଦ ପଡୁଚି ଝରି,
ଅପରୂପ ବେଶ ବିଭୂଷିତ ହୋଇ ଏକାଳେ ହରି ।
ଶ୍ରୀରାଧା ରଚିତ କୁଞ୍ଜ ତଳ୍ପ ସମୀପେ ଉଭା,
କହନ୍ତି ପ୍ରିୟ ବାନ୍ଧବୀ ଦେଖି ଅତୁଳ ଶୋଭା ।

ବିମୁଗ୍ଧା ଯିଏ ଚଟୁଳ ଚାଟୁରେ ଚିତ୍ତ ଜିଣି,
ଅନୁନୟ ଆଉ ବିନୟ ବାକ୍ୟେ ହୃଦୟ କିଣି ।
ପ୍ରଣିପାତ କରି ତୃଷିତ କଲେ ମନରୁ ମାନ,
ଅପେକ୍ଷାରତ କୃଷ୍ଣ କୁଞ୍ଜେ ବୀକ୍ଷମାଣ,
କାହିଁକି କରୁନ ସେଇ ପଥ ତୁମେ ଅନୁସରଣ ।

କୁଚ କୁମ୍ଭର ଗୁରୁଭାର ବହି ଘନଜଘନା,
ଢଳି ଢଳି ତୁମେ ବାରୁନାହିଁ କିଆଁ ପଦଗଞ୍ଜନା ।
ଝୁଣଝୁଣଝୁଣୁ ମଣି ନୂପୁରର ମଧୁର ଧ୍ୱନି,
ତୋଳୁ ନାହିଁ କିଆଁ ହଂସ ଗତିରେ ହୃଦୟ କିଣି ।
ପ୍ରସ୍ଥାନ କର ପ୍ରିୟ ସମୀପକୁ, ପରିହାସରେ,
କିଣନ୍ତି ଯିଏ ତନ୍ୱୀ ଚିତ୍ତ ନିମିଷକରେ ।

ରମ୍ୟତର ସେ ବାକ୍ୟର ମଧୁ ହୃଦୟେ ଭରି,
କୁହୁ କାକଳିରେ ଅତନୁ ଆଜ୍ଞା ଅନୁସ୍ମରି ।
ବାୟୁ ଶିହରିତ ପଲ୍ଲବ ପରି ସ୍ନିଗ୍ଧ ଲତା,
ପ୍ରିୟ ମିଳନର ଇଙ୍ଗିତ ଦେଇ କହୁଚି କଥା ।
ପଥ ସଙ୍କେତ ଦେଉଅଛି ଅବା ଆଙ୍ଗୁଠିରେ,
ଗତି ମନ୍ଥର କର ନାହିଁ ଆଉ ଅକାରଣରେ ।

ବାନ୍ଧବୀ ଯଦି ଉଚ୍ଚାରିତ ,ଏ ଶବ୍ଦ ମୋର,
ଅନ୍ତରଙ୍ଗ ଗ୍ରହଣଯୋଗ୍ୟ ମନେ ନକର ।
ନିର୍ମଳ ବାରିଧାରା ପରି କେତେ ମୁକ୍ତାହାର,
ବକ୍ଷ ଉପରେ ସଜ୍ଜିତ ତୁମ ଚମତ୍କାର ।
କୁଚ କଳସକୁ ପ୍ରଶ୍ନ କରନି ଦ୍ରୁତ ଚକିତ,
କୃଷ୍ଣ ଶରୀର ଆଶ୍ଳେଷ ପାଇଁ ବିକମ୍ପିତ ।

ଅଙ୍ଗ ତୁମର ସ୍ମର ସମରରେ ସଜ୍ଜାରେ ସଖି ସୁସଜ୍ଜିତ,
ଅତି ସୁକୁମାରୀ ବାନ୍ଧବୀଗଣ ଦିଗେ ଦିଗେ ଦେଖ ବିଲୁଣ୍ଠିତ ।
ଅନଙ୍ଗ ରଣ ସୁଦକ୍ଷା ତୁମେ ବର୍ଜନ କରି ଲଜ୍ଜ୍ୟା ଭାବ,
କଟି କିଙ୍କିଣି ଝୁଣୁଝୁଣୁ କରେ ଉଦ୍ୟତ ହୁଏ କି ଅଭା ଲାଭ ।
ଅଭିସାର ପାଇଁ ସମର ପଥରେ ଅଗ୍ରଗାମିନୀ ନହେଲେ ସଖି,
ଅନଙ୍ଗଦେବ ପଞ୍ଚଶାୟକ ପଞ୍ଚ ନଖରେ ଚିପଲେଖି ।
ବନ୍ଧନୀ ଭଳି ବେଷ୍ଟିତ ହୋଇ ସଖି ସକଳ,
ମଣି ବନ୍ଧନ ଧ୍ୱନିରେ ମାଧବ ଅନୁଚିନ୍ତାରେ ମଗ୍ନ କର ।

ଗୁଞ୍ଜରେ ପ୍ରତି ଅନ୍ତରେ ଏଇ କାନ୍ତ କୋମଳ ପଦ୍ୟାବଳୀ,
ଗଳା ମାଳିଠାରୁ ସୁନ୍ଦର ଯାହା ନାରୀଠାରୁ ବେଶୀ ଚିତହାରୀ ।
ଯେଉଁ ବ୍ୟକ୍ତିର ସରସ ହୃଦୟ ପାଦ ପଦ୍ମରେ ସମର୍ପିତ,
ଏଇ ପଦାବଳୀ କଣ୍ଠରେ ତାର ହେଉ ଅନୁକ୍ଷଣ ଅନୁସ୍ୟୁତ ।

ମୃଦୁ ପଦପାତେ ମନ୍ଦଗାମିନୀ ଆସିବ ଚାଲି,
ମଧୁ ଅନୁରାଗେ ଢାଳିବି ଦୃଷ୍ଟି ଆବେଗ ଭରି ।
ବର୍ତ୍ତୁଳ ସ୍ତନରେ ଚିତ୍ତେ ତୋଳିବ ଅନୁରଣନ,
ପ୍ରସ୍ଫୁଟ ପ୍ରେମ ବ୍ୟକ୍ତ କରିବ ଅମୃତମୟ ସମ୍ଭାଷଣ ।
ଅଙ୍ଗେ ଅଙ୍ଗେ ପୁଲକ ଆଣିବ ଆଲିଙ୍ଗନ,
ଅଧର ତଳେ ପ୍ରୀତି ସଞ୍ଚାର କରିବ ରାଧାର ଆମନ୍ତ୍ରଣ ।

ଏପରି ଚିନ୍ତା — ମୁଗ୍ଧ ମାଧବ ଘନ ଅନ୍ଧାର କୁଞ୍ଜ ବନେ,
ତୁମକୁ ସ୍ପଷ୍ଟ ଦେଖିପାରନ୍ତି ଭାବ ନିମଗ୍ନ ମନ–ନୟନେ ।
ମିଳନ ଆବେଶେ କମ୍ପିତ ହୁଏ ସମୀର ରଣେ,
ଆହ୍ଲାଦ ଭରେ ଅଙ୍ଗେ ଅଙ୍ଗେ ଉଚ୍ଚାଟନେ ।
ଆନନ୍ଦ ଭୋଗ ସ୍ୱେଦରେ ସିକ୍ତ କରଇ ଦେହ,
ତୁମ ପଥ ହେରି କରୁ କରୁ ହୃଦେ ଆସଇ ମୋହ ।

ଆଖିରେ କଜଳ ଶ୍ରୁତିର ତମାଳ ସ୍ତବ କପୋଳ,
ଶିରେ ମଣ୍ଡିତ ନୀଳ ପଦ୍ମର ମୃଦୁଳ ହାର ।
ବକ୍ଷ ସ୍ଥଳରେ କସ୍ତୁରି ଛବି ଶ୍ରୀନିନ୍ଦିତ,
ନୀଳ ବସ୍ତ୍ରଠୁ ମନୋଜ୍ଞ ବେଶ ଆଚ୍ଛାଦିତ ।
ସର୍ବ ବ୍ୟାପକ ନିଘଞ୍ଚ ନୀଳ ତିମିର ରାଶି,
ଅଭିସାରିକାର ଚଞ୍ଚଳ ରୂପ ଆଶ୍ଳେଷି ନିଏ ନୟନେ ଆସି ।
ବାନ୍ଧବୀ ତେଣୁ ମୃଦୁ ପଦପାତେ ପ୍ରିୟ ସମୀପେ,
ପ୍ରସ୍ଥାନ କର ଅଙ୍ଗେ ଅଙ୍ଗେ ପୁଲକ ଲାଗେ ।

ପୁଷ୍ପ ଶୁଭ୍ରା ଅଭିସାରିକାର କାନ୍ତି ରେଖା,
ଠିକିରି ପଡ଼ିତି ତମାଳ ପତ୍ରେ ତିମିର ଲେଖା ।
ସବୁଠାରୁ ନୀଳ ନୀଳରେ ନୀଳରେ ତା' ପ୍ରେମ ରୂପ,
ସ୍ୱର୍ଣ୍ଣ ପରି ସେ କଷଟି ପଥର କି ଅପରୂପ ।

ତା'ପଛରେ ଶ୍ରୀରାଧା କୁଞ୍ଜ କୁଟୀରେ କାନ୍ତ ଦ୍ୱାରେ,
ଉପଗତ ହୋଇ ଦେଖିଲେ ମେଖଳା ମଣି ଦ୍ୟୁତିରେ ।
ଝଟକେ କାଟି ଅନ୍ଧାର ହୁଏ ନିର୍ବାପିତ,
କୃଷ୍ଣ ଶ୍ରୀମୁଖ ଉଜ୍ଜ୍ୱଳ ଜ୍ୟୋତି କ୍ଷଣକେ କରିଲା ଲଜ୍ଜ୍ୟାନତ ।

## ଗୀତମ୍

ବାନ୍ଧବୀ କହେ ରାଧାଙ୍କୁ କରି ସମ୍ବୋଧନ,
ହରି ଅନୁସରି କରି ମୃଦୁପାଦେ ଅନୁଗମନ ।
ଅଭିସାର ଆଜି ଲତାପୁଞ୍ଜର କୁଞ୍ଜ କୋଳେ,
ଅବଗୁଣ୍ଠିତ ଅନ୍ଧାର ଯହିଁ ନବ ପଲ୍ଲବ ଆବରଣରେ ।

ଶ୍ରୀରାଧା ମିଳନ ମୋହନ ଭାବରେ ମଗ୍ନ ମନ,
ମଧୁ ପ୍ରମତ୍ତ ଭୃଙ୍ଗପୁଞ୍ଜ ଗୁଞ୍ଜନ ତୋଳେ ଅନୁକ୍ଷଣ ।
କେଳି କୁଞ୍ଜରେ ଅନୁରଣନର ଛନ୍ଦ କେତେ,
ଯାଉନ କାହିଁକି କୃଷ୍ଣ ସମୀପେ ପ୍ରଣୟ ପଥେ ।

ଦନ୍ତପଂକ୍ତି କାନ୍ତି ତୁମର ଝଟକ ଦିଶେ,
ପକ୍ୱ ଡାଳିମ୍ବ ଆରକ୍ତ ରୂପ ମାନସ ରସେ ।
କୁଞ୍ଜେ କୁଞ୍ଜେ କୁହୁ କାକଳୀ ମଧୁର ତାନ,
ଭ୍ରମୁନାହିଁ କିଆଁ କୃଷ୍ଣ ସହିତ,
କରୁନାହିଁ ପଥ ଅନୁସରଣ ?
ତୁମ ଆହ୍ଲାଦ ପାଇଁ ଜୟଦେବ ଏ ପଦାବଳୀ,
ଆହ୍ଲାଦ ଭରୁ ଶ୍ରୀରାଧା ହୃଦୟେ କୃଷ୍ଣ ପରି ।

ହେ ରାଧା, ଶ୍ରୀହରି ଚିନ୍ତାରେ ରହି ଅନେକ କ୍ଷଣ,
ଚିତ୍ତରେ ରଖି ତୁମରି ଚିର କ୍ଳାନ୍ତିରେ ରୂପ ଦିଶୁଛି ମ୍ଳାନ ।
ସ୍ମର ବହ୍ନିର ଶିଖାରେ, ଶିଖାରେ ଦଗ୍ଧ ତନୁ,
ବିମ୍ବ ଓଠରୁ ଅମୃତ ପାଇଁ ଦୁଃସହ ଇଚ୍ଛା ଯାଏନା ମନୁ ।

ଅନୁଗ୍ରହରେ ଅଙ୍କ ତଳ୍ପ କର ଥରେ ତୁମେ ଅଳଙ୍କୃତ,
ତୁମ ମନୋଜ୍ଞ ପକ୍ଷପାତରେ କିଙ୍କର ପରି ହେବ ସେ ପ୍ରୀତ ।
ପାଦ ପଦ୍ମରେ ନିବେଦିତା ସେତ୍ ନିତ୍ୟ ନିୟତ ଅର୍ଚ୍ଚନାରେ,
ଦେଖିଲେ ତାଙ୍କୁ ମୁଖ ଅବନତ କରୁଚ କାହିଁକି ସଂଭ୍ରମରେ ।

ତା'ପରେ ଶ୍ରୀରାଧା ସଙ୍କୀରେ ଆଉ ଆହ୍ଲାଦରେ,
ନିଷ୍ପ୍ରାଣ ହୋଇ ନିବିଡ଼ ଦୃଷ୍ଟି ନିକ୍ଷେପ କଲେ କୃଷ୍ଣ ଆଡ଼େ
ରୁଣୁଝୁଣୁଝୁଣୁ ନୂପୁର ଛନ୍ଦ ଚମତ୍କାର,
ସେ ପଦଯୁଗଳ କୁଞ୍ଜ କୁଟୀରେ ଦେଖି ଲୁଚିଯାଏ କି ସୁନ୍ଦର ।

ରାଧା ଭାବନାରେ ନିମଗ୍ନ ମନ ପ୍ରତୀକ୍ଷା କରେ ମିଳନ ପାଇଁ,
ଏତେବେଳେ ରାଧା ଦର୍ଶନ ଦେଲେ କ୍ଷଣକ ପାଇଁ ।
ଚନ୍ଦ୍ର ଦେଖିଲେ ସାଗର ଯେପରି ଲହରୀ ପିଟେ,
ଉତ୍ତାଳ ଜଳ ଉଦ୍‌ବେଳ ହୁଏ ସିକତା ତଟେ ।

ସେପରି ଶ୍ରୀରାଧା ମୁଖ ଲାବଣ୍ୟ ନିରେଖି ହରି,
ବିବିଧ ପ୍ରକାର ସ୍ମର ଭର୍ତ୍ସନା ଭଙ୍ଗୀ କରି ।
ନର୍ମ ରୀତିରେ ମର୍ମରେ କଲେ ପ୍ରତିଫଳିତ,
ଗଭୀର ଆମୋଦ ଉର୍ମିମୁଖର ସ୍ୱର ଆବେଗରେ ଉଚ୍ଛଳିତ ।
ବକ୍ଷ ଉପରେ ଝଟକି ଉଠୁଛି ଶୁଭ୍ର ଅଭ୍ର ମୁକ୍ତାହାର,
ସଲୀଳ ଯମୁନା ସଲିଳ ରାଶିରେ ଫେନପୁଞ୍ଜର ଧୂମ୍ରିମାଳ ।

ନୀଳ ପଦ୍ମର ମୃଣାଳେ ଯେମିତି ପରିବେଷ୍ଟିତ ପୀତ ପଟଳ,
ପୀତ ବସ୍ତ୍ରରେ ଆବୃତ୍ତ ରହେ ଶ୍ୟାମଳ କୋମଳ ଶ୍ୟାମ ଶରୀର ।
ଶରତ ସରସୀ ସଲିଳ ଶେଯରେ ସୁବିକଶିତ,
ନୀଳ ଶତଦଳ ଗର୍ଭ ଗୃହରେ ଖଞ୍ଜନ ଦ୍ୱୟ ଖେଳରେ ରତ ।
ସତେ ବା ଯେମିତି ଚିହିକି ଉଠୁଚି କୃଷ୍ଣ ରମ୍ୟ ନୟନ ଦୁଇ,
ପକ୍ଷ୍ମ ପ୍ରାନ୍ତେ ସ୍ନିଗ୍ଧ ସରାଗ ରାଧାର ଧୈର୍ଯ୍ୟ ରହଇ ନାହିଁ ।

ମୁଖ ପଦ୍ମରୁ ଦ୍ୟୁତି ସଞ୍ଚାର କରିବା ପାଇଁକି ସୂର୍ଯ୍ୟ ପରି,
ଶ୍ରୁତି କୁଣ୍ଡଳ ପରିହିତ ହରି ଝଟକେ କାନ୍ତି ଆକାଶ ଭରି ।
ସ୍ମିତ ସୁନ୍ଦର ଓଠ ପଲ୍ଲବ ମଧୁ ଉଲ୍ଲାସେ ଉଲ୍ଲସିତ,
ରମ୍ୟ ମିଳନ ଅଭିଳାଷ ଆଶା ଅଧୀର କରଇ ଆବେଗେ ଚିତ୍ତ ।

ବଉଦ ଭାସିଲେ ଜ୍ୟୋତ୍ସ୍ନା ଝଲକ ମହକି ଉଠେ,
ସୁନ୍ଦର ଫୁଲ ଗୁଛି ସମାନ କୃଷ୍ଣ କେଶରେ ଚନ୍ଦ୍ର ଲୋଟେ ।
ତିମିରେ ‘ଚନ୍ଦ୍ରମଣ୍ଡଳ’ ପରି ମଣ୍ଡନ କରେ ଲଲାଟ ପଟ,
ଶୁଚି, ନିର୍ମଳ, ଚନ୍ଦନ ଟୀକା କେଡ଼େ ଚହଟ ।

କବି ଜୟଦେବ ରଚିତ କାବ୍ୟ ଗୀତ ଗୋବିନ୍ଦ ଦିବ୍ୟଧାରା,
ଦ୍ୱିଗୁଣିତ କରେ ଅଙ୍ଗ ଭୂଷଣ ପୁଷ୍ପ ମାଧବ ଶୋଭା ପସରା ।
ସୁକୃତକାରୀ ପୁଣ୍ୟ ଫଳରେ ସାକାର ରୂପ,
କୃଷ୍ଣ କେଶବ ହୃଦ ମନ୍ଦିରେ ନିତ୍ୟ ପ୍ରଣତ ପ୍ରେମ ସ୍ୱରୂପ ।

ଅନ୍ତରତମ ଅବଲୋକନରେ ଅପରିତୃପ୍ତ ନୟନ ଦୁଇ,
ରାଧା ଅପାଙ୍ଗ ଲଙ୍ଘନ କରି କର୍ଣ୍ଣ ମୂଳକୁ ଛୁଇଁବା ପାଇଁ ।
ବ୍ୟାକୁଳ ହୁଅନ୍ତେ ଚପଳ ହେଲା ତା ନେତ୍ର ଧାରା,
ଆକୁଳେ ଝରିଲା ଅଧୀର ଝରଣା, ପ୍ରେମର ଧାରା ।

ସେତେବେଳେ ମୁଖ ସଙ୍ଗିନୀ ପ୍ରିୟ ସଖି କେତେକ,
ଶିହରିତ କରି କପଟରେ ସ୍ନାୟୁ, ହସ ପୁଲକେ ।
ଉଜ୍ଜ୍ୱଳ ସୁରେ ଉଚ୍ଚାଟ କଲେ ଶ୍ରୀରାଧା ହୃଦ,
କୁଞ୍ଜ କୁଟୀରୁ ପ୍ରସ୍ଥାନ କଲେ, କି ଆହ୍ଲାଦ ।

ଶଯ୍ୟା ସମୀପେ ସଧୀରେ ଶ୍ରୀରାଧା କଟାକ୍ଷରେ,
ସ୍ମର ଶରବ୍ୟୂହ ସମାନ ଶ୍ରୀମୁଖ, ଲଜ୍ୟା ଘାରେ ।
ମନ୍ଦାର ଫୁଲ ମଣ୍ଡିତ ବାହୁ କୁବଳୟା ଦଳ ଧ୍ୱଂସକାରୀ,
ଅଳକ୍ତକର ରାଗେ ରଞ୍ଜିତ ନୟନହାରୀ ।
ରଣ ହସ୍ତୀର ଶିର ସିନ୍ଦୂର ବାହୁରେ ଝଳେ,
ଅଭୟ ପ୍ରଦାୟୀ ସେ ବାହୁ ଦ୍ୱୟର ଜୟ ହେଉ କାଳ ଘୂର୍ଣ୍ଣନରେ ।



# ଜନ ବିସ୍ଫୋରଣ ଓ ଜନ୍ମ ନିୟନ୍ତ୍ରଣ

ଅଧ୍ୟାପିକା ଶୁଭ୍ରାଂଶୁବାଳା ମହାନ୍ତି

ଭାରତର ସମସ୍ୟାମାନଙ୍କ ମଧ୍ୟରୁ ଜନସଂଖ୍ୟା ବିସ୍ଫୋରଣ ଏକ ପ୍ରଧାନ ସମସ୍ୟା । ଶୁଣିଲେ ଆଶ୍ଚର୍ଯ୍ୟ ଲାଗେ — ଦିନ ଥିଲା ଶିଶୁଟିଏ ଜନ୍ମଲାଭ କରୁଥିଲେ, ଆନନ୍ଦର ସୀମା ରହୁନଥିଲା । ଆଉ ତା ସାଙ୍ଗକୁ ଆନନ୍ଦ କୋଳାହଳରେ ପରିବାର ମୁଖରିତ ହୋଇ ଉଠୁଥିଲା, କିନ୍ତୁ ଆଜି ପୁନରପି ଶିଶୁର ଜନ୍ମ କେତେକ କ୍ଷେତ୍ରରେ ପରିବାର କାହିଁକି ଦେଶ ପ୍ରତି ଅନିଷ୍ଟକାରକ ହୋଇପଡ଼ିଛି । ଅଧିକ ସଂଖ୍ୟକ ସନ୍ତାନ ସମସ୍ତଙ୍କ ପାଇଁ ଜଟିଳ ସମସ୍ୟା । ଏହା ଜନସଂଖ୍ୟାର ବିସ୍ଫୋରଣ ବୋଲି କୁହାଯାଏ । ଅର୍ଥନୀତିଜ୍ଞ ମାଲ୍‌ଥସ୍‌ଙ୍କ ମତରେ ଖାଦ୍ୟ ଉତ୍ପାଦନର ହାର ଯଦି ଜନସଂଖ୍ୟା ବୃଦ୍ଧିର ହାରଠାରୁ କମ୍ ହୁଏ, ତେବେ ଆମେ କହିବା ସେହି ଦେଶରେ ଜନ ବିସ୍ଫୋରଣ ଘଟିଛି । ତାଙ୍କ ମତରେ, ଆମର ଖାଦ୍ୟର ପରିମାଣ ଗାଣିତିକ ପ୍ରଗ୍ରେସନ୍‌ରେ ଜନ ବୃଦ୍ଧିର ହାର ଜ୍ୟାମିତିକ ପ୍ରଗ୍ରେସନ୍‌ରେ ବୃଦ୍ଧି ପାଉଛି । ତେଣୁ ଆମ ଦେଶରେ ଯେ ଜନ ବିସ୍ଫୋରଣ ଘଟିଛି, ଏଥିରେ ଦ୍ୱିରୁକ୍ତି ନାହିଁ । ତେବେ ଏହି ସମସ୍ୟାଟି କାହିଁକି ହୁଏ ? ତାର ଦୂରୀକରଣ କିପରି କରାଯାଇ ପାରିବ ? ଏ ସବୁ ବ୍ୟକ୍ତିଗତ ଆଲୋଚନା ବିଷୟ ନୁହେଁ, ସମଗ୍ର ଦେଶର । ବର୍ତ୍ତମାନ ଦେଖାଯାଉ ଏ ସବୁର ମୁଖ୍ୟ କାରଣ କ'ଣ ?

(୧) ଖୁବ୍ କମ୍ ବୟସରୁ ବିବାହ କରିବାର ପ୍ରଥା ବିଧବା ବିବାହ ପ୍ରଥା ପ୍ରଚଳନ ଓ ପୁରୁଷ ଶିଶୁକୁ ସ୍ତ୍ରୀ ଶିଶୁ ତୁଳନାରେ ଅଧିକ ଗୁରୁତ୍ୱ । (୨) ସ୍ତ୍ରୀମାନଙ୍କର ନିରକ୍ଷରତା ଓ ଶିକ୍ଷାଗତ ଅଯୋଗ୍ୟତା । (୩) ଅନେକ ପରିବାରର ଆର୍ଥିକ ଅନଟନ ଯୋଗୁ ସନ୍ତାନ ସଂଖ୍ୟା ବୃଦ୍ଧି ଦ୍ୱାରା ଭବିଷ୍ୟତରେ ପରିବାର ପାଇଁ ଆର୍ଥିକ ସମ୍ବଳର ଉନ୍ନୟନ । (୪) ଜନସଂଖ୍ୟା ଅନୁପାତରେ ମୃତ୍ୟୁ ସଂଖ୍ୟାର ସ୍ୱଳ୍ପତା । ଗଣନା କରି ଦେଖାଯାଇଛି ଆମ ଦେଶରେ ୧୯୮୧ ମସିହା ସୁଦ୍ଧା ୧,୦୦୦ ଶିଶୁରେ ୧୨୫ ଶିଶୁ ମୃତ୍ୟୁମୁଖରେ ପଡ଼ନ୍ତି ।

ଏ ସବୁ କାରଣକୁ ଠିକ୍ କରି ଅନୁଧ୍ୟାନ କଲେ ଜଣାଯିବ ଯେ ଶିଶୁର ଉଜ୍ଜ୍ୱଳ ଭବିଷ୍ୟତ ଗଠନ କ୍ଷେତ୍ରରେ ଦୂରଦୃଷ୍ଟିର ଅଭାବ ଓ ନିରକ୍ଷରତା ହିଁ ଅନ୍ତରାୟ ସୃଷ୍ଟି କରୁଛି । ତେଣୁ ବର୍ତ୍ତମାନ ପ୍ରଶ୍ନ ହେଉଛି ଏ ସମସ୍ୟା ସମାଧାନ ପାଇଁ କିପରି ପଦକ୍ଷେପ ଗ୍ରହଣ କରାଯାଉଛି ?

ବିସ୍ଫୋରଣ ନିୟନ୍ତ୍ରଣ କରିବା ପାଇଁ ଆମର ସମସ୍ତ ପଞ୍ଚବାର୍ଷିକ ଯୋଜନାରେ ବିଭିନ୍ନ କାର୍ଯ୍ୟକ୍ରମ ରୂପାୟିତ ହୋଇଛି । ଏହି ପରିପ୍ରେକ୍ଷୀରେ ଡକ୍ଟର ଚନ୍ଦ୍ରଶେଖର କହିଛନ୍ତି — "ଜାତୀୟ ସ୍ତରରେ ଜନ୍ମ ନିୟନ୍ତ୍ରଣ ଲାଗି ବିଭିନ୍ନ ପ୍ରକାର ସାମାଜିକ ସେବା ତଥା ମୁକ୍ତ ଶିକ୍ଷାଦାନର ସୁବିଧା, ପ୍ରସୂତି ସୁବିଧା ଓ ରିହାତି ଗୃହ ନିର୍ମାଣର ସୁବିଧା ପ୍ରବର୍ତ୍ତିତ କରାଯାଇଛି ଯେ କୌଣସି ନିୟନ୍ତ୍ରଣ ନୀତି ହେଉ, ତାହା ଗଣତାନ୍ତ୍ରିକ ଭାବେ ଗଣବୋଧ ଉପରେ ପ୍ରତିଷ୍ଠିତ ହେବା ଆବଶ୍ୟକ । ବିଭିନ୍ନ ଉପାୟରେ ଗଣଚେତନା ସୃଷ୍ଟି କରି କିପରି ଜନ୍ମ ନିୟନ୍ତ୍ରଣ ହୋଇପାରିବ, ସେଥିପାଇଁ ବିଭିନ୍ନ ଯୋଜନାରେ ସରକାର ବିହିତ ବ୍ୟୟ ଅଟକଳ କରିଛନ୍ତି । କିନ୍ତୁ ସେ ସବୁର ଫଳାଫଳକୁ ଅନୁଧ୍ୟାନ କଲେ ଜଣାଯାଏ ତାହା ଆଶା ଅନୁଯାୟୀ ଫଳପ୍ରଦ ହୋଇପାରି ନାହିଁ । ସେଗୁଡ଼ିକ ହେଲା :

(୧) ବନ୍ଧ୍ୟାକରଣ ପଦ୍ଧତିଗୁଡ଼ିକର ଭୁଲ ଭାବେ ନିୟୋଜନ (wrong implementation of stevility) ।

(୨) ଜନ୍ମ ନିୟନ୍ତ୍ରଣର ସୁବିଧାଗୁଡ଼ିକ ଠିକ୍ ଭାବରେ ଲୋକମାନଙ୍କ ପାଖରେ ପହଞ୍ଚି ପାରିବାର ଅସୁବିଧା ।

(୩) ଲୋକମାନଙ୍କ ମନରେ ଗଣଚେତନା ସୃଷ୍ଟି କରିବାର ଅଭାବ ।

(୪) ଆମ ଦେଶର ଲୋକମାନଙ୍କର ନିରକ୍ଷରତା ଓ ଶିକ୍ଷାଗତ ଯୋଗ୍ୟତାର ଅଭାବରୁ ଜନ୍ମ ନିୟନ୍ତ୍ରଣ କ୍ଷେତ୍ରରେ ଆବଶ୍ୟକ ବୁଝାମଣାର ଅଭାବ ।

ତେଣୁ ଜନ୍ମ ନିୟନ୍ତ୍ରଣର ସଫଳ ରୂପାୟନ ପାଇଁ ଆମକୁ ନିମ୍ନଲିଖିତ ପଦକ୍ଷେପ ନେବାକୁ ପଡ଼ିବ :

(୧) ସ୍ୱେଚ୍ଛାକୃତ ବନ୍ଧ୍ୟାକରଣ ସହିତ ଦରକାର ସମୟରେ ବାଧ୍ୟତାମୂଳକ ବନ୍ଧ୍ୟାକରଣ କରାଯିବା ଆବଶ୍ୟକ ।

(୨) ସରଳ ଜନ୍ମ ନିୟନ୍ତ୍ରଣ ପଦ୍ଧତି ଓ ନିରୋଧକ ସମ୍ପର୍କରେ ଉପଯୁକ୍ତ ପରାମର୍ଶ ।

(୩) ଗଣଚେତନା ଜାଗ୍ରତ କରିବା ଲାଗି ଶିକ୍ଷାଦାନ ।

(୪) ସବୁ ଜନ୍ମ ନିୟନ୍ତ୍ରଣ ଆଇନଗୁଡ଼ିକର ଠିକ୍ ପ୍ରଚଳନ ଲାଗି ଉପଯୁକ୍ତ ଅଫିସରମାନେ ନିଯୁକ୍ତ ହେବା ଆବଶ୍ୟକ ।

(୫) ଗାଁ, ସହରି ଓ ସାଧାରଣ ଲୋକମାନଙ୍କ ନିକଟରେ ପ୍ରଚୁର ପତ୍ର, ଦୂର ଦର୍ଶନ, ବେତାର ଓ ଭ୍ରାମ୍ୟମାଣ ଚଳଚ୍ଚିତ୍ର ମାଧ୍ୟମରେ ଲୋକମାନଙ୍କୁ ଜନ୍ମ ନିୟନ୍ତ୍ରଣ ସମ୍ପର୍କରେ ସଚେତନ କରାଇବା ବିଧେୟ ।

(୬) ଅବସର ସମୟରେ ପ୍ରୌଢ଼ଶିକ୍ଷା ବ୍ୟବସ୍ଥା ।

(୭) ଗ୍ରାମାଞ୍ଚଳଗୁଡ଼ିକରେ ସମସ୍ତ ସୁବିଧାସମେ ଶିକ୍ଷଣୀୟ ଚିତ୍ତବିନୋଦର ସୁବିଧା ।

ଏ ସଙ୍କଟମୟ ପରିସ୍ଥିତିରେ ଆମେ ସମସ୍ତେ ସରକାରଙ୍କ ଜନସଂଖ୍ୟା ନିୟନ୍ତ୍ରଣ ପଦକ୍ଷେପ ପ୍ରତି ସଚେତନ ହେବା ଆଶା କରାଯାଏ । ଯଦିଓ ବିଭିନ୍ନ ଉପାୟରେ ସକ୍ରିୟ ପଦକ୍ଷେପ ଗ୍ରହଣ ଦ୍ୱାରା କିଛି ପରିମାଣରେ ଜନ୍ମ ନିୟନ୍ତ୍ରଣ ସଫଳ ହୋଇପାରିଛି, ତାହା କେବଳ ସମୁଦ୍ରକୁ ଶଙ୍ଖେ ପରିମାଣର । ଯଦି ଏହାକୁ ଉପଯୁକ୍ତ ଭାବେ ଗୁରୁତ୍ୱ ଦିଆଯାଏ, ତେବେ ଭାରତର ଅର୍ଥନୈତିକ ବିକାଶ ଦ୍ରୁତତର ହେବ ।

---

ଆଠଗଡ଼ ମହାବିଦ୍ୟାଳୟ,
ଆଠଗଡ଼, କଟକ ।



ଡକ୍ଟର ବି. ଆର୍. ଆମ୍ବେଦ୍‌କରଙ୍କ ଜନ୍ମ ଶତବାର୍ଷିକୀ ଉତ୍ସବରେ ପଞ୍ଚାୟତିରାଜ ମନ୍ତ୍ରୀ ଶ୍ରୀ ଦାମୋଦର ରାଉତଙ୍କ ଅଭିଭାଷଣ ।

OGP-MP PTS(I&PR)39-6,000-20-1-1991




ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଢେଙ୍କାନାଳ ମହିଳା ମହାବିଦ୍ୟାଳୟର
ଏକତମ ପ୍ରତିଷ୍ଠା ଦିବସ ଉତ୍ସବ ଉଦ୍ଘାଟନ କରୁଛନ୍ତି ।



ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଫୁଲବାଣୀ ଜିଲ୍ଲା ବୌଦ
ସବଡିଭିଜନର ମଣ୍ଡାପଡାଠାରେ ଆୟୋଜିତ ଏକ ଉତ୍ସବରେ
ଦମି ପଟ୍ଟା ଓ ବାର୍ଦ୍ଧକ୍ୟଭତ୍ତା ବଣ୍ଟନ କରୁଛନ୍ତି ।




ଭୁବନେଶ୍ୱର ସୂଚନା ଭବନଠାରେ ଆୟୋଜିତ ଆବୁଲ୍‌କାଲାମ ଆଜାଦ୍
ଜୟନ୍ତୀ ଉତ୍ସବରେ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ
ଶ୍ରୀ ଶରତ କୁମାର କରଙ୍କ ଉଦ୍‌ବୋଧନ ।

Vol. XLVII No. 6 UTKAL PRASANGA Regd. No. 0-05/91
Licence No. C. R. N. P. 5–Licensed to post without Pre-payment



ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଭୁବନେଶ୍ୱର ବିମାନ ବନ୍ଦରଠାରେ
ପ୍ରଧାନମନ୍ତ୍ରୀ ଶ୍ରୀ ଚନ୍ଦ୍ରଶେଖରଙ୍କୁ ସମ୍ବର୍ଦ୍ଧନା ଜଣାଉଛନ୍ତି ।



କଳାହାଣ୍ଡି କଲେଜର +୨ ଛାତ୍ର ସଂସଦର ବାର୍ଷିକ ଉତ୍ସବକୁ ମୁଖ୍ୟମନ୍ତ୍ରୀ
ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ପ୍ରଦୀପ ଜାଳି ଶୁଭ ଉଦ୍‌ଘାଟନ କରୁଛନ୍ତି ।

PRINTED AT ORISSA GOVERNMENT PRESS, CUTTACK-10

